

# ଫିନିକ୍ସ କିମ୍ବଦନ୍ତୀ

## ଓ ଅନ୍ୟାନ୍ୟ ଭିଏତନାମୀ କାହାଣୀ


ଚୟନ ଓ ସଂପାଦନା
ହୋ ଆନ୍ ଥାଇ
ଅନୁବାଦ
ଶକୁନ୍ତଳା ବଳିଆରସିଂହ

ବିଶ୍ୱ-ସାହିତ୍ୟ ପୁସ୍ତକମାଳା

# ଫିନିକ୍ସ କିମ୍ବଦନ୍ତୀ
## ଓ ଅନ୍ୟାନ୍ୟ ଭିଏତନାମୀ କାହାଣୀ


ଚୟନ ଓ ସଂପାଦନା

ହୋ ଆନ୍ ଥାଇ

ଅନୁବାଦ

ଶକୁନ୍ତଳା ବଳିଆରସିଂହ





ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ସୂଚୀ

# ଅଗ୍ରକଥା

ଆଧୁନିକ ଭିଏତନାମୀ କାହାଣୀ କ୍ଷୁଦ୍ରଗଳ୍ପର ଏହି ସଂକଳନଟିକୁ ଯେତେବେଳେ ତୁମେ ହାତରେ ଧରିବ, ତୁମକୁ ଲାଗିବ ଯେପରି ତୁମେ କେଉଁ ଗୋଟିଏ ଝର୍କା ଖୋଲିଦେଇଛ ଆଉ ଝର୍କା ଆରପଟେ, ଦୂରରେ ଗୋଟିଏ ସୁବାସିତ ପୁଷ୍ପ ଓ ସ୍ୱାଦିଷ୍ଟ ଫଳରେଭରା ଉଦ୍ୟାନ ତୁମ ସାମ୍ନାରେ ପ୍ରତିଭାତ ହେଉଛି । ଭାଷା ଏକ ବନ୍ଦ ଝର୍କା ପରି, ଯାହା ତୁମ ଦୃଷ୍ଟିପଥ ରୋଧ କରିଥିଲା । ଏବେ ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ ତୁମକୁ ସେହି ବାତାୟନ ଖୋଲିବାରେ ସାହାଯ୍ୟ କରିବ ।

ଏହି ସଂଗ୍ରହରେ ସଂକଳିତ ବାରଟି କ୍ଷୁଦ୍ରଗଳ୍ପ ବାରଟି ପକ୍ୱଫଳର ସମ୍ମାନ ଦାବି କରେ । ଚାଖି ଦେଖ ସେମାନଙ୍କର ମଧୁର, ତିକ୍ତ, କଷାୟ, ରାଗ, ମସଲାଯୁକ୍ତ ସ୍ୱାଦ । ଯଦିଓ ବାରଟି ପକ୍ୱଫଳ କଦାପି ଗୋଟିଏ ଉଦ୍ୟାନ ନିର୍ମାଣ କରିପାରନ୍ତି ନାହିଁ, ସେମାନେ ତୁମକୁ ସେମାନଙ୍କ ମୂଲ୍ୟବାନ ଭୂମି ବିଷୟରେ କହିବେ ଯାହାର ଉପଜ ହେଉଛନ୍ତି ସେମାନେ, ଆଉ କହିବେ ଏକ ବିଭକ୍ତ, ଜଟିଳ ଯୁଦ୍ଧୋତ୍ତର ସମାଜର ଜୀବନଯାପନର ତତ୍‌ପରତା ସମ୍ବନ୍ଧରେ । ଲେଖକମାନଙ୍କ ସହିତ ମିଶି ପାଠକମାନେ ହିଁ କରିବେ ବିତିଯାଇଥିବା ସମୟର ସିଦ୍ଧି ଓ ବିଫଳତାର ମୂଲ୍ୟାୟନ ।

ଦୟାକରି ବାତାୟନ ନିକଟରେ ଠିଆହୁଅ ଆଉ ସ୍ୱାଗତ କର ଏକ ସତେଜ ବାୟୁସ୍ରୋତର, ଯାହା ବୋହିଆସିଛି ତେଜ ଓ ସ୍ଫୂର୍ତ୍ତିର ସହ ଦ୍ରୁତ ବଦଳୁଥିବା ଏକ ଭୂମିଖଣ୍ଡରୁ ।

ଭୁ ବାଓ

*ଚେୟାରମ୍ୟାନ, ହାନୋଇ ଲେଖକ ସଂଘ*

ଭିଏତନାମ

# ଉପକ୍ରମଣିକା

ଭିଏତନାମ ଅର୍ଥ 'ଦକ୍ଷିଣର ଭିଏତ୍ ଜନସମୁଦାୟ' । ଏ ନାମରୁ ଏତିକି ଅନ୍ତତଃ ଜଣାଯାଉଛି ଯେ ଭିଏତନାମ ଜନଶ୍ରେଣୀର ବେଶୀଭାଗ, ସତୁରିଲକ୍ଷ ଅଧ୍ୟୁଷିତ ଲୋକଶ୍ରେଣୀର ହାରାହାରି ୮୮ ପ୍ରତିଶତ ହେଉଛନ୍ତି ଭିଏତ ଜନତା, ଆଉ ଦ୍ୱିତୀୟ ଅର୍ଥ ଏୟା ଯେ ଭିଏତ ଲୋକେ ଦକ୍ଷିଣପୂର୍ବ ଏସିଆରେ ବାସକରନ୍ତି । ଭିଏତନାମର ଉତ୍ତରଦିଗର ସୀମାନ୍ତ ପ୍ରଦେଶ ହେଉଛି ଚୀନ୍ ଓ ଲାଓସ, ଆଉ ପଶ୍ଚିମ ସୀମାରେ ରହିଛି କାମ୍ବୋଡ଼ିଆ । ଦକ୍ଷିଣ-ପୂର୍ବ ଦିଗରେ ଅଛି ପୂର୍ବସାଗର ବା ଦକ୍ଷିଣ ଚୀନା ସମୁଦ୍ର କିମ୍ବା ଅଧିକ ସଠିକ ଭାବରେ କହିଲେ ପ୍ରଶାନ୍ତ ମହାସାଗର ।

ଚାରିହଜାର ବର୍ଷର ଏହି ମା-ମାଟିର ପ୍ରତିଷ୍ଠା ଓ ଗୋଟାଏ ଜାତିକୁ ସୁରକ୍ଷିତ ରଖିବାର ଇତିହାସରେ, ଭିଏତନାମକୁ ଉତ୍ତର ଦିଗର ଆକ୍ରମଣକାରୀ (ଆନୁମାନିକ ହଜାରବର୍ଷ ଧରି) ଫରାସୀ ଉପନିବେଶବାଦୀ (ସରକାରୀ ସୂତ୍ରାନୁଯାୟୀ ୧୮୫୮ରୁ ୧୯୫୪) ଆଉ ଆମେରିକୀ ଆକ୍ରମଣକାରୀ (୧୯୫୪ରୁ ୧୯୭୫)ଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ପଡ଼ିଛି । ଭିଏତନାମ ଇତିହାସରେ ସବୁଠାରୁ ଭୟାନକ ଆଉ ଯନ୍ତ୍ରଣାଦାୟକ ଯୁଦ୍ଧ ଥିଲା ୟୁନାଇଟେଡ୍ ଷ୍ଟେଟସ୍ ଓ ଆମେରିକା ଦ୍ୱାରା ଏଠାରେ ସ୍ଥାପିତ ଶାସନ ପଦ୍ଧତି ବିରୁଦ୍ଧରେ, ଯାହା ଦେଶକୁ ଦୁଇଟି ଭିଏତନାମରେ ବିଭକ୍ତ କରିଦେବାପାଇଁ ଥିଲା ଉଦ୍ଦିଷ୍ଟ । ଏହାର ପରିଣତି ସ୍ୱରୂପ ଲକ୍ଷ ଲକ୍ଷ ଭିଏତନାମୀ ନିହତ ଓ ବିକଳାଙ୍ଗ ହୋଇଥିଲେ । ଯୁଦ୍ଧର ଦାରୁଣ ପରିଣାମରୁ କେଉଁ ଗୋଟିଏ ବି ପରିବାର ବର୍ତ୍ତିଯାଇଛି ଆଉ ନିର୍ଯାତିତ ହୋଇନାହିଁ ଖୋଜି ବାହାର କରିବା କଷ୍ଟକର । ବୋମା ବିସ୍ଫୋରଣ ଦ୍ୱାରା ଭୂମିରେ ହୋଇଥିବା ଗହ୍ୱର ଆଜିଯାଏଁ ବି ଭରିନାହିଁ । ଲକ୍ଷ ଲକ୍ଷ ପରିବାର ତଥାପି ଖୋଜିବୁଲୁଛନ୍ତି ସେମାନଙ୍କର ବାପ, ଭାଇ, ସନ୍ତାନ, ସଂପର୍କୀୟଙ୍କ ଅସ୍ଥି । ବୟସ୍କ ବିଧବାମାନେ ନିଜ ସ୍ୱାମୀ, ପୁଅଝିଅ, ନାତି ନାତୁଣୀଙ୍କ ମୃତ୍ୟୁର ଦୁଃଖରେ ଜର୍ଜରିତ ହୋଇ ବିତାଉଛନ୍ତି ନିଃସଙ୍ଗ ଜୀବନ ।

୧୯୭୫ରେ ଦକ୍ଷିଣଭାଗର ମୁକ୍ତି ଆଉ ଜାତୀୟ ପୁନଃସଂଯୁକ୍ତି ପରେ, ଜାତୀୟ ପୁନର୍ଗଠନ ଓ ପରିଚାଳନାଗତ ତ୍ରୁଟିବିଚ୍ୟୁତି ଯୋଗୁଁ, ୧୯୮୬ ପର୍ଯ୍ୟନ୍ତ ପୂରାପୂରି ରୂପରେ କୌଣସି ନବନିର୍ମାଣ କାର୍ଯ୍ୟ ଭିଏତନାମରେ ଆରମ୍ଭ ହୋଇପାରିନଥିଲା । ଦେଶ ଧୀରେ ପରିପକ୍ୱତା ଆଡ଼କୁ ଗତି କରିବାକୁ ଆରମ୍ଭ କରିଥିଲା ଯେପରି ଏକ ଉର୍ଦ୍ଧ୍ୱମୁଖୀ ଡ୍ରାଗନ (ରାଜଧାନୀ ହାନୋଇର ପୂର୍ବତନ ନାମ) । ଯେକୌଣସି ନବନିର୍ମାଣର ଅବଶ୍ୟ ନିଜର ଏକ ମୂଲ୍ୟ ଥାଏ । ଭିଏତନାମକୁ ମଧ୍ୟ ପୁନଃନିର୍ମାଣ ଆଉ ମୁକ୍ତ-ଦ୍ୱାର-ନୀତି ସହିତ ମିଶିକରି ଆସୁଥିବା ଜଟିଳ ସାମାଜିକ ସମସ୍ୟାଗୁଡ଼ିକର ମୁହାଁମୁହିଁ ହେବାକୁ ପଡ଼ିଥିଲା । ସେ ଯାହାହେଉ, ପ୍ରାଥମିକ ସ୍ତରର ପ୍ରାପ୍ତି ସବୁବେଳେ ଉତ୍ସାହଜନକ ଆଉ ସମ୍ଭାବନାମୟ ହୋଇଥାଏ ।

ଯଥାର୍ଥରେ, ଭିଏତନାମ ସବୁବେଳେ ଏକ କବିସୁଲଭ ଦେଶର ମାନ୍ୟତା ପାଇଆସିଛି, କାରଣ ଏହାର କବିବୃନ୍ଦ ଉଭୟ କୃଷକ ଓ ରାଜଗୋଷ୍ଠୀରୁ ଆସିଛନ୍ତି ଆଉ ଶତାବ୍ଦୀ ଧରି ଏହା ଘଟିଆସିଛି । ହଜାର ହଜାର ବର୍ଷଧରି, ସରଳ କୃଷିଜୀବୀମାନେ ସେମାନଙ୍କ ଅସଂଖ୍ୟ ଚିତ୍ତାକର୍ଷକ ସଂଗୀତକୁ ଉତ୍ତରପୁରୁଷଙ୍କୁ ଉତ୍ସର୍ଗ କରିଦେଇଛନ୍ତି, ଆଉ ଜଣେ ରାଜା ଲିଥାନ୍ ଡୁଙ୍ଗ (ପଞ୍ଚଦଶ ଶତାବ୍ଦୀ) ଅମର ହୋଇ ରହିଛନ୍ତି ନିଜର ଦେଶାତ୍ମବୋଧମୂଳକ ପଂକ୍ତି ପାଇଁ, ଯାହା ଆଜିଯାଏଁ ଦେଶବାସୀଙ୍କୁ ଅନୁପ୍ରାଣୀତ କରିଆସୁଛି । ତିନିଜଣ ବିଶିଷ୍ଟ କବି ଗୁୟେନ୍‌ଟ୍ରାଇ (୧୩୮୦-୧୪୩୦), ଗୁୟେଁ ଦୁ (୧୭୬୫-୧୮୨୦) ଆଉ ହୋ କୁଆନ୍ ହୋଂ (ଅଷ୍ଟାଦଶ ଶତାବ୍ଦୀ)ଙ୍କ ଜନ୍ମଦିବସ ୟୁନେସ୍କୋ ଦ୍ୱାରା ସାରା ବିଶ୍ୱରେ ଉତ୍ସାହର ସହ ପାଳିତ ହୋଇଆସୁଛି । ଆଉ ଆମ ପରଲୋକଗତ ରାଷ୍ଟ୍ରପତି ହୋ-ଚି-ମିନ୍, ଜାତିର ପିତା ମଧ୍ୟ ଜଣେ ଜନପ୍ରିୟ କବି ଓ ଲେଖକ ।

ନବୀକରଣ ସମୟଠାରୁ, ଭିଏତନାମରୁ ବହୁତ ଦୃଷ୍ଟି ଆକର୍ଷକ ସର୍ଜନା ବିଦେଶରେ ପ୍ରକାଶିତ ହୋଇଛି ଓ ଅନ୍ତର୍ଜାତୀୟ ସମ୍ମାନ ଲାଭ କରିଛି : ବୋଆନିନ୍‌ଙ୍କ 'ଦି ସରୋ ଅଫ୍ ୱାର୍', ଫାମ୍ ଥିହାଓଇଙ୍କ 'ଦି କ୍ରିଷ୍ଟାଲ ମେସେଞ୍ଜର', ଡୋଙ୍ଗ୍ ଥୁ ହୋଙ୍ଗଙ୍କ 'ପାରାଡ଼ାଇଜ୍ ଅଫ ଦି ବ୍ଲାଇଣ୍ଡ', ଗୁଏଁ ହୁଏଁ ଥେପ୍‌ଙ୍କ ଲିଖିତ 'ଦି ଜେନେରାଲ ରିଟାୟାରସ୍', ଏବଂ ହୋ ଆନ୍ ଥାଇଙ୍କ 'ଦି ମେନ୍ ଆଣ୍ଡ ଭେହିକ୍ଲସ୍ ରନ୍ ଇନ୍ ଦି ମୁନ୍‌ଲାଇଟ ।'

ଏହି ଗଳ୍ପସଂକଳନ ସମ୍ବନ୍ଧେ ଏତିକି କହିବି ଯେ, ଆମେରିକାନ୍ ଔପନ୍ୟାସିକ ୱାଏନ କର୍ଲିନଙ୍କ ପ୍ରତି ସମ୍ପାଦକ କୃତଜ୍ଞ । କାରଣ ସେ କେତେକ କାହାଣୀର ଇଂରାଜୀ ରୂପାନ୍ତର କରିଦେଇଛନ୍ତି । ଆଶାକରାଯାଏ, ଏହି ସଂକଳନଟି ସ୍ମରଣଯୋଗ୍ୟ ହୋଇରହିବ ।

ଆଉ ଭିଏତନାମ ଓ ଭାରତ ମଧ୍ୟରେ ସମ୍ପର୍କର କଥା ଯେତେଦୂର ଜଡ଼ିତ, ପ୍ରଥମ

ଶତାବ୍ଦୀ ସୁଦ୍ଧା ଭାରତର ବେପାର ବୋଇତମାନ ଭିଏତନାମ ଉପକୂଳରେ ସେମାନଙ୍କ ପଦଚିହ୍ନ ଛାଡ଼ିଯାଇଥିଲେ । ସେମାନେ ସାଥିରେ ଆଣିଥିଲେ ବୁଦ୍ଧଙ୍କ ମହାନ ବାର୍ତ୍ତା – ସମତା ଓ ଅହିଂସା । ଆଜି ଭିଏତନାମ ଜନସମୁଦାୟର ୮୦ ପ୍ରତିଶତ ବୌଦ୍ଧ ଧର୍ମାବଲମ୍ବୀ । ଅତୀତର ମୁକ୍ତି ସଂଗ୍ରାମ କାଳରେ ଆଉ ବର୍ତ୍ତମାନର ଜାତୀୟ ପୁର୍ନଗଠନ ସମୟରେ ମଧ୍ୟ ଭିଏତନାମୀ ଲୋକମାନେ ଭାରତ ସରକାରଙ୍କ ଠାରୁ ଦୁର୍ଲଭ ସମର୍ଥନ ଓ ସହଯୋଗ ପାଇଛନ୍ତି ।

ଦୁଇଦେଶ ମଧ୍ୟରେ ବନ୍ଧୁତା ଓ ସହାୟତା ସବୁବେଳେ ନିରାପଦ ରହିଆସିଛି ଓ ଦୃଢ଼ରୁ ଦୃଢ଼ତର ହୋଇଚାଲିଛି ।

ନୂଆଦିଲ୍ଲୀ
ଅଗଷ୍ଟ–୧୯୯୪

ହୋ ଆନ୍ ଥାଇ

୧

# ଗୋଟିଏ ଟ୍ରାଫିକ ପୁଲିସର କାହାଣୀ

ଗୁୟେଁ ମାନ୍ ତୁଆଁ

ମୁକ୍ତିଆନ୍ଦୋଳନ ପରଠାରୁ ବର୍ଷକରୁ ବେଶୀ ହେବ ସେଇ ଗୋଟିଏ ଛକରେ ସେ ପହରା ଦେଇଆସୁଛି । ଛକଟି ତାର ଏତେ ପରିଚିତ ହୋଇଯାଇଛି ଯେ ଅତି ଛୋଟ ଛୋଟ ଘଟଣା ବି ତା ମନଭିତରେ ଜୀବନ୍ତ ହୋଇ ରହିଯାଇଛି : ଯେମିତି ଥାଏ କେଫ୍‌ର ଲୁହା ବାଲ୍‌କୋନୀ, ଆନ୍‌ସିନ୍ ସୁପ୍ ଦୋକାନର ଝରକା କାଚ, ୧୧୫ ନମ୍ବର ଘର ପାଚେରି ଉପରର ବୋଗନଭିଲ୍ଲା, ଦିନସାରା ବନ୍ଦଥିବା ଘରକବାଟ, ସଡ଼କ ଦୁଇପାଖର ଶାଗୁଆ ବଡ଼ ବଡ଼ ତେନ୍ତୁଳିଗଛ, ଖରାବର୍ଷାକୁ ଖାତିର ନକରି ବତୀଖୁଣ୍ଟ ତଳେ ବସୁଥିବା ସିଗ୍ରେଟ ବିକାଳି, ତା'ର ବାରମ୍ବାର ତାଗିଦ୍ ସତ୍ତ୍ୱେ ନିର୍ଦ୍ଦିଷ୍ଟ ଦୁଇଜଣ ହୋଣ୍ଡା ଡ୍ରାଇଭର ନିଜ ମଟରସାଇକେଲ ରାସ୍ତାକୁ ବଢ଼େଇକି ରଖିବା ଇତ୍ୟାଦି ।

ପ୍ରତିଦିନ ସକାଳେ ଗହଳି ଆରମ୍ଭ ହେବା ଆଗରୁ ସେ ତା ଜାଗାରେ ଠିଆ ହୋଇଯାଇଥାଏ ଯାନବାହନ ନିୟନ୍ତ୍ରଣ କରିବାର ରଙ୍ଗୀନ ଆଲୋକ ସୁଇଚ ଟିପିବାକୁ । ସେ ଠିଆ ହୋଇଥାଏ ପାଦଚଲା ରାସ୍ତା ଧାରରେ ଦେଖିବାକୁ ଯାନବାହନର ସ୍ରୋତ, ଲାମ୍ବ୍ରେଟା ସ୍କୁଟର, ଅଟୋ, ସ୍କୁଟି, ବଜାରକୁ ଖାଦ୍ୟ ନେଇଯାଉଥିବା ଗାଡ଼ି ଆଉ ପଥଚାରୀ – ବଡ଼ମାନଙ୍କର କାମକୁ ଆଉ ପିଲାମାନଙ୍କର ସ୍କୁଲ ଯାତ୍ରା । ଏ ଖୁସି ଜମିଯାଏ ଯେତେବେଳେ ଅଫିସ ଆରମ୍ଭ ହୋଇଯାଏ ଆଉ କର୍ମଚାରୀମାନେ ଦିନଯାକ ଅଫିସ ଭିତରେ ବନ୍ଦହୋଇ ରହିଯାଆନ୍ତି । ଦିନପରେ ଦିନ ସେ ଲକ୍ଷ୍ୟକରେ ଏଇ ସଜୀବତାକୁ ; ଉପକୂଳରେ ମଥାପିଟୁଥିବା ତରଙ୍ଗ ସହିତ ଏହା କେତେ ସମାନ ! ସେଠାରେ ସେ ଥିଲା ଯାନବାହନ ନିୟନ୍ତ୍ରଣ କରିବାକୁ, ହେଲେ ତା ବିନା ବି ଟ୍ରାଫିକ ଠିକ ଚାଲୁଥିଲା । ଧନ୍ୟବାଦ ସେହି ନାଲି, ନେଳି, ହଳଦିଆ ଆଲୁଅର ଧପଧପକୁ । ବେଳେବେଳେ ସେ ହ୍ୱିସିଲ ବଜାଇଦିଏ ଗୋଟେ କାର୍ ଡ୍ରାଇଭରକୁ ନାଲି ଆଲୁଅ ସମ୍ବନ୍ଧେ ସତର୍କ କରାଇଦେବାକୁ, ବା କେଉଁ ଯୁବ ମଟର ସାଇକେଲ ଆରୋହୀ ଟ୍ରାଫିକ୍ ନିୟମ ନମାନି ଜୋରରେ ମାଡ଼ିଆସୁଥିବାବେଳେ । କେତେବେଳେ କେଉଁ ଠିକଣା ବା କେଉଁ ଗଳିର

ନାମ ଜାଣିବାପାଇଁ ପ୍ରଶ୍ନର ଉତ୍ତର ବି ତାକୁ ଦେବାକୁ ପଡୁଥିଲା । ଏଭଳି ଅବଶ୍ୟ କ୍ୱଚିତ ଘଟୁଥିଲା, ଆଉ ସେ ଅଧିକାଂଶ ସମୟ ଏଇ କୋଳାହଳମୟ ଦୃଶ୍ୟକୁ ଚାହିଁଚାହିଁ ଅଳସୁଆ ହୋଇ କଟାଇ ଦେଉଥିଲା, ଯାହାକୁ ଦେଖିବା ବିନା ତାର ଅନ୍ୟବାଟ ନଥିଲା ।

ଦିନେ, ଏଇ ରୁଟିନ୍‌ବନ୍ଧା କାମକୁ ସହିନପାରି ସେ ତାର ଉପର ହାକିମକୁ ଅନୁରୋଧ କଲା ଆଉ କେଉଁ କାମକୁ ତାକୁ ବଦଳି କରିଦେବାକୁ । "ତୁମେ ମୋତେ ଯେଉଁଠାକୁ ଇଚ୍ଛା ପଠାଇପାର, କିମ୍ବା ସୈନ୍ୟବାହିନୀକୁ ଫେରାଇଦେଇପାର । ଖୁସିରେ ମୁଁ ଚାଲିଯିବି । ଛକରେ ଶୃଙ୍ଖଳା ରକ୍ଷାକରିବା ଗୋଟେ ସୈନ୍ୟର କାମ ନୁହେଁ ।"

"ତାହାହେଲେ କାହା କାମ ଇୟେ ?" ପଚାରିଲେ ହାକିମ ଯିଏ ନିଜେ ଥିଲେ ଜଣେ ଆର୍ମି ଫେରନ୍ତା ।

"ଏତିକି ମୁଁ ଜାଣିଛି, ଏ କାମ ମତେ ସୁବିଧାଜନକ ଲାଗୁନାହିଁ । ମୁଁ କଠିନ ପରିଶ୍ରମରେ ଅଭ୍ୟସ୍ତ, ସବୁ କଷ୍ଟ ମୁଁ ବୋହିପାରିବି, କିନ୍ତୁ ଏଭଳି ଅଳସୁଆ କାମ ସହିପାରୁନାହିଁ ।"

"ହେଲେ ଏହା ବହୁତ ଗୁରୁତ୍ୱପୂର୍ଣ୍ଣ କାମ । ଆମ ସହର ବହୁ ଅସୁବିଧାର ସାମ୍ନା କରୁଛି । ତୁମେ ଧୈର୍ଯ୍ୟ ରଖିବା ଦରକାର ।"

"ତୁମେ ମୋତେ କାହିଁକି ଧୈର୍ଯ୍ୟର କଥା କହୁଛ ? ସାତ ଆଠବର୍ଷ କାଳ କ୍ରମାଗତ ଯୁଦ୍ଧ କରିବା କ'ଣ ଶେଷରେ ଧୈର୍ଯ୍ୟର ପ୍ରମାଣ ନୁହେଁ ? ପୁଣିଥରେ ମୁଁ କହୁଛି : ଏ କାମପାଇଁ ମୁଁ ଉପଯୁକ୍ତ ନୁହେଁ, ମତେ ଆଉ ଯେଉଁ କାମ ଦିଅ ; ମୁଁ ଇସ୍ତଫା ଦେବିନାହିଁ ।"

ହେଲେ ତାକୁ ସେଇ ପୁରୁଣା କାମରେ ରହିବାକୁ ପଡ଼ିଲା ହାକିମଙ୍କ ଆଦେଶରେ । ଗୋଟେ ଶୃଙ୍ଖଳିତ ସୈନ୍ୟ ହିସାବରେ ଏହା ସେ ମାନିନେବା ଉଚିତ ଆଉ କାମ କରିବା ଉଚିତ ।

ଫଳରେ ସେହି ଛକଟି ତା'ର ଆହୁରି ପରିଚିତ ହୋଇଗଲା ଓ ସେଠାରେ ଘଟୁଥିବା ଘଟଣାମାନ ତା ମନରୁ ସହଜରେ ଲିଭିପାରୁନଥିଲା । ଆଗ, ସେଠି ଫୁଟପାଥ ଉପରେ ସାଇକେଲ-ମୋପେଡ଼ ମରାମତ କରୁଥିବା ଦୁଇଟି ଚଉଦ ପନ୍ଦର ବର୍ଷର ବାଳକ ତାର ଧ୍ୟାନ ଆକର୍ଷଣ କଲେ । ଉଭୟ ବାଳକଙ୍କର ବାଳ ଫୁରୁଫୁର ଆଉ ଅସଜଡ଼ା, ଦେହରେ ଅତି ଢିଲା ନକଲି ୟୁନିଫର୍ମ । ତାଙ୍କ ଭିତରୁ ଜଣେ ଥିଲା ଭିଏତନାମୀ, ଅତ୍ୟନ୍ତ ଚଞ୍ଚଳ ଆଉ କ୍ଷିପ୍ରଗତିରେ ଦୌଡ଼ିବାକୁ ସମର୍ଥ । ଅପରଟି ଅତିଗୋରା, ନୀଳଆଖି, ବାଦାମୀ ରଙ୍ଗର କେଶ : ସେ ଥିଲା ଗୋଟେ ଆମେରିକୀୟ ଜାରଜ, ମାନେ ମାଆ ଭିଏତନାମୀ ବାପା ଆମେରିକୀୟ ।

କେତେଦିନ ପରେ ନିଜର ସଙ୍କୋଚ ଦୂରକରି ଦୁଇ ବାଳକ ଦିନେ ତା ପାଖକୁ ଆସିଲେ ଆଉ ପଚାରିଲେ : "ସୈନିକ ମାମୁ, ତୁମେ ସବୁଦିନ ଏଠି ଠିଆହୋଇ ବିରକ୍ତ ହୋଇଯାଉନ ?"

ଲୋକଟି ଖୁସିହୋଇ ଏଥିପାଇଁ ହସିଲା ଯେ ଏପିଲାଦି'ଟା ଗୋଟେ ସୈନିକ ଆଉ ପୁଲିସ ଭିତରେ ଫରକ ଜାଣନ୍ତି ନାହିଁ । କହିଲା, "ମୋ କର୍ତ୍ତବ୍ୟ କଲାବେଳେ ମୁଁ ବିରକ୍ତ ହେବି କାହିଁକି ? ତୁମକୁ କ'ଣ ତୁମର ଏ ବିରକ୍ତିକର କାମ କଲାବେଳେ ଚିଡ଼ା ଲାଗୁଛି ?"

"ହଁ, ବିଶେଷକରି ପିଲାମାନଙ୍କୁ ପ୍ରତିଦିନ ଖୁସିରେ ସ୍କୁଲଯିବା ଦେଖିବା ପରଠାରୁ ଆମକୁ ଏ କାମ ଆଉ ଭଲ ଲାଗୁନାହିଁ ।"

"ତୁମେ ଦୁହେଁ ବି ସ୍କୁଲ ଯାଇପାରିବ, କେହି ତୁମକୁ ମନାକରୁନାହିଁ ।"

"ହେଲେ ଆମେ ତ ଗରିବ । ମୋ ବାପା-ମା' ଗୋଟେ ବଡ଼ ପରିବାରକୁ ସମ୍ଭାଳି ପାରିଲେ ନାହିଁ, ତେଣୁ ମତେ ପାଠ ଛାଡ଼ିବାକୁ ପଡ଼ିଲା । ମୁଁ ଶୁଣିଥିଲି ବିଦ୍ରୋହପରେ ସବୁ ବଦଳିଯିବ । ମୋ ପରିବାରରେ କାଇଁ କିଛି ବଦଳୁନାହିଁ ? ଆମେ ସବୁବେଳେ ଗରିବ ହୋଇ ରହିଛୁ ।"

"ବଦଳ ଧୀରେଧୀରେ ଆସେ । ଏବେ ମୁଁ ତୁମ ଭିତରେ ସାମାନ୍ୟ ପରିବର୍ତ୍ତନ ଆଣିବାପାଇଁ ଅନୁରୋଧ କରିବି ।" ପୁଲିସଟି ବାଳକ ଓଠରୁ ଝୁଲୁଥିବା ସିଗାରେଟଟି ଟାଣିଆଣି କହିଲା, ତୁମେ ସିଗାରେଟ ଟାଣିବା ଛାଡ଼ିପାରିବ ?

ବାଳକଟି ଡୋଳା ବୁଲାଇ ଆଶ୍ଚର୍ଯ୍ୟ ହୋଇ କହିଲା, "ମୁଁ ପାରିବିନି, ଏଇଟା ମୋର ନିଶା ।"

"ଦେଖ, ଅଭ୍ୟାସ ବଦଳାଇବା ତୁମପାଇଁ ଯେମିତି ସହଜ ନୁହେଁ, ସେମିତି ବହୁଦିନରୁ ଚଳିଆସୁଥିବା ରୀତିନୀତି ବଦଳାଇବା ସହଜ ନୁହେଁ ।" ପୁଲିସଟି ସିଗାରେଟ ଫେରାଇ ଦେଲା । ବାଳକଟି ଗୋଟେ ଓସ୍ତାଦ୍ ପରି ଦୁଇ ଆଙ୍ଗୁଠି ମଝିରେ ଏହାକୁ ଧରି ଲୋଭିଲା ଆଖିରେ ଦେଖିଲା ଆଉ ଫୋପାଡ଼ିଦେଲା ।

ଜାରଜଟି, ଯିଏ ଗୋଟେ ଯନ୍ତ୍ରପାତି ବାକ୍ସ ଉପରେ ବସିଥିଲା ଏମାନଙ୍କ କଥା ଶୁଣିବାକୁ, ଗୋଟାଏ ଝାମ୍ପରେ ସିଗରେଟଟି ଆଣି, ଅଧା ଆଖି ବୁଜି, ଜୋର ଥରେ ଟାଣିନେଲା ।

ଭିଏତନାମୀଟି ରାଗରେ ତା ସାଙ୍ଗକୁ ଅନେଇଲା ଆଉ ମେଞ୍ଚାଏ ଛେପ ଥୁଃ କରି ପକେଇଲା । ତାପରେ ପୁଲିସକୁ ଚାହିଁ ହଠାତ୍ ପଚାରିଲା, "ସେ ଗୋଟେ ଆମେରିକୀୟ ଜାରଜ, ତୁମର ତା ପ୍ରତି କୌଣସି କ୍ରୋଧ ଅଛି ?"

ପୁଲିସଟି ଏପରି ଘୃଣା ଆଶା କରୁନଥିଲା, ସେ କହିଲା, "ମୁଁ ତ ତାକୁ ତୁମରି ପରି ଗୋଟେ ସାଧାରଣ ବାଳକ ଭାବୁଛି ।"

"କାହିଁକି ? ସେ ତ ଗୋଟେ ଆମେରିକୀୟ ବର୍ଣ୍ଣଶଙ୍କର ।"

"ଓ, ସେ ଗୋଟେ ବର୍ଣ୍ଣଶଙ୍କର, ସାଧାରଣ ସନ୍ତାନ ନୁହେଁ । ଆମେ ସବୁ ଆମେରିକୀୟ ଯୁଦ୍ଧବନ୍ଦୀଙ୍କୁ ମୁକୁଳେଇ ସାରିଛୁ । ଇଏ କେବଳ ପରିସ୍ଥିତିର ଶିକାରଟିଏ । ତୁମରି ପରି

ସେ ବି କ୍ଷତିର କଷ୍ଟ ଭୋଗୁଛି, ସ୍କୁଲ ଯାଇପାରିନାହିଁ, ଦିନେ ତାକୁ ସମାଜ ସାହାଯ୍ୟ କରିବ ।"

ଆମେରିକୀୟଟି ମୁଣ୍ଡ ଟେକି କହିଲା, "ମୋର ମା–ବାପା ନାହାନ୍ତି, ସମାଜ ମତେ କେମିତି ସାହାଯ୍ୟ କରିବ ?"

ସାଙ୍ଗର ପ୍ରତିକ୍ରିୟାରେ ଭିଏତନାମୀଟି ବିଚଳିତ ହୋଇ ମଝିରୁ କହିଲା : "ତା ବାପା ତାକୁ ଛାଡ଼ି ୟୁ. ଏସ୍. ଚାଲିଗଲା ; ମା' ରୋଗରେ ପଡ଼ି ମରିଗଲା, ସେ ଆଠବର୍ଷ ବେଳୁ ଏକୁଟିଆ ହୋଇଯାଇଛି । ବିପ୍ଳବ ନାଁ ଶୁଣିଲେ ସେ ଡରେ ଆଉ ଦି ପଇସା ରୋଜଗାର କରିବାକୁ ମୋ ପଛରେ ଦୌଡ଼େ । ସେ ଭଲ ଦେଖାଯାଉଛି ସିନା ହେଲେ ଶ୍ରୀଅକ୍ଷର ବିବର୍ଜିତ ।"

***

ଲାଲବତୀ ଜଳୁଥିଲା, ତଥାପି ଗୋଟେ ମଟରସାଇକେଲବାଲା ପଳେଇଯିବାକୁ ବସିଥିଲା, ଦୁର୍ଘଟଣା ଘଟିଯାଇଥାନ୍ତା । ପୁଲିସ ହୁଇସିଲ ମାରି ତାକୁ ଅଟକାଇଲା । ଆରୋହୀଟି ଗୋଟେ ଯୁବ ରାଜନୈତିକ କର୍ମୀ ଥିଲା ବୋଧେ, ସେ ମୋଟରସାଇକେଲ ଗଡ଼େଇ ପୁଲିସ ପାଖକୁ ଆସି କହିଲା, "ମତେ କ୍ଷମା କରିଦିଅ, ମୁଁ ତରତରରେ ଥିଲି ।"

ପୁଲିସ ରାଗିଯାଇ କହିଲା, "ତରତର ନୁହଁ, ତୁମେ ଟ୍ରାଫିକ ନିୟମ ମାନିବା ଉଚିତ । ଜଣେ ସେବାକର୍ମୀ ଭାବରେ ତୁମେ ଅନ୍ୟମାନଙ୍କ ଆଗରେ ଆଦର୍ଶ ରଖିବା ଦରକାର ।"

ଯୁବକଟିର ଓଠରୁ ହସ ଲିଭିଗଲା । ସେ ବିରକ୍ତ ହୋଇ କହିଲା, "ମୁଁ ତ କହିଲି ଯେ ତରତରରେ ଥିଲି ଆଉ ଟ୍ରାଫିକ ଲାଇଟ ଦେଖିପାରିନଥିଲି ।"

ପୁଲିସ ଏଥିରେ ଚିଡ଼ିଗଲା, "ଦେଖେଇଲ ତୁମ କାଗଜପତ୍ର, ମୁଁ ତୁମ ନାମ ଆଉ ଠିକଣା ଆଗ ଲେଖିନିଏ ।"

ଯୁବକଟି ଏଥର ଖୁବ ରାଗିଗଲା, "ତୁମ କାମ ତୁମେ କର, ଯାହା ଜୋରିମାନା ହାଙ୍କିବ ଦେଇଦେବି । ହେଲେ ଏମିତି ଅଭଦ୍ର ବ୍ୟବହାର କରନାହିଁ ।"

ପୁଲିସ ଜବାବ ଦେଲା, "ତୁମେ ଟ୍ରାଫିକ ନିୟମ ଭାଙ୍ଗିଲ, ଆଉ ମୁଁ ଗୋଟେ ପୁଲିସ ରିପୋର୍ଟ କଲାବେଳକୁ ତୁମେ କହୁଛ କ'ଣ ନା ଅଭଦ୍ର ବ୍ୟବହାର ?"

"ତୁମ ଆଚରଣ ଅଶାଳୀନ । ମୁଁ ତୁମକୁ କହିଛି କାମର ଚାପାରେ, ମୁଁ ଲାଲବତୀ ଜଳୁଥିବାବେଳେ ଲାଇନ ଟପିଗଲି, ତୁମେ ମତେ ଶିକ୍ଷା ଦେଉଚ କ'ଣ ନା ଗୋଟେ ସେବାକର୍ମୀ ଆଦର୍ଶ ରଖିବା ଦରକାର ... ସରକାରୀ କର୍ମଚାରୀଙ୍କୁ ଶିକ୍ଷାଦେବା ତୁମ କାମ ନୁହେଁ ।"

ସେଠାରେ ଲୋକ ଜମିନଥିଲେ ପୁଲିସଟି ହୁଏତ ଅଧିକ ରାଗିଥାଆନ୍ତା, ହେଲେ ସେ ରାଗଚାପି, ସ୍ୱର ନରମେଇ କହିଲା, "ବୋଧେ ମୁଁ ଟିକେ ବେଶୀ ରାଗିଗଲି, କିନ୍ତୁ ତୁମେ ତ ନିୟମ ଭାଙ୍ଗିଛ, ଏବେ ମୋ କର୍ତ୍ତବ୍ୟ କରିବାକୁ ଛାଡ଼ିଦିଅ ।"

ଗୁଁ ଗୁଁ ହୋଇ ଲୋକଟି କାଗଜ ବାହାର କଲା ।

"ତୁମ ନାମ ଲୁ ଭାନ୍ ତ ?"

"ଲୋକଟି ତଥାପି ବିରକ୍ତ ହୋଇ କହିଲା, ନିଜେ ଦେଖିନିଅ ।"

"ଏ କାଗଜ କହୁଛି ଏହାର ମାଲିକ ଗୋଟେ ଆର୍ମିଲୋକ ।"

"ହଁ, ମୁଁ ଜଣେ ପୂର୍ବତନ ଆର୍ମି ଅଫିସର ।"

"ତୁମ ପରିଚୟପତ୍ର ଦେଖାଅ ।"

"ଆରାମରେ ଦେଖିପାର", କହି ଲୋକଟି ତା ପରିଚୟପତ୍ର ବଢ଼ାଇଦେଲା ।

"ଏଥିରେ ଲେଖାଅଛି ତୁମେ ଜଣେ ସାମ୍ବାଦିକ ।"

"ସେଥିରେ କିଛି ଅସୁବିଧା ନାହିଁ, ମୋ ବୃତ୍ତି ମୁଁ ବଦଳେଇଦେଇଛି ।"

"ତୁମ ଇଞ୍ଜିନ ଶହେ ପଚାଶ ସି.ସି, ତୁମେ ଡ୍ରାଇଭିଂ ଲାଇସେନ୍ସ ଦେଖାଅ ।"

"ଘରୁ ଆଣିବାକୁ ମୋତେ ସମୟ ହୋଇନାହିଁ ।"

"ତୁମ ମୋଟର ବାଇକର ନମ୍ବର ପ୍ଲେଟ ପୁରୁଣା ହୋଇଛି ।"

"ହଁ, ମୁଁ ବ୍ୟସ୍ତ ଥିଲି, ବଦଳାଇବାକୁ ସମୟ ପାଇନାହିଁ, ଦୁଃଖିତ ।"

ପୁଲିସଟି ହସିହସି କହିଲା, "ନିମ୍ନଲିଖିତ ଅଭିଯୋଗ ପାଇଁ ତୁମ ଉପରେ ଜୋରିମାନା ହେଲା । ୧– ବିନା ଲାଇସେନ୍ସରେ ଗାଡ଼ି ଚଳାଇବା ; ୨– ପୁରୁଣା ନମ୍ବର ପ୍ଲେଟ ବ୍ୟବହାର ; ୩– ନିର୍ଦ୍ଧାରିତ ଗତିରୁ ଜୋରରେ ଚଳାଇବା ; ୪– ଟ୍ରାଫିକ ସଂକେତ ନମାନିବା । ମୁଁ ତମ କାଗଜତକ ରଖୁଛି । ଏଇ ତାରିଖରେ ଦୟାକରି ଚଙ୍ଗ୍ ଦୁଅଙ୍ଗ୍ ପୁଲିସ ଥାନାକୁ ଆସି ତୁମ ଜୋରିମାନା ଦେଇଯିବ ।"

ସାମ୍ବାଦିକଟି ନିଜ କ୍ରୋଧ ଚାପିବାକୁ ଚେଷ୍ଟାକରି କହିଲା, "ନିଜ କର୍ତ୍ତବ୍ୟ କର ।"

ପୁଲିସ ଆତ୍ମସନ୍ତୋଷ ସହ ରିପୋର୍ଟ ତିଆରି କଲା ; ମନେମନେ ଭାବିଲା, "ମୁଁ ଟିକିଏ ରାଗୀ ଲୋକ, ସେ ତା କ୍ରୋଧପାଇଁ ଠିକ୍ ମୂଲ୍ୟ ଦେବ ।"

ସାମ୍ବାଦିକକୁ ରିପୋର୍ଟ ବଢ଼ାଇଦେଇ ମଟରସାଇକେଲ କାଗଜ ସେ ମୁଣିରେ ପୂରାଇଲା ।

ହେଲେ ଯେତେବେଳେ ସେ ଦେଖିଲା ଯେ ଯୁବକଟି ତାର ବାଇକଟିକୁ ବିବ୍ରତ ହୋଇ ଠେଲିଠେଲି ନେଉଛି, ତାର ଦୟା ହେଲା ; ସେ ତାକୁ ଡାକି କହିଲା : "ତୁମ କାଗଜ ମୁଁ ତୁମକୁ ଦେଇଦେଉଛି ; ଆଉଥରେ ଏପରି କରିବ ନାହିଁ, ବନ୍ଧୁ ।"

ସାମ୍ବାଦିକଟି ଜୋର୍ ହସିଉଠିଲା, ଆଶ୍ଚର୍ଯ୍ୟ ହୋଇ ପୁଲିସକୁ ଚାହିଁଲା । ପୁଲିସ

ତାକୁ ଦେବାକୁ ପଡୁଥିଲା । କାଗଜତକ ବଢ଼େଇଦେଇ କହିଲା, "ମୋ ରିପୋର୍ଟ ମତେ ଦେଇଦିଅ ।"

ସାମ୍ବାଦିକ ଏଥର କହିଲା, "ତୁମେ ଏତେଶୀଘ୍ର କାହିଁକି ତୁମ ମନ ବଦଳାଅ ? ମୁଁ ଛୋରିମାନା ଗ୍ରହଣ କରୁଛି ।" ସେ ରିପୋର୍ଟ ଫେରାଇଦେଲା । ପୁଲିସ ବନ୍ଧୁଟିଏ ପରି କହିଲା, "ତୁମେ ମୋଠାରୁ ଭାଗ୍ୟବାନ, କିନ୍ତୁ ମୋ ପରି ତୁମେ କଷ୍ଟ ପାଇନାହଁ । ତୁମେ ଗୋଟେ ବୃତ୍ତିରୁ ଅବସର ନେଇଛ । ମୁଁ ସାତ-ଆଠ ବର୍ଷ ଯୁଦ୍ଧ କରି ମଧ୍ୟ, ଯୋଗ୍ୟତା ହାସଲ କରିପାରିନାହିଁ ବୋଲି ଦିନସାରା ସଡ଼କ ଉପରେ ଠିଆହୋଇ ରହୁଛି । ମୁଁ ରାଗ ଚାପିପାରେ ନାହିଁ ।"

"ତୁମେ କେଉଁ ଡିଭିଜନରେ ଥିଲ ?" ସାମ୍ବାଦିକ ପଚାରିଲା ।

"ଡିଭିଜନ ସାତ ।"

"ମୁଁ ବି ସେଇ ଡିଭିଜନରେ କାମ କରିଛି ।" ଏତିକି କହି ହାତ ବଢ଼ାଇ ସେ ହାଣ୍ଡସେକ କଲା । ହସିହସି କହିଲା, "ତୁମର ହଙ୍ଗଥାନ୍‌ସାଉ ମନେଅଛି ? ମୁଁ ଜାଣେନି ଏବେ ସେ ଜାଗା କେଉଁଠି ।"

***

ଝିଅଟିଏ ।

ସକାଳ ସାତ ବାଜିବାକୁ ଠିକ୍ ଦଶମିନିଟ ଥାଏ, ଝିଅଟି ତାକୁ ଅତିକ୍ରମ କରିଯାଏ । ଆଉ ଉପରଓଳି ଘଣ୍ଟାକଣ୍ଟା ଯେତେବେଳେ ଦେଖାଏ ପାଞ୍ଚଟା ବାଜିବାକୁ କୋଡ଼ିଏ ମିନିଟ ବାକି, ସେ କାମରୁ ଫେରେ । ଝିଅମାନଙ୍କ ପ୍ରତି ଅଧିକ ନଜର ଦେଲାଭଳି ପୁରୁଷ ସେ ନଥିଲା । ପ୍ରଥମେ ପ୍ରଥମେ ସିଆନିଜ୍ ଝିଅମାନଙ୍କ ବହୁରଙ୍ଗୀ ପାରମ୍ପରିକ ପୋଷାକ ଆଓଦାଇ, ସେମାନଙ୍କ ଅତି ଢିଲା ଟ୍ରାଉଜର୍, ଟି-ସାର୍ଟ ତାକୁ କ୍ରୋଧାନ୍ୱିତ କରୁଥିଲା । ହେଲେ ସେଇ ଝିଅଟି ଯିଏ ଲାଲ ରଙ୍ଗର ହୋଣ୍ଡା ଚଢ଼ି କାମକୁ ଯାଉଥିଲା ତାର ରଙ୍ଗଢ଼ଙ୍ଗ ପୁଲିସ ମନକୁ ଖୁବ୍‌ଶୀଘ୍ର ପ୍ରଭାବିତ କରିବା ଆରମ୍ଭ କରିଥିଲା : ତା ଦେହର ରଙ୍ଗ ଥିଲା ବାଦାମୀ, ମୁହଁ ପାନପତ୍ର ପରି, ଆଖି ବଡ଼ବଡ଼ ଓ ଉଜ୍ଜ୍ୱଳ, ନାକ ସଳଖ, ପାଟି ଆକର୍ଷଣୀୟ, ଲାଲ ମୋଟା ଓଠ ଆଉ ତା କାନ୍ଧ ଉପରେ ଘଞ୍ଚ କେଶରାଶିର ଲହରି । ଲାଲ ଆଲୋକର ସଂକେତରେ ଝିଅଟି ଯେବେ ଅଟକିଯାଏ, ତାର ପ୍ରତିଟି ଅଙ୍ଗଭଙ୍ଗୀକୁ ଲକ୍ଷ୍ୟ କରୁଥାଏ ସେ । ଆସ୍ତେ, ଆରାମରେ ତାର ପାଦ ଭୂଇଁରେ ଥୋଇବା, ଚାରିପଟକୁ ଉଦ୍ଦେଶ୍ୟହୀନ ଭାବରେ ଅନାଇବା ଆଉ କେବେ ବି ତା ଆଡ଼କୁ ନଦେଖିବା, ପ୍ରତିଦିନ ଅଲଗା ଅଲଗା ଆଓଦାଇ ପିନ୍ଧିବା ଆଉ ପ୍ରତିଦିନ ଏକ ନିର୍ଦ୍ଦିଷ୍ଟ ସମୟରେ ତାର ଛକ ଟପିଯିବା । ଏସବୁ ତା ଆଖିକୁ ଏଡ଼ାଇ ଯାଏ

ନାହିଁ, ଆଉ ଯେଉଁଦିନ ସେଇ ସମୟରେ ସେ ଦେଖାଯାଏ ନାହିଁ, ପୁଲିସଟିକୁ ଲାଗେ ଯେପରି ତା ହୃଦୟର କିଛି ଗୋଟେ ହଜିଯାଇଛି । ସେ ଅନୁମାନକରେ : କ'ଣ ସେ ବ୍ୟସ୍ତ ? ନା ତା ଦେହ ଖରାପ ? ଯେତେବେଳେ ତା ସଙ୍ଗେ କେହି ପୁରୁଷ ଥାଏ ତ ସେ ନଭାବି ରହିପାରେନି – ଇଏ କିଏ ? ତା ପ୍ରେମିକ ନା ସହକର୍ମୀ ?

ଏସବୁ ଭାବନା କିନ୍ତୁ ଖୁବଶୀଘ୍ର ତା ମନରୁ ଲିଭିଯାଏ ଆଉ ରାସ୍ତା ଉପରର ଗହଳି ତାର ଧ୍ୟାନ ଆକର୍ଷଣ କରି ବାସ୍ତବ ଜଗତକୁ ନେଇଆସେ ।

ବେଳେବେଳେ ଯେତେବେଳେ ରାସ୍ତା ଫାଙ୍କା ଥାଏ, ସେ ବାଳକଦୁଇଟିଙ୍କ ପାଖକୁ ଟାଣିହୋଇଯାଏ ତାଙ୍କ ସଙ୍ଗେ ଗପିବାକୁ ।

ସେମାନେ ପଚାରନ୍ତି, "ଆର୍ମିରେ ଯୋଗଦେବା ଆଗରୁ ତୁମେ ସ୍କୁଲକୁ ଯାଇଥିଲ ?"

"ହଁ, ଯାଇଥିଲି ।"

"ତୁମେ କୋଉ ଶ୍ରେଣୀରେ ଥିଲ ?"

"ମୁଁ ସୈନ୍ୟ ବିଭାଗରେ ଯୋଗ ଦେଲାବେଳକୁ ଦଶମ ଶ୍ରେଣୀରେ ପଢୁଥିଲି ।"

"ତୁମେ ବୋଧେ ପଢ଼ିବାକୁ ଭଲ ପାଉନଥିଲ ?"

"କାହିଁକି ନୁହେଁ ?"

"ସ୍କୁଲ କାହିଁକି ଛାଡ଼ିଲ ?"

"ଆମେରିକାନମାନେ ଆମ ଲୋକଙ୍କୁ ମାରିଦେଲେ, ଆମ ଦେଶକୁ ଧ୍ୱଂସ କରିପକାଇଲେ, ମୁଁ ସ୍କୁଲ ଛାଡ଼ିଦେଲି ସେମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ । ପାଠ ପଢ଼ିବାକୁ ମତେ ବହୁତ ଭଲ ଲାଗୁଥିଲା, ଏବେ ମୁଁ ପୁଣି ପଢୁଛି ।"

ପିଲା ଦୁଇଟି ଆଶ୍ଚର୍ଯ୍ୟ ହୋଇଗଲେ : "ତୁମେ ଏତେ ବ୍ୟସ୍ତ ରହୁଛ ପୁଣି ପଢ଼ିପାରୁଛ କେମିତି ?"

"ମୁଁ ସନ୍ଧ୍ୟାସ୍କୁଲକୁ ଯାଉଛି ।"

ମିନିଟିଏ ନିରବତା ପରେ, ଭିଏତନାମୀ ବାଳକଟି ତା ପାଖକୁ ଲାଗିଯାଇ ପଚାରିଲା ; "ମୋ ପାଠ ପଢ଼ିବାରେ ତୁମେ ସାହାଯ୍ୟ କରିପାରିବ ?"

"ତୁମେ କେଉଁ ଶ୍ରେଣୀରେ ପଢୁଥିଲ ?"

"ଚତୁର୍ଥ ଶ୍ରେଣୀରେ ।"

"ନିଶ୍ଚୟ ମୁଁ ତୁମକୁ ସାହାଯ୍ୟ କରିବି । ହେଲେ ତୁମକୁ ପାଠପଢ଼ାରେ ମନଦେବାକୁ ହେବ ।"

"ମୁଁ ପାଠ ପଢ଼ିବାକୁ ଦୃଢ଼ପ୍ରତିଜ୍ଞ ଯେମିତି ଦୃଢ଼ପ୍ରତିଜ୍ଞ ହୋଇ ସିଗାରେଟ ଛାଡ଼ିଦେଲି ।"

ଆମେରିକୀୟ ବାଳକଟି ସଂଶୟଭରା ସ୍ୱରରେ ପଚାରିଲା, "ମୁଁ ବି କ'ଣ ସ୍କୁଲ ଯାଇପାରିବି ?"

ତା ସାଙ୍ଗ ମଝିରୁ ତାକୁ କହିଲା, "ତୁ ମୋ ଠାରୁ ବଡ଼ ଆଉ କିଛିବି ପାଠ ପଢ଼ିନାହୁଁ, ତୋ ପାଇଁ ଏଠାରେ କୌଣସି ନର୍ସରୀ ସ୍କୁଲ ନାହିଁ ।"

ପୁଲିସଟି ଭିଏତନାମୀ ବାଳକକୁ କହିଲା, "ତୁମ ବନ୍ଧୁକୁ ନ୍ୟୁନ ମନେକର ନାହିଁ, ଏଠି କିଛି ପାଠ ପଢ଼ିନଥିବା ପିଲାଙ୍କ ପାଇଁ ବି ସ୍କୁଲ ଅଛି ।"

ବର୍ଣ୍ଣଶଙ୍କରଟି ଠିଆହୋଇପଡ଼ି ତା ସାଙ୍ଗକୁ ଆହ୍ୱାନ ଦେଲା, "ଯଦି ମୁଁ ସ୍କୁଲ ଯିବାକୁ ଅନୁମତି ପାଏ, ଦେଖିବୁ ତୋଠାରୁ ବି ଭଲ ପାଠ ପଢ଼ିବି ।"

ଲୁଭାନ ଯେତେବେଳେ ବି ସେ ଛକ ଦେଇ ଯାଏ, ସେଠି କିଛି ସମୟ ଅଟକି ପୁଲିସଟି ସାଥିରେ ଦିପଦ କଥା ହୋଇଯିବାକୁ ଭୁଲେ ନାହିଁ । ସେମାନେ ପରସ୍ପରର ବନ୍ଧୁ ହୋଇଯାଇଥିଲେ । ଦିନେ ଉପରଓଳି, ଉଭୟେ କଥା ହେଉଥିବାବେଳେ ଝିଅଟି ସେବାଟ ଦେଇ ଛକ ଅତିକ୍ରମ କରୁଥିଲା । ସ୍ୱାଭାବିକ ଭାବରେ ପୁଲିସଟି କଥା ବନ୍ଦ କରିଦେଇ ଝିଅଟିକୁ ଅପଲକ ଆଖିରେ ଅନେଇ ରହିଲା । ଠିକ୍ ସେତିକିବେଳକୁ ଲାଲବତୀ ଜଳିଉଠିଲା ଆଉ ଝିଅଟି ତାଙ୍କରି ପାଖରେ ସ୍କୁଟି ବନ୍ଦକରି ଠିଆ ହୋଇଗଲା ।

ବନ୍ଧୁର ଏଭଳି ଅସାଧାରଣ ଭଙ୍ଗୀ ଲକ୍ଷ୍ୟକରି, ଲୁଭାନ୍ ତାକୁ ପଚାରିଲା, "ସେ କ'ଣ ତୁମର କେହି ଜଣାଶୁଣା କି ?"

ପୁଲିସଟି ଟିକିଏ ହଡ଼ବଡ଼େଇ ଗଲା, "ମୁଁ ତାକୁ ଜାଣେନି କିନ୍ତୁ ପ୍ରତିଦିନ ସେ ଏଇବାଟ ଦେଇ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଯାଏ ଆଉ ଫେରେ ।"

ଦିନେ ଉପରଓଳି, ଗହଳିବେଳେ ସେ ଜନସ୍ରୋତ ଭିତରେ ଝିଅଟିକୁ ଦେଖିଲା ନାହିଁ । ହୃଦୟ ଭିତରେ ତାକୁ ଖାଲି ଖାଲି ଲାଗିଲା, ହେଲେ ଖୁବ୍‌ଶୀଘ୍ର ଗାଡ଼ିମାନଙ୍କ ଗହଳି ନିୟନ୍ତ୍ରଣ କରିବା କାମରେ ସେ ଲାଗିଗଲା ।

ଗୋଟେ କାର୍ ଡ୍ରାଇଭର ଟ୍ରାଫିକ ନିୟମ ଭାଙ୍ଗି ଚାଲିଯାଉଥିଲା । ସେ ହୁଇସିଲ ମାରି ତାକୁ ଅଟକେଇଲା । ନିୟମଭଙ୍ଗକାରୀ ଥିଲା ଗୋଟେ ମଧ୍ୟବୟସ୍କ ଲୋକ ; ସେ ତାର ଏହି ଭୁଲପାଇଁ କ୍ଷମା ମାଗିଲା କାରଣ ସେ ତରବରରେ ଥିଲା ।

ଅନ୍ୟବେଳ ହୋଇଥିଲେ ପୁଲିସଟି ରାଗିଯାଇଥାନ୍ତା, ହେଲେ ଡ୍ରାଇଭରର ନରମ ସ୍ୱର ତାକୁ ଭଲ ଲାଗିଲା ଆଉ ଲୋକଟିକୁ ସେ କାଗଜପତ୍ର ଫେରେଇଦେଇ ତାକୁ ତାଗିଦ୍ କଲା, "ଦେଖ, ଏ ଭୁଲ ଯେପରି ଦ୍ୱିତୀୟବାର ନହୁଏ ।"

ବୁଲିପଡ଼ି ସେ ଦେଖିଲା ଝିଅଟି ତା ପାଖରେ ଠିଆହୋଇଛି ଆଉ ଖୁବ୍ ଗଭୀର ଭାବରେ ତାକୁ ଅନେଇଛି । ସେ କିଛି ବୁଝିପାରିଲା ନାହିଁ, ହେଲେ ଝିଅଟି କହିଲା, "ମୋତେ ଟିକିଏ ସାହାଯ୍ୟ କରନ୍ତୁ ସାର୍ ।" ଝିଅଟି ତାକୁ ସାର୍ କହିଲା ହେଲେ ସେ ଗୋଟେ ସାଙ୍ଗ ପରି କହିଲା, "କ'ଣ ହୋଇଛି ?"

"ମୋ ବାଇକଟି ଖରାପ ହୋଇଯାଇଥିଲା । ମେକାନିକ ମତେ ଅଧିକ ଟଙ୍କା

ମାଗୁଛି । ମୋ ପାଖରେ ଏତେ ଟଙ୍କା ନାହିଁ । ଆପଣ ମୋ ସ୍କୁଟି ଉପରେ ଦୟାକରି ନଜର ରଖିଥାନ୍ତୁ, ମୁଁ ଘରକୁ ଯାଇ ଟଙ୍କା ଆଣି ଫେରିଆସୁଛି ।"

ତାକୁ କଷ୍ଟ ହେଲା । ହେଲେ ଝିଅଟିର ମିନତୀଭରା ଆଖିଦୁଇଟି ତାକୁ ନିରସ୍ତ୍ର କରିଦେଲା । ସେ ପଚାରିଲା, "କିନ୍ତୁ ତୁମେ ତୁମ ବାଇକ୍ ମୋ ଜିମାରେ ଛାଡ଼ିଯାଉଛ କାହିଁକି ?"

"ଆପଣ ଜଣେ ଆର୍ମିଲୋକ, ପ୍ରତିଦିନ ମୁଁ ଦେଖୁଛି ଆପଣ ଏ ଅଞ୍ଚଳରେ ଶୃଙ୍ଖଳା ରଖୁଛନ୍ତି, ମୁଁ ନିଶ୍ଚିତ ଯେ ଆପଣ ଜଣେ ଭଲଲୋକ ।"

ପୁଲିସଟି ଏଥର ହସିଲା, କହିଲା, "ମୁଁ ବର୍ଷେ ହେଲା ଦେଖୁଛି ଏଇ ବାଟଦେଇ ତୁମେ ସବୁଦିନ ଯିବାଆସିବା କରୁଛ । ଏ କେଶ୍ ସମାଧାନ କରିବାର ବାଟ ମୁଁ ବତାଇ ଦେଉଛି । ମେକାନିକ କେତେ ଟଙ୍କା ମାଗୁଛି ?"

"ପଚିଶ ।"

"ତୁମର କେତେ ଦରକାର ?"

"ପ୍ରାୟ ପନ୍ଦର ।"

"ମୁଁ ତୁମକୁ ଏତକ ଦେଇଦେଉଛି ତାହେଲେ ତୁମେ ସାଙ୍ଗେସାଙ୍ଗେ ଗାରେଜବାଲାକୁ ଦେଇଦେବ ।"

ଝିଅଟି ପିଲାଙ୍କ ପରି କହିପକାଇଲା, "ନା-ନା, ମୁଁ ପ୍ରକୃତରେ ଆପଣଙ୍କୁ ଏଥିପାଇଁ ହଇରାଣ କରିବାକୁ ଚାହୁଁନାହିଁ !"

"ଏହାଦ୍ୱାରା ତୁମ ବାଇକ ଜଗିବା କାମରୁ ମୁଁ ରକ୍ଷା ପାଇଯିବି ଆଉ ମୋ କର୍ତ୍ତବ୍ୟ କରିପାରିବି ।"

ଏହିପରି ସେମାନଙ୍କର ପରସ୍ପର ସହ ପରିଚୟ ହୋଇଥିଲା । ହେଲେ କେବଳ ମୁଣ୍ଡହଲା ପରିଚୟ । ପ୍ରତିଥର ସେମାନେ ପରସ୍ପରକୁ ଦେଖିଲେ ଉଭୟ ହସି ଦିଅନ୍ତି ନହେଲେ ମୁଣ୍ଡ ଟୁଙ୍ଗାରିଦିଅନ୍ତି ।

***

ସେଦିନ ରାତିରେ ଭୟାନକ ବର୍ଷା ଲାଗିରହିଥାଏ । ଖୁଣ୍ଟରୁ ଫ୍ଲୋରସେଣ୍ଟ ଆଲୋକ ପଡ଼ି ସଡ଼କ ଉପର ପାଣି ଚକ୍‌ଚକ୍ କରୁଥାଏ । ରାତ୍ରିର ନିସ୍ତବ୍ଧତା ବାରମ୍ବାର ଭାଙ୍ଗୁଥାଏ ଯାନବାହନର ଗର୍ଜନରେ । ଜୋର ପବନରେ ଗଛପତ୍ରର ସାଇଁ ସାଇଁ ଶବ୍ଦ । ଟ୍ରାଫିକ୍ ଆଲୁଅ ଅବିରତ ଧପଧପ ହେଉଥାଏ ଆପେ ଆପେ । ବର୍ଷାତି ପିନ୍ଧି ଗୋଟେ ତେନ୍ତୁଳିଗଛ ତଳେ ଠିଆ ହୋଇଥାଏ ପୁଲିସଟି ଆଉ ତା' ଆଖି ବୁଲୁଥାଏ ଚାରିଆଡ଼େ । ଦିନବେଳା

ଯାନବାହନ ନିୟନ୍ତ୍ରଣ କରିବା ବଡ଼ ଜଟିଳ ହେଲେ ବି ସଡ଼କର ପ୍ରାଣବନ୍ତ ରୂପ ତା ଦେହ–ମନରେ ଶକ୍ତି ଓ ଉଚ୍ଛ୍ୱାସ ଭରିଦିଏ, ଅଥଚ ତା' ରାତି ଡ୍ୟୁଟି ଅପେକ୍ଷାକୃତ ସରଳ ହୋଇ ମଧ୍ୟ ଅକସ୍ମାତ ଦୁର୍ଘଟଣାର ଭୟ ଯୋଗୁଁ ବିପଜ୍ଜନକ ଲାଗେ । ଥଣ୍ଡାରାତିରେ ଏକୁଟିଆ ଠିଆହୋଇ ସେ ସିଗାରେଟ୍‌ଟିଏ ଲଗାଇଲା ଆଉ ଦୁଇ ଓଠ ମଝିରେ ଠିକ୍ ଚାପିଦେଲାବେଳକୁ ତା'ର ଧୂମପାନ ତ୍ୟାଗ କରିବା କଥା ମନେପଡ଼ିଗଲା, ସେ ଦୂରକୁ ଫିଙ୍ଗିଦେଲା ସିଗାରେଟଟି ।

ଏକଦମ୍ ପତଳୀ ଝିଅଟି, ହଳଦିଆ ବର୍ଷାତି ଆଉ ଚେପ୍‌ଟା ଟୋପି ପିନ୍ଧି ଅଳସ ଗତିରେ ତା' ଆଡ଼କୁ ଚାଲି ଚାଲି ଆସିଲା ଆଉ କହିଲା, ''ଲାଇଟ୍, ପ୍ଲିଜ୍ ।''

ଅନିଚ୍ଛାସତ୍ତ୍ୱେ ସେ ଲାଇଟର୍ ଜଳାଇ ଝିଅର ସିଗାରେଟ୍ ଲଗାଇଲା । ଅଳ୍ପ ଆଲୁଅରେ ଲକ୍ଷ୍ୟକଲା ଝିଅଟିର ରଙ୍ଗମଖା ମୁହଁ ଆଉ ଖୁବ୍ ଜୋର ସିଗାରେଟରୁ ଫୁଙ୍କାଏ ଟାଣିନେଇ ଧୂଆଁସବୁ ଗିଳିଦେବାର ଢଙ୍ଗ ।

''ଧନ୍ୟବାଦ । ତୁମେ ଏଠି ଏକୁଟିଆ ଏମିତି ଠିଆହୋଇଛ ଯେପରି ଜୀବନ ତୁମକୁ ଭୁଲିଯାଇଛି । ତୁମେ ଏପରି ମନ ଭଲ ନଥିଲା ପରି ଦେଖାଯାଉଛ ଯେ ? ଘରେ ସ୍ତ୍ରୀ–ପିଲାଙ୍କ କଥା ଭାବୁଛ ବୋଧେ ?''

ତା' କଥା ଶୁଣି ପୁଲିସଟି ଚମକି ପଡ଼ିଲା, ଭୃରୁ କୁଞ୍ଚେଇ କହିଲା, ''ମୋ କର୍ତ୍ତବ୍ୟ ମୁଁ କରୁଛି । ମୋ ସାମ୍ନାରୁ ଦୂର୍ ହୋଇ ଯା !''

''ସତକଥା, ଟ୍ରାଫିକ୍ ଯେତେବେଳେ ଅଧିକ, ତୁମେ ସେତେବେଳେ ବ୍ୟସ୍ତ । ହେଲେ ଏବେ ତ ବର୍ଷା ହେଉଛି ଆଉ ଗୋଟିଏ ବି ଲୋକ କେଉଁଠି ଦେଖାଯାଉନି । ମୁଁ ଯେତେବେଳେ ତୁମକୁ ଭଲକଥା କହୁଛି, ତୁମେ କାହିଁକି ମୋ ସାଥିରେ କଥା ହେବାକୁ ମନାକରିଦେଉଛ ?''

ପୁଲିସଟି ଅତି ରାଗିଯାଇ ତାକୁ ଚାହିଁଲା ଆଉ ବେପରୁଆ ସ୍ୱରରେ କହିଲା, ''ତୁମେ ଗୋଟେ ଗଣିକା ନା ?''

''ତୁମେ ମୋ ଉପରେ ଏତେ ବିରକ୍ତ ହେଉଛ କାହିଁକି ? ମୁଁ ତ ଗୋଟେ ରେଜେଷ୍ଟ୍ରିଭୁକ୍ତ ବେଶ୍ୟା ।''

ପୁଲିସଟି ଦୌଡ଼ି ପଳାଇଯିବାକୁ ଚାହୁଁଥିଲା, ହେଲେ ଝିଅଟି ଗୋଟେ ଦୀର୍ଘଶ୍ୱାସ ପକାଇଲା, ''ମୋ ଜୀବନ ତ ନଷ୍ଟ ହୋଇଯାଇଛି । କାର୍ଭେଲ ହୋଟେଲରୁ ମୁଁ ପୁରୁଷଙ୍କ ପାଖକୁ ପଠାଯାଏ । ହେଲେ ଆଜିର ଏ ଭୟାନକ ବର୍ଷା । ଜୀବନ ପ୍ରତି ମୋର ଘୃଣା ଆସିଗଲାଣି । ସେଇଥିପାଇଁ ଏ ଘନଘୋର ବର୍ଷାରେ ମୁଁ ଚାଲୁଥିଲି । ଏଠିକି ଆସିଲି ତୁମ ସାଙ୍ଗେ କଥାବାର୍ତ୍ତା ହୋଇ କିଛି ସମୟ କଟାଇଦେବାକୁ ।''

ତାପରେ ସେ ସେ ଗୁଣୁଗୁଣୁ ହୋଇ ସୁରଟିଏ ଧରିଲା :

*"କହଇ ଜୀବନ ନୁହେଁ ମୁଁ ବିରକ୍ତିକର*
*କଦାପି ଜୀବନ ନୁହେଁ ଏକଦମ ଧୀର*
*ତଥାପି ଆକାଶୁ ଖସଇ ଯମୁନା ଧାର*
*ଜୀବନ ନୁହେଁ କେବେ ବିରକ୍ତିକର*
*କାନ୍ଦେ ଖାଲି ଯାହା ବୁହାଇ ନୟନୁ ନୀର ..."*

ଏଥର ଝିଅଟି ଉଦାସ ସ୍ୱରରେ ପଚାରିଲା : "ତୁମକୁ ଆଶ୍ଚର୍ଯ୍ୟ ଲାଗୁଛି ନା ?" ଭୁଲ୍ କହୁଛ, ମୁଁ ଯେତେବେଳେ ମୋ ଡ୍ୟୁଟି କରୁଛି, ମୋ ଜୀବନର କିଛି ଅର୍ଥ ଅଛି ।"

"ହେଲେ ତୁମେ ତ ବିଜୟୀ, ତୁମେ କାହିଁକି ଗଳି ଜଗିଛ ? ଯେତେବେଳେ ଧନୀମାନେ ଆରାମ କରୁଛନ୍ତି, ତୁମେ କାହିଁକି ଅନ୍ୟ ସଖୀକଣ୍ଢେଇ ସୈନ୍ୟଙ୍କୁ କହିଦେଉନ ତୁମପାଇଁ ଏ କାମ କରିବାକୁ ?"

"ଏ ଇଲାକାଲୋକଙ୍କ ନିରାପତ୍ତା ଦେଖିବା, ଶୃଙ୍ଖଳା ରଖିବା ମୋ କାମ । ଧନୀମାନେ ତାଙ୍କ ସମୟ ନଷ୍ଟ କରୁଥାନ୍ତୁ, ସେମାନେ ବଞ୍ଚି ରହିବେ ପରେ ଅନୁତାପ କରିବାକୁ । ଆଉ ତୁମେ ବି, ତୁମେ କାହିଁକି ନିଜପାଇଁ ଚେଷ୍ଟାକରି ଭଲକାମଟିଏ ଯୋଗାଡ଼ କରିନେଉନ ?"

ଝିଅଟି କାନ୍ଧ ହଲାଇଲା : ଆଜି ମୁଁ ମୋର ଦୟନୀୟ ଜୀବନକୁ ନେଇ କ୍ଲାନ୍ତ ଅନୁଭବ କରୁଛି । ଆଜି ମୁଁ ଠିକ୍ ସମୟରେ ନିର୍ଦ୍ଧାରିତ ଯାଗାକୁ ଯାଇନାହିଁ, ମୁଁ ନିଆଁସାଙ୍ଗେ ଖେଳୁଛି । ବେଳେବେଳେ ଭାବୁଛି ଆତ୍ମହତ୍ୟା କରିଦେବି ।"

ଦୂରରୁ, ଗୋଟେ କାର୍‌ରେ ଦଳେ ମଦୁଆ ଟ୍ରାଫିକ୍ ଆଲୁଅକୁ ବେଖାତିର କରି ଦ୍ରୁତଗତିରେ ମାଡ଼ିଆସିଲେ, ସେମାନେ ଆଉଟିକେ ଯାଇଥିଲେ ବୁଲାଣିରେ ଧକ୍କା ଖାଇଥାନ୍ତେ ।

ସେ ହୁଇସିଲ୍ ମାରି କାର୍‌ଟିକୁ ଅଟକାଇଲା, "ତୁମ କାଗଜପତ୍ର ଦେଖାଅ ।" ମୋଟା ନିଶୁଆ ଲୋକଟେ ବାହାରିଆସି ମିନିଟିଏ ପକେଟ ଅଣ୍ଡାଳିଲା, ତାପରେ ଗର୍ଜନ କଲା, "ମୋ କାଗଜ କାହିଁ ?" ଗୋଟେ ସରୁସ୍ୱର କାର୍ ଭିତରୁ ବାହାରିଲା । ସ୍ତ୍ରୀଲୋକଟିଏ କାର୍ ଭିତରେ ନିଶାଡ଼ି ପରି ଦିଶୁଥିବା ଯୁବକକୁ କ'ଣ କହିଲା । ନିଶାଡ଼ିଟି ଏବେ କାର୍ ଭିତରୁ ବାହାରିଆସି ପୁଲିସ ପାଖରେ ଫୁସ୍‌ଫୁସ୍ କରି କହିଲା : "ଏଇତକ ଅଛି ମୋ ପାଖରେ ରଖ, ଏ ଅଣ୍ଡାପାଗରେ କଫି ପିଇବ ଆଉ ଆମକୁ ଛାଡ଼ିଦିଅ, ଆମେ ସମସ୍ତେ ମଦ ପିଇଛୁ ।"

ପୁଲିସଟି ରିପୋର୍ଟ କରିବାକୁ ମନରେ ସ୍ଥିର କରିନେଇଥିଲା, ତା'ଠାରୁ ଡ୍ରାଇଭରର କାଗଜତକ ରଖି, ତାକୁ ଯିବାକୁ ଛାଡ଼ିଦେଲା ।

ଝିଅଟି, ଯିଏ ଗୋଟେ ଗଛମୂଳେ ଠିଆହୋଇଥିଲା କହିଲା, "ଏ ବର୍ଣ୍ଣଶଙ୍କରଗୁଡ଼ା

ଭାବନ୍ତି ସମସ୍ତଙ୍କୁ କିଣିପାରିବେ । ଠିକ୍ ଅଛି, ବାଏ-ବାଏ, ପୁଣି ତୁମକୁ ମୁଁ ମୋ ସାଧୁରାସ୍ତାରେ ଦେଖାକରିବି ।"

ଝିଅଟି ଚାଲିଗଲା । ନିର୍ଜନ ପଥଧାରରେ ଠିଆହୋଇ ପୁଲିସଟି ଭାବିଲା, "ଏଭଳି ଘଟଣାର ସମାଧାନ ଯେତେବେଳେ ମୁଁ କରୁଛି, ମୋ ଜୀଇଁବାର ନିଶ୍ଚୟ କିଛି ଅର୍ଥ ଅଛି । ସେ ଏହା ବି ଲକ୍ଷ୍ୟକଲା ଯେ ଝିଅଟି ଦୂରକୁ ଚାଲିଚାଲି ଯାଉଛି ଯେପରି ତା'ର କେଉଁଥିରେ କିଛି ଆଗ୍ରହ ନାହିଁ । ହୁଏତ ଜୀବନରେ ବହୁତ ଉତ୍‌ଥାନ-ପତନ ସେ ଦେଖିଛି, ତେବେ ତା ସ୍ୱର ଆଉ ତା' ଆଖି ଦେଖି ପୁଲିସଟି ନିଶ୍ଚିତ ଥିଲା ଯେ ସେ ଏପରି ଏକ ଝିଅ ଚାହିଁଲେ ନୂଆ ପତ୍ରଟିଏ ହୋଇ କଅଁଳିପାରିବ ।

ହଠାତ୍ ଗୋଟେ ହୋଣ୍ଡା ମଟରସାଇକେଲ ଚଢ଼ି ଦୁଇଜଣ ଯୁବକ ଦ୍ରୁତଗତିରେ ତା' ପାଖରେ ଆସି ପହଞ୍ଚିଗଲେ । ଜଣେ ମଟରସାଇକେଲରୁ ଓହ୍ଲାଇପଡ଼ିଲା । ଝିଅଟି ଡରିଯାଇ ଦୌଡ଼ିବାକୁ ଚେଷ୍ଟାକଲା ହେଲେ ପୁରୁଷଟି ତା' ପଛରେ ଗୋଡ଼ାଇଲା ।

ଝିଅଟି ପାଟିକଲା, "ସାହାଯ୍ୟକର, ହେଲ୍‌ପ !"

ପୁଲିସ ଦେଖିଲା ଝିଅଟି ପଡ଼ିଗଲା । ସେ ଚିତ୍କାର କଲା, "ଏଃ, ରହ, ରହ !" ଆଉ ତାକୁ ଡରେଇବାକୁ ଗୋଟେ ଫାଙ୍କା ଗୁଳିଚାଳନା କଲା ।

ଗୁଣ୍ଡାଟା ପାଲଟା ଗୁଳିଚଳାଇ ବାଇକ୍ ପଛରେ ବସିପଡ଼ି ଚାଲିଗଲା । ବନ୍ଧୁକ ଶବ୍ଦ ଶୁଣି ଆଖପାଖ ଲୋକେ ସାବଧାନ ହୋଇଗଲେ ।

ଖୁବ୍‌ଶୀଘ୍ର ଅପରାଧୀଦ୍ୱୟ ଧରାପଡ଼ିଲେ । ଜଣେ ତାଙ୍କ ଭିତରୁ ଆହତ ହୋଇଥିଲା ।

ପୁଲିସଟି ଝିଅ ପାଖକୁ ଦୌଡ଼ିଯାଇ ତାକୁ ଉଠାଇଲା । ତା' ଦେହରେ ଛୁରୀ ଭୂଷାଯାଇଥିଲା । ତା' ଧଳା ବ୍ଲାଉଜ୍ ରକ୍ତରେ ଲାଲ୍ ହୋଇଯାଇଥିଲା । ତା' ବର୍ଷାତି ଆଉ ଭ୍ୟାନିଟିବ୍ୟାଗ୍ ସେମାନେ ନେଇଯାଇଥିଲେ ।

"ସେମାନେ କାହିଁକି ତୁମକୁ ମାରିଦେବାକୁ ଚେଷ୍ଟାକରୁଥିଲେ ?" ପୁଲିସଟି ପଚାରିଲା ।

"ମୁଁ କହିଥିବା ସମୟରେ ପହଞ୍ଚିଲି ନାହିଁ, ଆଉ ସେମାନେ କିଛି ଅର୍ଥ ରୋଜଗାର କରିଥାନ୍ତେ, କରିପାରିଲେ ନାହିଁ ।"

"କେବଳ ଏତିକି ?"

"ତୁମ ସାଙ୍ଗେ କଥା ହେଉଥିବା ଦେଖି, ସେମାନେ ଭାବିଲେ ଯେ ତାଙ୍କ ନାମ ମୁଁ ତୁମକୁ କହିଦେଇଛି, ସେଥିପାଇଁ ମାରିଦେବାକୁ ଆସିଥିଲେ ।"

ଝିଅଟିକୁ ଟେକିନେବାକୁ ସେ ଚେଷ୍ଟାକଲା, କିନ୍ତୁ ପାରିଲା ନାହିଁ । ତା' ପେଟରେ ଗୁଳିବାଜି ରକ୍ତ ବହୁଥିଲା ।

ହସ୍‌ପିଟାଲରେ ତାକୁ ପ୍ରଥମେ ଯିଏ ଦେଖିବାକୁ ଆସିଥିଲା ସେ ଥିଲା ଲୁଭାନ୍ ।

"ତୁମେ ଜାଣିଛ ମୁଁ କାହିଁକି ଏଠାକୁ ଆସିଛି ?" ପୁଲିସଟି ପଚାରିଲା ।

"ଗୋଟେ ସାମ୍ବାଦିକକୁ ଏଭଳି ପ୍ରଶ୍ନ ପଚାରିବା ନିରର୍ଥକ", କହି ଲୁଭାନ୍ ଟେବୁଲ ଉପରେ କ୍ଷୀରଟିଣଟିଏ ଆଉ ଫଳ ବ୍ୟାଗ୍‌ଟିଏ ଥୋଇଦେଲା । "ମୁଁ ଶୁଣିଲି ଯେ ଗତ ରାତିରେ ତୁମ ଅଞ୍ଚଳରେ ଦଳେ ଚୋର ଧରାପଡ଼ିଛନ୍ତି ଆଉ ପିସ୍ତଲଗୁଳିରେ ପୁଲିସଟି ଆହତ ହୋଇଛି । ମୁଁ ଅନୁମାନ କରିନେଲି ତୁମେ ହୋଇଥିବ । ଏଣୁ ତୁମେ ଜାଣିବା ଦରକାର ନାହିଁ କେମିତି ତୁମ ଠିକଣା ମୁଁ ପାଇଲି । ମୁଁ ଆସିଛି ତୁମ ବିଷୟରେ ଲେଖିବା ପାଇଁ । ଆଉ ହଁ, ତୁମକୁ ମୁଁ ଜଣାଇଦେବାକୁ ଚାହେଁ ଯେ ଆକସ୍ମିକ ଭାବରେ ମୋର ପରିଚୟ ହୋଇଯାଇଛି ତୁମ ବାନ୍ଧବୀଟି ସହିତ, ସେଇ ଯିଏ ଲାଲ ହୋଣ୍ଡା ଚଢ଼ି ଯିବାଆସିବା କରେ ।"

ପୁଲିସଟି ସଙ୍କୁଚିତ ହୋଇଗଲା, "ସେ ମୋର କାହିଁକି ହେବ ?"

"ତୁମେ ମୋ ଠାରୁ କିଛି ଲୁଚାଇପାରିବ ନାହିଁ । ମୁଁ ବି ଜାଣେ ଯେ ତୁମେ ତାକୁ କିଛି ଅର୍ଥ ଧାର ଦେଇଥିଲ ।"

ଏଥର ପୁଲିସର ମୁହଁ ପୂରା ଲାଲ ହୋଇଗଲା, ଲୁଭାନ୍ କହିଚାଲିଥାଏ : "ତା ନା ଥୁ ହାଙ୍ଗ । ସେ ଔଷଧ କମ୍ପାନୀରେ କାମକରେ । ମୁଁ ସେଇ କାରଖାନାର କଳାତ୍ମକ ଦିଗ ଉପରେ ଗୋଟେ ଲେଖା ଲେଖୁଥିବାବେଳେ ତା ସହିତ ପରିଚୟ ହୋଇଥିଲା । ସେ ତୁମକୁ ପସନ୍ଦ କରେ, ଏକଥା ଜାଣିଛ ନା ଜାଣିନ ?"

"ଦେଖ, ଏତେ ଥଟ୍ଟା କରନି, ପ୍ଲିଜ୍ ।"

"କିଛି ନଜାଣିଲା ପରି ଛଳନା କରନି । ଆଜିକୁ ବର୍ଷକରୁ ଅଧିକ ହେଲାଣି ଦୁହେଁ ଦୁହିଁଙ୍କୁ ଦିନରେ ଦୁଇଥର କରି ଦେଖିଆସୁଛ । ସେ ଭଲ ଝିଅଟିଏ ।"

ତାପରେ ଯିଏ ଦେଖିବାକୁ ଆସିଲେ ସେମାନେ ଥିଲେ ଅଭିଯୁକ୍ତଙ୍କ ବାପା ଓ ମାଆ ।

ଦୁଇଟି ବାଳକ, ନିଜର ସବୁଠାରୁ ଭଲ ପୋଷାକରେ ସଜ୍ଜିତ ହୋଇ ଧାଡ଼ିର ଚତୁର୍ଥ ସ୍ଥାନରେ ଥିଲେ । ସେମାନେ ଆସିଥିଲେ କହିବାକୁ ସେ ସାଂଧ୍ୟ ସ୍କୁଲରେ ସେମାନେ ନାମ ଲେଖାଇଥିଲେ ।

ତାପରେ ଆସିଲା ବତୀଖୁଣ୍ଟ ତଳେ ସିଗାରେଟ ବିକୁଥିବା ମହିଳାଟି ଆଉ ତା'ପଛକୁ ଦୁଇଜଣ ହୋଣ୍ଡା ବାଇକ୍ ଡ୍ରାଇଭର ଯେଉଁମାନେ ରାସ୍ତାଉପରେ ତାଙ୍କ ମଟରସାଇକେଲ ରଖୁଥିଲେ ।

ଏଇ ଲୋକମାନଙ୍କ ମନରେ ତାର ଛକ ଉପରେ ଠିଆହୋଇ ରହିବା ଏତେ ପ୍ରଭାବ ପକାଇଥିଲା ଦେଖି ସେ ବିଗଳିତ ହୋଇଗଲା ।

ହସ୍‌ପିଟାଲ ବିଛଣାରେ ପଡ଼ିରହି ବି ସେ ସବୁବେଳେ ଛକ ଉପରର ଗହଳଜୀବନ କଥା ଭାବୁଥିଲା : ଗହଳିବେଳେ ଗୋଟେ ପରେ ଗୋଟେ ଗାଡି ପରସ୍ପରକୁ ଟପିଯିବା,

ବାଇକ୍ ଚଢ଼ାଳିଙ୍କ ଅତି ଦ୍ରୁତଗତି, ଦୁଇଟା ମଟରସାଇକେଲ୍ ପରସ୍ପର ସହ ଧକ୍କା ଲାଗିବା ଆଉ ସେ ଉଭୟଙ୍କୁ ବୁଝାସୁଝା କରିବା ; ଶ୍ରମିକମାନଙ୍କୁ ଧରି କାରଖାନା ବସ୍ ଯାଉଥିବାବେଳେ ଛକରେ ଅଟକିବା ଆଉ ତାକୁ ଲୋକମାନଙ୍କର ହାତ ହଲାଇବା, ନମସ୍କାର କରିବା । ସବୁଠାରୁ ବେଶୀ ତା' ମନକୁ ସେତେବେଳେ ଯିଏ ଆସୁଥିଲା ସେ ଥିଲା ଥୁ ହାଙ୍ଗ, ସେଇ ଝିଅଟି ଯିଏ ପ୍ରତିଦିନ ତାର ଆଓଦାଇ ବଦଳାଉଥିଲା । ମନର ଆଖିରେ ସେ ତାକୁ ନିଜ ଖଟ ପାଖରେ ଡାକ୍ତରଖାନାରେ ବସି ହସୁଥିବାର ଦେଖି ଖୁସି ହେଉଥିଲା ।

*ହୋ ଚି ମିନ୍ ସିଟି–୧୯୭୭*

୨

# ଉତ୍ ମିଏଁ

## ଭୁ ଥି ଥୋଙ୍ଗ୍

### ଏକ

ଭୋର ହୋଇଆସୁଥାଏ, ସାଓ ଲଙ୍ଗ୍ ତରତର ହୋଇ ଘାଟଆଡ଼କୁ ଚାଲିଲା । ଛୋଟିଆ ଡଙ୍ଗାଟିର ବାହାରପଟେ ମୋଟରଟିଏ ଲାଗି ଘୁଁ ଘୁଁ ହେଉଥାଏ ଆଉ ଡଙ୍ଗାରେ ଲୋକ ଭର୍ତ୍ତି ହୋଇଥାନ୍ତି । ଗୋଟେ ବୁଢ଼ା ଆଉ ମାଇପିଟିଏ ମେଞ୍ଚାଏ ବାଉଁଶବାସ୍କେଟ ଆଉ କାଠହ୍ୟାଣ୍ଡଲ ଧରି ଠିଆହୋଇଥାନ୍ତି । ସେଇ ଦୁଇଜଣଙ୍କ ମଝିରେ ସେ ଚିପିହୋଇ ପଶିଗଲା । କାବିନ ଝରକା ପାଖ ହୁକରେ ଝୁଲାମୁଣିଟି ଝୁଲାଇଦେଇ, ନିଜପାଇଁ ଗୋଟେ ଜାଗା କରିନେଲା । ତାପରେ ଲାଗିଗଲା ନଦୀର ଛବିଳ ରୂପ ଦେଖିବାରେ ।

ବଡ଼ନଦୀର ଗୋଟେ ଅଗଭୀର ସ୍ଥାନରେ ଥିଲା ଏ ଘାଟଟି । ବେଳେବେଳେ ଆଖୁ ଆଉ କଦଳୀ ଲଦାହୋଇ ଗୋଟେ ଗୋଟେ ଲଞ୍ଚ୍ ସେବାଟେ ଯାଏ, ନଦୀର ସେଇ ଭାଗଟି ପ୍ରତିଧ୍ୱନିତ ହୋଇଉଠେ ଲଞ୍ଚ୍‌ର ଘର୍ର୍ ଘର୍ର୍ ନାଦରେ ।

ହଠାତ୍ ଡାହାଣ ଗୋଡ଼ରେ ତୀବ୍ର ଯନ୍ତ୍ରଣା ଅନୁଭବ କଲା ଲଙ୍ଗ୍ । କିଏ ଗୋଟେ ତା ପାଦ ଉପରେ ଚଢ଼ି ଚାଲିଗଲା । ମୁଣ୍ଡବୁଲାଇ, ଠିକ୍ ତା ସାମ୍ନାରେ ସେ ଦେଖିଲା ଚାଳିଶବର୍ଷରୁ ଊର୍ଦ୍ଧ୍ୱ ମାଇପିଟିକୁ, ମୁଣ୍ଡରେ ତାର ଉଲ୍‌ବୁଣା ସ୍କାର୍ଫଟିଏ, ଦେହରେ ଫ୍ରେଞ୍ଚ ସିଲ୍‌କର ଜାକେଟ । ସ୍ତ୍ରୀଟି ଡେକ୍ ଉପରେ ବସିବାକୁ ଜାଗା ଖୋଜୁଥିଲା । ଜାଗା ପାଇଲାକ୍ଷଣି, ତୁଙ୍ଗୁଡ଼ି ଶୁଖୁଆର ଗୋଟେ ବଡ଼ମୁଣି ଆଉ ଡଜନେ ହେବ ସପୁରି ସେ ତା ସିଟ୍‌ତଳେ ଠେଲିପେଲି ପୂରାଇବାକୁ ଆପ୍ରାଣ ଉଦ୍ୟମ ଆରମ୍ଭ କରିଦେଲା । ତା' ପାଖରେ ବସିଥିଲା ଷୋଳବର୍ଷର ଝିଅଟିଏ । ସେ ତା' ମାଆପରି ଦିଶୁଥିଲା । ସେଇ ବାଦାମୀ ରଙ୍ଗର ତ୍ୱଚା, ମୁହଁର ଉପରିଭାଗ ଚଉଡ଼ା ଆଉ ତଳଅଂଶ ସରୁ, ଆଉ ଉଚ୍ଚା ନାକ ଯୋଗୁଁ ସେ ଅଧା ଭାରତୀୟ ପରି ଦିଶୁଥିଲା । ସେ ଦୁଇଜଣ ଦେଖାଯାଉଥିଲେ ଗୋଟେ

ପୁରୁଣା ପତ୍ରଝଡ଼ା ଗଛର କଅଁଳି ଆସୁଥିବା ଡାଳଟିଏ ପରି । ସ୍ତ୍ରୀଟି ବସିଗଲା ମାତ୍ରେ ବୁଢ଼ା ଲୋକଟିକୁ ଡାକି ପାଖରେ ବସାଇଲା ।

"ଗଲା କେତେମାସ ଭିତରେ, ମୋ ଝିଅ ଆଉ ମୁଁ ଦେଶସାରା ଏମୁଣ୍ଡରୁ ସେମୁଣ୍ଡ ଯାଏଁ ଖୋଜିଚାଲିଛୁ ମୋ ସ୍ୱାମୀକୁ । ଆଜି ଆମେ ପୂରା ଦକ୍ଷିଣରେ ଥିବା 'ନାମକାନ୍' ସହରକୁ ଯିବାକୁ ସ୍ଥିର କରିଛୁ । ଠିକ୍ ଅଛି, ଯିବାକଥା ବୋଲି ଆମେ ଯାଉଛୁ, କିନ୍ତୁ ତାଙ୍କୁ ଭେଟିବାର ଆଶା ଆମର ନାହିଁ ।"

ସାଓ ଲଙ୍ଗ୍ ଏଥର ସ୍ତ୍ରୀଟିର କଥା ମନଦେଇ ଶୁଣିଲା । ତା ମନରେ ସହାନୁଭୂତି ଜାଗିଉଠିଲା ସ୍ତ୍ରୀଟି ପ୍ରତି । ଆଜି ହେଉ କି କାଲି, ସେ ବି ସେଠାକୁ ଯିବ, ମାତୃଭୂମିର ସର୍ବଶେଷ ଦକ୍ଷିଣପ୍ରାନ୍ତକୁ, ଗୋଟିଏ ସ୍ତ୍ରୀଲୋକକୁ ଖୋଜିବାର ଲକ୍ଷ୍ୟ ନେଇ, ସେଇ ସ୍ତ୍ରୀଲୋକ, ଯିଏ ଦିନେ ତାକୁ ବାହାହେବାକୁ ଅନୁବନ୍ଧିତ ହୋଇଥିଲା – ନିବର୍ନ୍ଧ ସରିଥିଲା । ପନ୍ଦରବର୍ଷ ... ସେ ସ୍ତ୍ରୀଲୋକଟି କ'ଣ ତଥାପି ବଞ୍ଚିଛି ଆଉ ତାକୁ ମନେରଖିଛି ?

ପନ୍ଦରବର୍ଷ ଢେର ସମୟ ଅନେକ ଜୀବନକୁ ଅନେକ ବାଟରେ ବଦଳାଇ ଦେବାକୁ । ତାକୁ ଲାଗିଲା ଯେମିତି ସେ ଗୋଟେ ଆଶାହୀନ ନିରର୍ଥକ ଯାତ୍ରାରେ ବ୍ୟସ୍ତ ରହିଛି ।

***

ବେଶ୍ ପ୍ରସ୍ତୁତିପରେ, ସାନ ଡିଙ୍ଗିଟି ଘାଟ ଛାଡ଼ିଲାବେଳକୁ ସାଢ଼େ ସାତ ବାଜିସାରିଲାଣି । ସାଓ ଲଙ୍ଗ୍ ବାହାରିଆସି ସାମ୍ନା ଡେକ୍‌ଉପରେ ବସିପଡ଼ିଲା ଯେପରି ନଦୀର ଉଭୟ ପାର୍ଶ୍ୱ ଦେଖିପାରିବ । ଏହାଥିଲା ବେଶ ଚଉଡ଼ା, ଜଳରାଶି ଥିଲା ଅସ୍ୱଚ୍ଛ ଯେପରି ଶାମୁକା ସିଝାଇ ଦେଲାପରେ ଡେକଚିର ପାଣି ହୋଇଥାଏ । ନଦୀକୂଳରେ ଏଠିସେଠି ପୁଞ୍ଜାପୁଞ୍ଜା ଘର ଠିଆ ହୋଇଥାଏ, ଯେମିତି ଛୋଟକାଟର ଜିଲ୍ଲା–ମହକୁମା ଘରମାନ ଜାକିଜୁକି ହୋଇ ଥାଆନ୍ତି । ପ୍ରାୟ ସବୁଘର ଏଠି ଗୋଳିଆ ଖୁଣ୍ଟ ଉପରେ ତିଆରି, କାନ୍ଥସବୁ କାଠ ନଚୁବା ତାଳପତ୍ରର, ଆଉ ଛାତଗୁଡ଼ିକ ଆଜବେଷ୍ଟସ କିମ୍ବା ଟାଳର । କେତେଗୁଡ଼େ ଏକମହଲା ଘର ଅନ୍ୟ ଘରଠାରୁ ଉଚ୍ଚ, ନିଚା ଘରଗୁଡ଼ିକ ସାଧାରଣ ଦରକାରୀ ଜିନିଷ ବିକ୍ରିପାଇଁ ଉଦ୍ଦିଷ୍ଟ, ଯେମିତି ନୀଳ–ନାଲି ପ୍ଲାଷ୍ଟିକ୍, ସୁନେଲି ନାଇଲନରେ ଚା' ପାକେଟଠାରୁ ଧୂପକାଠି, ମହମବତୀ ତଳେ ତମ୍ବା ଦାନି, ବର୍ଷାତି କୋଟ ଆଉ ଝାମ୍ପି, ଟଲେଇର ଗଦା ...

କେତେଗୁଡ଼େ ଘରେ କେବଳ ଦୋକାନ ହୋଇଥାଏ, ପ୍ରତି ଦୋକାନ ଦୁଇଭାଗରେ ବିଭକ୍ତ : ଗୋଟେ ଭାଗ ବିଅର ଆଉ ନରମ ପାନୀୟ ପାଇଁ, ଅପରଟି ନୁଡ଼ଲସ୍, ସୁପ୍, ମାଂସ, କଲିଜା ଇତ୍ୟାଦି ଖାଦ୍ୟଜିନିଷ ବିକ୍ରିପାଇଁ । ଆଉ ଷ୍ଟୋରଗୁଡ଼ିକ ନୂଆ ଟେବୁଲ ଚୌକିରେ ପୂର୍ଣ୍ଣ ।

ପାଣିଉପରେ ପ୍ରାୟ ଭାସୁଥିବା ଘୁଷୁରୀ ଗୁହାଳରୁ, ଧଳା ଘୁଷୁରୀମାନଙ୍କ ନାକ ବାହାରକୁ ଦେଖାଯାଉଥିଲା, ଡଙ୍ଗାର ଘର୍‌ର୍ ଘର୍‌ର୍ ଶୁଣି ସେଗୁଡ଼ା ଏପଟ ସେପଟ ଦୌଡ଼ିବାକୁ ଲାଗିଲେ । ଗୃହପୁଞ୍ଜମାନଙ୍କ ମଝିରେ ଥିବା ଫାଙ୍କା ଜାଗାରେ ନଦୀ ଅଧିକ ଚଉଡ଼ା ଆଉ ଅଧିକ ଦୂର ହୋଇଗଲା ପରି ଲାଗୁଥିଲା । ଆହୁରି ଦକ୍ଷିଣକୁ, ଘରଗୁଡ଼ିକ ଥିଲା ବେଶୀ ଛଡ଼ାଛଡ଼ି । କେବଳ ଏଇଠାରେ ଦର୍ଶକମାନେ ମାଙ୍ଗ୍ରୋଭ ଦେଖିପାରନ୍ତି, ଆଉ ଦେଖିପାରନ୍ତି କିପରି ବହୁତ କେନାଲ ଛକିକଟା ଢଙ୍ଗରେ ମୂଳନଦୀକୁ ବାରମ୍ବାର ବିରୋଧକରି ଅସଂଖ୍ୟ ଜଳପଥ ବନାଇଛନ୍ତି ।

ସତକହିବାକୁ ଗଲେ, ସାଓ ଲଙ୍ଗ ଗଲା ପନ୍ଦରବର୍ଷ ଛଅମାସ ଆଉ ପନ୍ଦରଦିନ ଭିତରେ ଏ ନଦୀକୁ ଥରେ ବି ଦେଖିନଥିଲା । ଶେଷଥର ସେ ଅନ୍ୟ ଅଞ୍ଚଳରେ ନୂଆକାମ କରିବାକୁ ଯେବେ ନାମକାନ୍ ଛାଡ଼ିଥିଲା, ଯାଇଥିଲା ସ୍ଥଳପଥରେ, କିନ୍ତୁ ସେତେବେଳର ରାଜଧାନୀ କା-ମାଉକୁ ଯାଇଥିଲା ଡଙ୍ଗାରେ । ଗୁପ୍ତ ସ୍ଥାନରେ ଦୀର୍ଘକାଳ ଲୁଚିରହିଥିବା ଯୋଗୁଁ ତାର ଶେଥା ପଡ଼ିଯାଇଥିବା ଚମକୁ ଧନ୍ୟବାଦ - ଆଉ ତାର ପତଳା ଶରୀର, ଯାହାଫଳରେ ସେ ଗୋଟେ ରୋଗୀ ଭାବରେ, ଡଙ୍ଗାର ଗୋଟେ କୋଣରେ କମ୍ବଳ ଘୋଡ଼ିହୋଇ ପଳାଇଆସିବାକୁ ସମର୍ଥ ହୋଇଥିଲା ।

ସେଦିନ ନଦୀର ଉଭୟ ପାର୍ଶ୍ୱର ପ୍ରକୃତି ଆଜିଠାରୁ ଅଲଗା ଥିଲା । ସେତେବେଳେ ଏଠାରେ କମ ଘର ଥିଲା, ନଦୀ ଅଧିକ ଫାଙ୍କା ଲାଗୁଥିଲା ଆଉ ବହୁତ କମ୍ ଡଙ୍ଗା ଯାତାୟତ କରୁଥିଲା । ହେଲେ ଏସବୁ ଥିଲା କେବଳ ସ୍ୱଷ୍ଟ ପ୍ରତିଛବି, ବାସ୍ତବ ଠାରୁ ଅଧିକ କାଳ୍ପନିକ, କାରଣ ସେଦିନ ଯାତ୍ରାର ସାରାସମୟ ତାକୁ ଚୁପଚାପ୍ ପଡ଼ିରହିବାକୁ ପଡ଼ିଥିଲା, ତା ମନ ଥିଲା ଭାରାକ୍ରାନ୍ତ । ନଦୀର ଗୋଟେ ବୁଲାଣିରେ ଶତ୍ରୁ ଶିବିରର ଦେଖାଯାଉଥିବା ବଳକା ଅଂଶ, ଡଙ୍ଗା ଆରପଟୁ କାହାର ଡାକରା, ଉଜାଣିରେ ଉଠିଯାଉଥିବା ଅନ୍ୟ ଏକ ଡଙ୍ଗାର ଇଞ୍ଜିନ ଶବ୍ଦ ... ତାକୁ ସେଦିନ ଲାଗିଥିଲା ଯେପରି ତା ଚାରିପଟେ ସବୁ ଚକ୍ରାକାରରେ ଘୂରୁଥିଲା, ତା ଉପରେ ଝାମ୍ପ ମାରିବାକୁ ଜାଲ ତିଆରି ହେଉଥିଲା । ଏପରିକି, ଯେତେବେଳେ ଡଙ୍ଗା ଦଶମ ଘାଟ ଟପିଗଲା ... ସେ କେବଳ କମ୍ବଳଟାକୁ ଫୋପାଡ଼ିଦେଇ, ବସି, ଥରେ ଚାରିପଟକୁ ଅନାଇ ତାପରେ ପୁଣି ଶୋଇପଡ଼ିବାକୁ ସମର୍ଥ ହୋଇଥିଲା ।

ସେ ବେଶୀବେଳ ବାହାରକୁ ଦେଖିପାରିନଥିଲା । କାରଣ ସେ ଜାଣିଥିଲା, ସେ ଯାଉଥିବା ଛୋଟ ଡଙ୍ଗାଟି ଉପରେ ସମସ୍ତଙ୍କ ଗୁପ୍ତ ନଜର ଥିଲା । ନଦୀର ଗୋଟେ ଛୋଟିଆ ଅଂଶକୁ ଟପି, ଡଙ୍ଗାଟି କେନାଲ ଭିତରକୁ ବୁଲିପଡ଼ିଲା, ଯାହା କଡ଼ରେ ଥିଲା ତାର ଘର । ସେ ଓହ୍ଲାଇପଡ଼ି ଘରକୁ ବି ଯାଇପାରିନଥିଲା, କାରଣ ସଖି କଣ୍ଢେଇ ସୈନ୍ୟମାନଙ୍କ ଏଜେଣ୍ଟ ଦଳ ତା ଘରଚାରିପଟେ ରାତିଦିନ ତୀକ୍ଷ୍ଣ ନଜର ରଖିଥିଲେ,

ତା' ମାଆକୁ ସବୁବେଳେ ପ୍ରକାର ପ୍ରକାର ପ୍ରଶ୍ନ କରୁଥିଲେ, ସେ କେଉଁଠି ଅଛି ଜାଣିବାକୁ ଚାହୁଁଥିଲେ । ସେ ଥିଲା ତା ମାଆଙ୍କର ଏକୋଇର ବଳା ବିଶିକେଶନ । ତାଙ୍କ ଆଖିରେ ସେ ଥିଲା କେବଳ ସାଓ, ତାଙ୍କ ଦ୍ୱିତୀୟ ଛୋଟଛୁଆ, 'କୁନିପୁଅ' । ମାଆଙ୍କୁ ଲାଗୁଥିଲା ପୁଅକୁ ନଦେଖି ସେ ଦିନେ ବି ରହିପାରିବେ ନାହିଁ । ହଁ, ମା' ଭାବିଥିଲେ ପୁଅ ହୁଏତ ଯାଇପାରେ ଆଉ ବିପ୍ଳବପାଇଁ କାମ କରିପାରେ, ହେଲେ ପୁଅପାଇଁ ବୋହୂଟିଏ ସେ ନିଶ୍ଚୟ ଖୋଜିଆଣିବେ ଆଉ ସେମାନଙ୍କର ପିଲାପିଲି ହେବେ, ଆଉ ସେମାନଙ୍କୁ ଏଇ ମାଙ୍ଗ୍ରୋଭ କାଠ ତିଆରି ଘରେ ସେ ପାଳିବେ, ନିଜ ପାଖରେ ରଖି ବଢ଼େଇବେ, ଆଉ ପୁଅ କେବେ ବି ଦୂରକୁ ଯିବନାହିଁ । ବିରୋଧାଭାସ ଦେଖ ଜୀବନର, ସେଇ ମାଆ, ଯାହାଙ୍କୁ ସେତେବେଳେ ଅଣଷଠି ବର୍ଷ ହୋଇଥିଲା, ସେଇ ନିଜ ହାତରେ ପୁଅପାଖକୁ ଚିଠିଟିଏ ଲେଖିଥିଲେ – ଦିଆସିଲି ଡବା ଆକାରର ଚିଠି, ଉପଦେଶ ଦେଇ, କେବେ ବି ନ ଫେରିବାକୁ, "ମୁଁ ମରିଯାଇଥିବା ଖବର ପାଇଲେ ବି ନୁହେଁ ।"

ମାଆ ନଲେଖିଥିଲେ ବି ସେ ଜାଣିଥିଲା ଯେ ଏହାର ଅନ୍ୟକୌଣସି ବିକଳ୍ପ ନଥିଲା । ଘର ତ ଛୋଟିଆ ଜିନିଷ, ଅନେକ ପରିବାର ନିଜ ସ୍ୱାମୀ, ପୁଅ, ଭାଇଙ୍କୁ ଚିହ୍ନିବାକୁ ମନାକରିଦେଉଥିଲେ । ଦିନେ ରାତିରେ, ରାଜନୈତିକ ବିପ୍ଳବୀ ଦଳର ମୂଳକର୍ମୀମାନେ ଘରକୁ ଆସି କବାଟ ବାଡ଼େଇଲେ – ଗୋଟେ ସତର୍କ ଠକ୍ ଠକ୍, ଅକସ୍ମାତ ବାଜିଗଲାପରି ଧୀର ଶବ୍ଦ । ତଥାପି ତା' ମାଆ କବାଟ ଫିଟାଇବାକୁ ସାହସ କରିନଥିଲେ, ଭିତରୁ କେବଳ ଫୁସ୍‌ଫୁସ୍ ସ୍ୱରରେ ବିନତୀ କରୁଥିଲେ : "ପଳା, ଚାଲିଯାଆ ପୁଅ, ଦୟାକର ମୋ ଉପରେ, ବାପାଙ୍କ ଉପରେ, ଦୟାକର ତୋ ସ୍ତ୍ରୀ ଆଉ ପିଲାଙ୍କ ଉପରେ, ତୋର ଦୁଇଟି ସନ୍ତାନ, ତତେ ପ୍ରାର୍ଥନା କରୁଛି, ଏଇ ମୁହୂର୍ତ୍ତରେ ପଳା ଏଠୁ !"

ଲୋକଟି ଟିକିଏ ଅଟକିଗଲା, ଭାବିଲା ଚାଲିଯିବ ନା କବାଟ ଠେଲି ଘର ଭିତରକୁ ଡିଆଁ ମାରିବ – "ଏଇଟା ମୋ ଘର, ମୋ ଘର ନୁହେଁ ? ମୋ ନିଜଘର ମତେ ଆଶ୍ରୟ ନ ଦେଲେ ଆଉ କିଏ ଦେବ ?"

ସେ ଚକିତ ହୋଇ ଭାବୁଥିଲା କ'ଣ କରିବ, ଫେରିଯିବ ନା ଘରେ ପଶିଯିବ, ଏତିକିବେଳେ ସେ ଅଞ୍ଚଳରେ ଆଲାର୍ମ ଘଣ୍ଟି ବାଜିଉଠିଲା, ତାପରେ ଘର ଭିତରୁ ଚିତ୍କାର, ପରେପରେ ପାଖପଡ଼ିଶାରୁ ଚିତ୍କାର ଆଉ ଅଧିକ ସତର୍କ ଘଣ୍ଟି । ଲୋକଟି ଭୟ ଓ ନିରାଶାରେ ଫାଟିପଡ଼ିଲା, ଆଉ କେନାଲ ଭିତରକୁ ଡେଇଁ ପଡ଼ିବା ବ୍ୟତୀତ ତା' ପାଖରେ ଆଉ କିଛିବାଟ ନଥିଲା, ବାସ, ସେଇଠି ଛନ୍ଦାଛନ୍ଦି ପାଣିଲଟା ତଳେ ନିଜକୁ ସେ ଲୁଚାଇ ରଖିଲା ... ।

ସାଓ ଲଙ୍ଗ ବିଶ୍ୱାସ କରୁଥିଲା, ଯଦି ସେ ଫେରିବ, ତା' ମା' କଦାପି ତାକୁ ତଡ଼ିଦେବ ନାହିଁ । କିମ୍ୱା ସତର୍କ ଘଣ୍ଟିବଜାଇ ସାଇପଡ଼ିଶାଙ୍କୁ ଡାକିବ ନାହିଁ । ହେଲେ, ସେ

ନିଶ୍ଚିତ ଥିଲା, ମା' ଭୟରେ ଥରିଯିବ, ତା' ମୁହଁ ଖଣ୍ଡେ ସାଧାକାଗଜ ପରି ଧଳା ହୋଇଯିବ, ଆଉ ସେ ଅଣନିଃଶ୍ୱାସୀ ହୋଇ କହିବ, "ପୁଅରେ, କ'ଣ ତତେ ମୁଁ କହିଥିଲି ? ତୁ ମୋ କଥା କାହିଁକି ଶୁଣୁନାହୁଁ ? ତୋର ଜାଣିବା ଦରକାର, ଗୋଟେ ଗୁପ୍ତଚର ସବୁବେଳେ ସେଠି ବସିଛି, ବଗିଚା ଭିତରେ କିମ୍ବା ଘର ଥାକ ଭିତରେ, ସାନ ଝରକା ପଛପଟେ, ସାମ୍ନା ଘର କୋଣରେ ... ସେ ଆମ ଉପରେ ନଜର ରଖିଛି । ସେ କେବଳ ଅପେକ୍ଷା କରିଛି ତୋ ଫେରିବାକୁ, ଆଉ ତୋ ଉପରେ ଝାମ୍ପ ମାରିବାକୁ, ଆଉ ମୋ ଉପରେ ବି । ସେପରି କରି ସେ ଏ ଘରଟାକୁ ହାତେଇନେବ । ସେ ବିପ୍ଳବକୁ ଘୃଣା କରେ, ହେଲେ ଏ ଘରଟାକୁ ବି ସେ ଭଲପାଏ, ଆଉ ଏ ବଗିଚା, ଆମର ଏ ସୁନ୍ଦର ଫଳ ବଗିଚା ... ।"

ଆଠବର୍ଷ ପର୍ଯ୍ୟନ୍ତ ସାଓଲଙ୍ଗ ତା' ମାଆକୁ ଦେଖିପାରିନଥିଲା । ମାଆ ଗୋଟେ ଦଳ ସହିତ ତିନିମାସ କାଳ ଅତି କଷ୍ଟକର ପଦଯାତ୍ରା କରି ପ୍ରତିରୋଧର ମୁଖ୍ୟସ୍ଥଳକୁ ଯାଇଥିଲେ । ମାଆଙ୍କର କିଛିବର୍ଷ ତଳର କଳାଘନ କେଶରାଶି ଆଜି ପାଚିଯାଇଥିବା ଦେଖି ସେ ବିକଳରେ କାନ୍ଦି ପକାଇଥିଲା ।

ନାମକାନ୍ ଛାଡ଼ିଲା ବେଳକୁ ସେଠାରେ ଆଉ ଜଣେ ଥିଲା ଯାହାକୁ ଦେଖିବାକୁ ସେ ଖୁବ୍ ମନ କରିଥିଲା, କିନ୍ତୁ ପାରିନଥିଲା । ସେ ଥିଲା ଉତ୍ ମିଏଁ । ସେ ଚାହୁଁଥିଲା ତାକୁ ଖୋଜିବ ଆଉ ପୁଣିଥରେ ତାକୁ ପଚାରିବ ସେ ତାକୁ ବିବାହ କରିବ କି ? ହେଲେ, ଏ ବିରାଟ ମାଙ୍ଗ୍ରୋଭ ଜଙ୍ଗଲରେ, ଯେଉଁଠି ଆକାଶ ଓ ପାଣି ମିଶି ଏକାକାର ହୋଇଛନ୍ତି, ଏଠି ସେ ତାକୁ କେଉଁଠି ପାଇବ ? ଏଣେ, ଏଠୁ ପଳାଇଯିବାକୁ ଆଉ ଡେରି କରିହେବ ନାହିଁ । ଯଦିବା ଡେରି କରିବ, ତାକୁ ସାକ୍ଷାତ କରିବା ବି ଅର୍ଥହୀନ ହେବ, କାରଣ ଏଇତ ପନ୍ଦର ଦିନ ଆଗରୁ ମିଏଁ ଆସିଥିଲା ତାକୁ ଭେଟିବାକୁ ଆଉ ବିନତୀ କରିଥିଲା ତାଙ୍କ ନିର୍ବନ୍ଧ ଭାଙ୍ଗିଦେବାକୁ, ଆଉ ଏପରି ବ୍ୟବହାର କରିବାକୁ ଯେପରି ଉଭୟଙ୍କ ଭିତରେ କେବେ କିଛି ଘଟିନଥିଲା ।

ତାର ମନେପଡ଼ିଲା, ମିଏଁ କାନ୍ଦିଥିଲା, ହେଲେ ଯେଉଁ କାରଣଗୁଡ଼ିକ ସେ ଦର୍ଶାଇଥିଲା ତାହା ତାର ବିଶ୍ୱାସଯୋଗ୍ୟ ନଥିଲା । "ଶତ୍ରୁମାନେ ସବୁବେଳେ ଏ ଅଞ୍ଚଳରେ ଅତର୍କିତ ଆକ୍ରମଣ କରୁଛନ୍ତି, ଆମେ ବିବାହ କରିବା ଉଚିତ ନୁହେଁ, ଏପରିକି ଆମେ ଆମ ପ୍ରେମ ବ୍ୟାପାରରେ ଏକଦମ ପୂର୍ଣ୍ଣଛେଦ ପକାଇଦେବା ଦରକାର, ଆମେ ସୁଖୀ ହୋଇପାରିବା ନାହିଁ, ଆଉ ଆମ ଦୁହିଁଙ୍କ ପାଇଁ ଏହା ଖୁବ୍ ବିପଜ୍ଜନକ ହେବ ।"

"ଆମେ କାହିଁକି ସୁଖୀ ହେବା ନାହିଁ ଆଉ କାହିଁକି ଆମପାଇଁ ଏହା ବିପଜ୍ଜନକ ହେବ ?"

"କାରଣ ତୁମେ ମୋତେ ସବୁବେଳେ ଖୋଜିବୁଲିବ ଆଉ ତୁମେ ସେମାନଙ୍କ ଦ୍ୱାରା

ଧରାପଡ଼ିଯାଇପାର । ନା, ବରଂ ଗୋଟେ ଲକ୍ଷ୍ୟ ନେଇ କାମ କରୁଥିବାବେଳେ ତୁମେ ଧରାପଡ଼ିଲେ ମୁଁ କମ ଅସୁଖି ହେବି ।"

ଉତ୍ ଆହୁରି ଅନେକ କୈଫିୟତ ଦେଇଥିଲା : କ'ଣ ହେବ ଯଦି ସେ ନିଜେ ଧରାପଡ଼ି ଜେଲ ଯାଏ, ଯଦି ଗୋଡ଼ହାତ ପଙ୍ଗୁ ହୋଇଯାଏ ... ସାଓ କ'ଣ କରିବ ... 'ମୁଁ ଚାହେଁନି ତୁମେ ମୋ ପାଇଁ କଷ୍ଟ ପାଅ', ସେ ବିକଳ ହୋଇ କହିଥିଲା । ଉତ୍‌ର ଯେପରି ବିଶ୍ୱାସ ହୋଇଯାଇଥିଲା ଯେ ସାଓ ଯଦି ତାକୁ ବାହା ନ ହୋଇ ଅନ୍ୟ କେଉଁ ସ୍ତ୍ରୀ ଲୋକକୁ ବିବାହ କରିବ, ଏଇ ଅନ୍ୟ ସ୍ତ୍ରୀଟି ହୁଏତ ସବୁ ଦୁର୍ଭାଗ୍ୟ ଦୂରକରିପାରିବ ।

ହେଲେ ଉତ୍ ଯେତେ ଅଧିକ ତର୍କ କଲା ସେତେ ଅଧିକ ଅବିଶ୍ୱସନୀୟ ଲାଗିଲା ତା କଥା, ଆଉ ସାଓ ଅଧିକ ଅପମାନିତ ବୋଧକଲା, ତାକୁ ଏତେ ଖରାପ ଲାଗିଲା ଯେ ସେ ଉତ୍‌କୁ ଛାଡ଼ି ପଳାଇ ଆସିଲା । ଆଉ ଯେହେତୁ ସେ ଆଗ ଜାଗାଛାଡ଼ି ପଳାଇଆସିଥିଲା, ଦୁହିଁଙ୍କ ପ୍ରେମ ବ୍ୟାପାର ସେହିପରି ନିଷ୍ପତ୍ତି ନହୋଇ ରହିଯାଇଥିଲା ।

ପନ୍ଦର ବର୍ଷ ସାଓ ଲଙ୍ଗ୍ ଭାବିପାରେନି ଉତ୍ ମିଏଁ କେମିତି ଏବେ ଦେଖାଯାଉଥିବ । ତୁମେ ଯେତେବେଳେ ଜଣକ କଥା ଭାବ ଯିଏ ବହୁଦୂରକୁ ଚାଲିଯାଇଛି, ଏପରି ଜଣେ ଯାହାକୁ ତୁମେ ବହୁବର୍ଷ ହେଲା ଦେଖିନାହଁ, ଏପରି କିଛି ଜିନିଷ ଯାହା କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଛି, ସେତେବେଳେ ଆଶା ଆଉ ନିରାଶା ମିଶିଯାଇ ଅଦ୍ଭୁତ ଖେଳ ଦେଖାନ୍ତି ମନତଳେ । ସାଓଲଙ୍ଗକୁ ବି ସେହିପରି ଲାଗୁଥିଲା । ତା ମନତଳେ, କୋଡ଼ିଏ ବର୍ଷର ଗୋଟିଏ ପତଳା କିଶୋରୀର ଛବି ତଥାପି ଥିଲା, ଯାହାର ଦେହର ରଙ୍ଗ ଦୀର୍ଘବର୍ଷ ଲୁଚିଛପି ରହିବା କାରଣରୁ ନିଷ୍ପ୍ରଭ ହୋଇଯାଇଥିଲା, ଆଉ ମୁହଁଟି ବେଶ୍ ପତଳା ହେଲେ ବି ଚାଲାକ ଚତୁର ଲାଗୁଥିଲା । ସତ କହିବାକୁ ଗଲେ, ପ୍ରତିଟି ବର୍ଷ ବିତିଯିବା ସହିତ, ତା' ମୁହଁ ମନେପକାଇବା ଅଧିକ କଷ୍ଟକର ହୋଇ ଆସୁଥିଲା, ଆଉ ଯେଉଁ ଛବିଟିକୁ ସେ ମନେପକାଇବାକୁ ଚାହୁଁଥିଲା, ତାହା ବି ଧୀରେ ମଳିନ ପଡ଼ି ସ୍ମୃତିରୁ ଖସିଯାଉଥିଲା । ଏଥିପାଇଁ ତା' ମନଦୁଃଖ ହେଉଥିଲା, ଦୁର୍ବଳ ସ୍ମରଣଶକ୍ତି ଥିବା ଗୋଟେ ପୁରୁଷର ଅନୁତପ୍ତ ବିଷାଦ ତାକୁ ଘାରୁଥିଲା, ଯିଏ ନିଜକୁ ଝିଅଟି ପ୍ରତି ଅବିଶ୍ୱସ୍ତ ହେଉଛି ବୋଲି ଭାବୁଥିଲା ।

## ଦୁଇ

ମୁହଁସଂଜବେଳକୁ ଡଙ୍ଗାଟି ଲକ୍ଷ୍ୟସ୍ଥଳରେ ପହଞ୍ଚିଲା । ଗାଁଲୋକଙ୍କ କମିଟି ଅଫିସ ଥିଲା ସେଠାରୁ ମାତ୍ର କେତେ ଶହ ଗଜ ଦୂର । ସାଓ ଲଙ୍ଗ କାହାକୁ ବାଟ ପଚାରିବା ଦରକାର ନଥିଲା, କାରଣ ଘାଟଠାରୁ ଗଳିମୁଣ୍ଡର ଲାଲବୋର୍ଡ଼ଟିକୁ ସେ ଆଗରୁ ଦେଖିସାରିଥିଲା,

ଯେଉଁଥିରେ ବଡ଼ବଡ଼ ହଳଦିଆ ଅକ୍ଷରରେ ଲେଖାଥିଲା : "ଜନତା ବିପ୍ଳବ କମିଟି, ଭି.ଗ୍ରାମ ।" ଏହାକୁ ଗଳିବି କହିହେବ ନାହିଁ, କାରଣ ଘରଗୁଡ଼ିକ ସଡ଼କର ଗୋଟିଏ ପାଖରେ କେବଳ ଥିଲା, ଅପରପାର୍ଶ୍ୱଟି ଥିଲା ଖୋଲାପଡ଼ିଆ, ଯେଉଁଠାରେ ସକାଳେ ହାଟ ବସୁଥିଲା ।

ସାଓ ଲଙ୍ଗ ଲମ୍ବା ଧାଡ଼ିଘର ଟପି ଚାଲିଲା ଯେଉଁଗୁଡ଼ିକ ଭିତରେ କେତେ ଜେନେରାଲ ଷ୍ଟୋର ବି ଥିଲା, ଗୋଟେ ବିଅର୍ ଦୋକାନ, ସେଲୁନ, ମାଂସ-ସୁପ୍ ଦୋକାନ, ଚା-କଫି ଆଉ ଦର୍ଜୀ ଦୋକାନ । ବାରଣ୍ଡାରେ କେତେଟା ଜାଗାରେ ଡ୍ରେସ, କପଡ଼ା, କଦଳୀ, ସପୁରି ଇତ୍ୟାଦି ବିକ୍ରି ହେଉଥିଲା ।

ଗ୍ରାମ କମିଟିରେ ତଥାପି ଅଫିସ ସମୟ ଚାଲୁଥିଲା । ସାଓ ଲଙ୍ଗ ତା ଦପ୍ତରୀୟ କାଗଜପତ୍ର ଦେଖାଇଲା, ଆଉ ପଚାରି ବୁଝିଲା ତାର କେତେଜଣ ପୁରୁଣା ପରିଚିତଙ୍କ ବିଷୟରେ, ଯେଉଁମାନେ ତାକୁ ୧୯୫୫ରୁ ୧୯୬୦ ଭିତରେ ସାହାଯ୍ୟ କରିଥିଲେ ବା ତା ସାଙ୍ଗେ କାମ କରିଥିଲେ । ଗାଁ ଚେୟାରମ୍ୟାନ ଆଉ ଗ୍ରାମରକ୍ଷୀ ବାହିନୀର ମୁଖିଆ ଉଭୟେ ନାମ ତାଲିକା ଉପରେ ଆଖି ବୁଲାଇଲେ, ଆଉ ମୁଣ୍ଡ ହଲାଇଦେଲେ । ସାଓ ଲଙ୍ଗ ପଚାରିଥିବା ଲୋକଙ୍କ ଭିତରୁ କେତେକ ଆମେରିକୀ ସଖୀ-କଣ୍ଢେଇ ବିରୁଦ୍ଧରେ ଲଢ଼ି ମୃତ୍ୟୁବରଣ କରିଥିଲେ, ଅନ୍ୟମାନେ ଶତ୍ରୁଦ୍ୱାରା ବନ୍ଦୀ ହୋଇଥିଲେ, ଆଉ କେତେକ ଶତ୍ରୁ ଶିବିରକୁ ଯାଇ ସେଠାରୁ ରାଜ୍ୟ ରାଜଧାନୀ ବା ସାଇଗନ୍ ପଳାଇଥିଲେ କିଛି ରୋଜଗାର କରି ଚଳିଯିବାକୁ, ଆଉ ବହୁତ କମ୍ ରହିଯାଇଥିଲେ । ଯେଉଁ କିଛି ଲୋକ ରହିଯାଇଥିଲେ, ସେମାନଙ୍କୁ ଖୋଜି ବାହାରକରିବା କଷ୍ଟକର ଥିଲା, କାରଣ ସାହି ନିର୍ମାଣ ପଦ୍ଧତିରେ ବଦଳ ଆସିଥିଲା, ବହୁତ ଲୋକ କାହିଁ କେତେ ଦୂରକୁ ଚାଲିଯାଇଥିଲେ, ଆଉ ତାଙ୍କ ଜାଗାରେ ଅନ୍ୟଲୋକ ଆସି ଏଠାରେ ରହିଥିଲେ ।

ଗାଁ ଚେୟାରମ୍ୟାନ କହିଲେ : "ତୁମେ ଖୋଜୁଥିବା ଲୋକଙ୍କ ଭିତରୁ ବୋଧହୁଏ ମି.ତୁ କୋଲ ଅଛି, ସେ ଏଠାରୁ ବହୁତ ଦୂରରେ ରହୁଛି, କାମାଉର ସବା ଉପର ଅଞ୍ଚଳରେ ।"

ଗ୍ରାମରକ୍ଷୀ ବାହିନୀର ମୁଖ୍ୟ ହାଇକେନ୍ କହିଲେ, "ଆମେ ବୋଧେ ଅଙ୍କଲ ଟମ୍ ହୌଁକୁ ଭୁଲିଯାଇଛେ । ଦୀଏଁ ଶାସନ କାଳରେ ସେ ବନ୍ଦୀ ହୋଇଥିଲା, ଜେଲରେ ତିନିବର୍ଷ କଟାଇଲା ପରେ, ଦୀଏଁଙ୍କ ପତନ ପରେ ବି ମୁକୁଳି ନଥିଲା । ମୁଁ ଯାହା ଶୁଣିଛି, କାରଣ ମୋ ହାତରେ ସେତେବେଳେ କିଛି କାମ ନଥିଲା । ଏବେ ଅଙ୍କଲ ଟମ୍ ରହୁଛନ୍ତି ମି. ତୁ କୋଲଙ୍କ ପଡ଼ୋଶୀ ହୋଇ । ସାଥୀ, ତୁମେ ଏତେଦୂର ଯାଇ ସେ ଦୁହିଁଙ୍କୁ ଦେଖାକରିପାରିବ ? ଯଦି ପାରିବ ତ ମୁଁ ତୁମକୁ ସେଠାକୁ ନେଇଯିବି । ମୋର ବି ସେଠାରେ କିଛି କାମ ଅଛି ।"

ସାଓ ଲଙ୍ଗ ଭାବୁଥିଲା, ଗ୍ରାମରକ୍ଷୀ ମୁଖିଆଙ୍କୁ ଏତେବେଳେ ହଇରାଣ କରିବା ଠିକ୍ ହେବ କି ନାହିଁ । ଗାଁ ଚେୟାରମ୍ୟାନ୍ ଦୁଇ ହାତ ମକଚି ମକଚି ହସୁଥିଲେ । ସାଓ ଲଙ୍ଗକୁ ବାଧ ବି କଲେ ଗାଁ ଅଫିସରମାନଙ୍କ ସହିତ ଭୋଜନ କରିନେବାକୁ, କାରଣ ସେଦିନ ହୋ-ଚି-ମିନ୍ ସିଟିରୁ ଆସିଥିବା ଦଳେ ସଂଗୀତଜ୍ଞଙ୍କ ପାଇଁ ଭୋଜିର ଆୟୋଜନ ହୋଇଥିଲା, ଭୋଜନ ପରେ ସେମାନେ ମୁଇ ଗାଁକୁ ଚାଲିଯିବେ ।

ସାଓ ଲଙ୍ଗ ଉପରେ ପହଞ୍ଚିଲା ବେଳକୁ ରାତି ସାତଟା ବାଜି ସାରିଥିଲା । ଡଙ୍ଗା କୂଳରେ ଲାଗିବା ମାତ୍ରେ ସେ ଆଉ ହାଇକେନ୍ ଗୋଟେ କାଠଶିଡ଼ି ଚଢ଼ି ଉପରକୁ ଉଠିଗଲେ- ଯେଉଁ ସିଡ଼ି ଉପରେ କାଠ ଘରଟି ସ୍ଥିର ହୋଇ ରହିଥିଲା । ଦୁହେଁ ଶିଡ଼ି ପରେପରେ ଘର ବାରଣ୍ଡାରେ ପାଦ ଦେଲେ । ଗ୍ରାମରେ ଆଲୁଅ ଜଳି ସାରିଥିଲା । ରାତ୍ରିର ଅନ୍ଧକାର ଭିତରେ, ମାଙ୍ଗ୍ରୋଭ ଜଙ୍ଗଲ ଅଦୃଶ୍ୟ ହୋଇଯାଇଥିଲା । ଅନ୍ଧାରରେ ସେ କେବଳ ତାରକା ଖଚିତ ଆକାଶ ଦେଖିପାରିଲା ଯାହା ଦେଖାଯାଉଥିଲା ଗୋଟେ ନଦୀ ଓଲଟି ପଡ଼ିଲା ପରି କିମ୍ବା ପ୍ରକୃତ ନଦୀର ପ୍ରତିବିମ୍ବ ପରି ଯାହାର ଉଭୟ ତଟ ତିଆରି ହୋଇଥିଲା ଦୁଇଧାଡ଼ି ସମାନ ଉଚ୍ଚତାର ମାଙ୍ଗ୍ରୋଭ ଗଛ ଦ୍ୱାରା ।

ଅନ୍ଧକାର ସତ୍ତ୍ୱେ, ସାଓ ଲଙ୍ଗ ଦେଖିପାରିଲା ଘର ମଝିରେ ଠିଆହୋଇଥିବା ଛାୟାକୃତିମାନଙ୍କ ସଂଖ୍ୟା ବଢ଼ିଚାଲିଛି । ଡେଙ୍ଗା ବୁଢ଼ାଲୋକଟିଏ ଲ୍ୟାମ୍ପ ଟେକି ବଡ଼ ପାଟିରେ ପଚାରିଲା :

"କିଏ ଆସୁଛି କି ?"

ହାଇକେନ୍ ଦିପାଦ ଆଗେଇ ଯାଇ କହିଲା, "ନମସ୍କାର ଅଙ୍କଲ, ଟିକେ ବାହାରକୁ ଆସ, ଦେଖ ତୁମକୁ କିଏ ଭେଟିବାକୁ ଆସିଛନ୍ତି, ତୁମ ପୁରୁଣା ସାଙ୍ଗ ।"

"କିଏ ସେ ପୁରୁଣା ଦୋସ୍ତ ?" ବୁଢ଼ୀଟିଏ ପଚାରିଲା ।

"ଆମ ଭାଇ ସାଓ ଲଙ୍ଗ୍ ଆସିଛି ଖୁଡ଼ୀ । ତୁମ ଭିତରୁ ଯିଏ ତାକୁ ଜାଣିଛ, ଆସ ତାକୁ ଦେଖ, କଥାବାର୍ତ୍ତା କର ।"

"କ'ଣ, ଅଙ୍କଲ ସାଓ ଲଙ୍ଗ୍ ଆସିଛନ୍ତି ?" ଯୁବତୀଟିଏ ପଚାରିଲା । ସେ ଖୁବ୍ ଧୀରେ ଏ ପ୍ରଶ୍ନ ପଚାରିଥିଲେ ବି, ସମସ୍ତେ ଏକଥା ଶୁଣିପାରିଥିଲେ ।

ଆଉ ଗୋଟେ ମାଇପି ହସି ଉଠିଲା, "ଆଲୋ, ତୁ ତାକୁ କେମିତି ଜାଣିଲୁ ? ସେ ଯିଏ ବି ହେଉ ସେ ଏଠିକି ପ୍ରଥମ ଆସିଲା ବେଳକୁ ତୁ ତ ଚାଲି ଶିଖିନଥିଲୁ ।"

ସାଓ ଲଙ୍ଗ୍ ଓ ହାଇକେନ୍ ଘର ଭିତରକୁ ପଶିଲେ । ଉଭୟେ ବାରଣ୍ଡାରେ ଚପଲ କାଢ଼ି ଦେଇଥିଲେ । କାଠ ଚଟାଣ ପୂରା ଚକ୍‌ଚକ୍ କରୁଥିଲା । ସାଓ ଲଙ୍ଗ ତଳେ ବସିପଡ଼ିଲା ଯେମିତି ତା ନିଜ ଘର, ଯେଉଁଠି ସେ ଜନ୍ମ ହୋଇ ବଡ଼ ହୋଇଛି ।

ମି. ତୁକୋଇ ଲ୍ୟାମ୍ପଟିକୁ ଆଉଟିକେ ଟେକିଦେଲେ ଯେମିତି ଆଲୁଅ ସାଓଲଙ୍ଗ

ମୁହଁରେ ପଡ଼ିବ । ପାଖ ପଡ଼ିଶାରୁ ଅନ୍ୟ ମାଇପେ ଆସିଗଲେ ଆଉ ତା' କାନ୍ଧ, ବାହୁ ଚିପିଚାପି ଅନୁଭବ କରି ଲାଗିଲେ । ଗୋଟେ ବୁଢ଼ୀ କହିଲା, "ହଁ, ତୁ ପତଳା ଦେଖାଯାଉଛୁ, ହେଲେ ଏତେ ଦୁର୍ବଳ ନୁହଁ ଯେତେ ମୁଁ ଭାବିଥିଲି । ହରି ହେ, ତୁମମାନଙ୍କୁ ଦେଖିବାକୁ ମୋ ମନ କେତେ ବିକଳ ହେଉଥିଲା ... ସେଇ ସ୍ୱାଧୀନତା ପରଠାରୁ ।"

"ତୁମେ ଏଠାକୁ ପ୍ରଥମେ କେବେ ଆସିଲ ? ନଅ ବର୍ଷିଆ ଯୁଦ୍ଧ କାଳରେ ... ? କେଇଟା ବର୍ଷର କଥା ଅବା, ସବୁ ମୋର ମନେଅଛି, ସେସବୁ ମତେ ମନେପକାଇଦେବା ଦରକାର ନାହିଁ ।" ସେ ହସିଲା, ଆଉ ଚୁପ୍ ରହିଲା ଦେଖିବାକୁ, ସେମାନଙ୍କ ଭିତରୁ କିଏ ତାକୁ ଚିହ୍ନୁଛି । ଅବଶ୍ୟ ସେ ନିଜେ ଯେତେ ଚେଷ୍ଟା କଲେ ବି ଜାଣିପାରୁନଥିଲା, ସେମାନଙ୍କ ଭିତରେ କିଏ ତା'ର ପୁରୁଣା ଜଣାଶୁଣା ଲୋକ, ଏପରିକି ଅଙ୍କଲ ତୁକୋଇ, ଯିଏ ହାତରେ ଲ୍ୟାମ୍ପଟି ଧରି ତା ମୁହଁ ଆଡ଼କୁ ବୁଲାଇ ତାକୁ ନିରିଖେଇ ଦେଖୁଥିଲେ, ତାଙ୍କୁ ବି ଚିହ୍ନିବା ମୁସ୍କିଲ ହେଉଥିଲା ।

ଯେତେବେଳେ ପ୍ରାୟ ସମସ୍ତେ ଏକାସାଙ୍ଗେ କଥା ହେଉଥିଲେ, ସାଓ ଲଙ୍ଗ ଲକ୍ଷ୍ୟ କଲା ଲୋକେ ଏପଟ ସେପଟ ଦୌଡ଼ିବା ଆରମ୍ଭ କରିଦେଲେ, ଯେପରି ଗୋଟେ ଜରୁରୀ କାମ ପଡ଼ିଯାଇଛି, ବାହାଘର ବା ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦେବା ବେଳ ଗଡ଼ିଯାଉଛି । ପରମୁହୂର୍ତ୍ତରେ ସେ ଶୁଣିପାରିଲା, କାଠମୁଣ୍ଡା ଉପରେ ଛୁରୀରେ ମାଂସ କଟାର ଶବ୍ଦ । ସେ କେବଳ ତା ସାମ୍ନାରେ ଥିବା କାଠ କାନ୍ଥକୁ ଅନେଇ, ବାରଣ୍ଡାରେ ଜଳୁଥିବା ନିଆଁକୁ ଦେଖିପାରୁଥିଲା, ଯେଉଁଠି ରୋଷେଇ ହେଉଥିଲା । ତା ନାକରେ ବାଜିଲା କଙ୍କଡ଼ା ସିଝା ଆଉ ଚାନ୍ଦି ମାଛର ବାସ୍ନା, ସେଥିରେ ବୋହି ଆଣୁଥିଲା ଅତି ପରିଚିତ ସୁବାସ–ସାଗରର, ଲୁଣି ଜଳର ଆଉ ମାଙ୍ଗ୍ରୋଭ ଜଙ୍ଗଲର ।

ବାହାରେ ଠିକ୍ ସେତିକିବେଳେ ଆଉ ଗୋଟେ ଡଙ୍ଗା ଆସିଲା । ଦୁଇଜଣ ଯୁବକ ପଶିଆସିଲେ, ଘରଟି ସେମାନଙ୍କ ପାଦ ଚାପାରେ ଦୋହଲିଗଲା । ସେ ଦୁଇଜଣ ଏଇନେ ଗୋଟେ ଜଣାଶୁଣା ବଜାରରୁ ଆସିଲେ । ସାଥିରେ ଆଣିଥିଲେ କେତେ ବୋତଲ ମଦ ଆଉ ମୃଦୁପାନୀୟ ।

ଅଧଘଣ୍ଟାପରେ ଦେଖାଗଲା ଲୋକମାନେ ଖାଦ୍ୟ ଭର୍ତ୍ତି କଂସାଥାଳିମାନଙ୍କ ଚାରିପଟେ ବସିଛନ୍ତି । ଖାଦ୍ୟରେ ପ୍ରାୟ ସବୁ ଜିନିଷ ଥିଲା ଚିଙ୍ଗୁଡ଼ି, କଙ୍କଡ଼ା, ବଡ଼ମାଛ, ଛୋଟମାଛ ... ସମାନ ବୟସର–ଏଇ ଉଣେଇଶ–କୋଡ଼ିଏ ବର୍ଷର ଝିଅମାନେ, ଯେଉଁମାନଙ୍କ ମୁହଁ ସ୍ପଷ୍ଟ ଦେଖାଯାଉନଥିଲା, ସତର୍କତାର ସହ ଏପଟ ସେପଟ ହେଉଥିଲେ, ବାମ୍ଫ ବାହାରୁଥିବା ଭାତ ଡେକ୍‌ଚି, ବଡ଼ ବଡ଼ ସୁପ୍ ପ୍ୟାନ ଆଣି ଥୋଇଦେଇ ସାଙ୍ଗେ ସାଙ୍ଗେ ଚାଲିଯାଉଥିଲେ । ଗୃହ ସ୍ୱାମିନୀ ଲେମ୍ବୁ କାଟି ଥାଳି କଡ଼ରେ ଥୋଉଥିଲେ, ଆଉ ଯୁବତୀମାନଙ୍କୁ ଅଧିକ ସସ୍ ବନେଇବାକୁ ନିର୍ଦ୍ଦେଶ ଦେଉଥିଲେ । ହସହସ ମୁହଁରେ ସେ ସମସ୍ତଙ୍କୁ ଖାଇବା

ଆରମ୍ଭ କରିବାକୁ ଆମନ୍ତ୍ରଣ କଲେ ଆଉ କ୍ଷମା ବି ମାଗିନେଲେ ଯେ ପେଟରେ ଯନ୍ତ୍ରଣା କାରଣରୁ ସେମାନଙ୍କ ସହ ସେ ରାତ୍ରିଭୋଜନ କରିପାରିବେ ନାହିଁ ।

ଘଣ୍ଟାଏ ଧରି ଭୋଜନ କର୍ମ ଚାଲିଲା । ଭୋଜନଠାରୁ ଅଧିକ ପାନୀୟ ପ୍ରତି ଆଗ୍ରହ ଦେଖାଇଲେ ସେମାନେ । ଆମନ୍ତ୍ରକ ଓ ଆମନ୍ତ୍ରିତ ବ୍ୟକ୍ତିମାନେ କେବଳ ଭଦ୍ରତା ଖାତିରରେ ଖାଇବାକୁ ବସିଥାନ୍ତି, କାରଣ ଅତିଥି ଦ୍ୱୟ ଅଳ୍ପ ସମୟ ଆଗରୁ ପ୍ରଚୁର ଖାଇ ଆସିଥିଲେ ଆଉ ଗୃହ ମୁନିବଙ୍କର ରାତ୍ରିଭୋଜନ ସରିଥିଲା ।

ସେମାନଙ୍କ ଭିତରେ ଥିଲା ବୁଢ଼ାଲୋକଟିଏ, ପିନ୍ଧିଥିଲା ଧଳା ପାଇଜାମା–କୁର୍ତ୍ତା, ମୁହଁରେ ଛୋଟ ଦାଢ଼ି ଆଉ ମୁଣ୍ଡରେ ବାଳତକ ଗୁଡ଼ାହୋଇ ଗଣ୍ଠିଟିଏ । ଏଇଭଳି କେଶସଜ୍ଜା କାଓଦାଇ ଧର୍ମସଂପ୍ରଦାୟର ପୁରୁଷମାନେ କରିଥାନ୍ତି । ବୁଢ଼ାଟି ୧୯୫୯ରୁ ଘଟିଥିବା ଘଟଣାମାନ ବର୍ଣ୍ଣନା କଲା ଆଉ ସେଇ ଗାଁର ଗୋଟିଏ ଏପରି ଯୁବକ ବିଷୟରେ ବିସ୍ତୃତ ଭାବରେ କହିଲା, ଯେଉଁ ଘଟଣାଟିକୁ ଆଜି ଏଠାରେ ଉପସ୍ଥିତ ସମସ୍ତ ବୟସ୍କଲୋକ ମନେପକାଇପାରିଲେ । ଘଟଣାଟି ଥିଲା ଏହିପରି : ସେନାବାହିନୀ ହଠାତ୍ ଆସି ଗ୍ରାମ କାଉନସିଲ ପ୍ରାଙ୍ଗଣରେ ଏକାଠି ହୋଇଗଲେ ଆଉ ସମସ୍ତ ଗ୍ରାମବାସୀଙ୍କୁ ବାଧ୍ୟକଲେ ସେଇ ଲୋକଟିକୁ ଏକାସାଙ୍ଗେ ମିଶି ପିଟିପିଟି ମାରିଦେବାକୁ, ଜୀବନରେ । ଆଜି ଏଠି ଯେତେଲୋକ ଏକାଠି ହୋଇଛନ୍ତି, ପ୍ରାୟ ସମସ୍ତେ ସେଦିନ ସେଠାରେ ଥିଲେ, ଆଉ ନିଜ ଜୀବନର ସବୁଠାରୁ ଭୟଙ୍କର ମୁହୂର୍ତ୍ତଟିକୁ ଅଙ୍ଗେ ନିଭେଇଥିଲେ । ଆଜି ସେମାନଙ୍କୁ ଲାଗୁଥିଲା ଯେପରି ମୁହୂର୍ତ୍ତକ ଆଗରୁ ଘଟଣାଟି ଘଟିଯାଇଛି । ସେନାବାହିନୀ ଗୋଟେ ଲୋକକୁ ବା ତା'ଭଳି ଅନେକଙ୍କୁ ନିର୍ଯାତନା ଦେବା ଆଉ ମାରିଦେଉଥିବା କଥାଟା ସେମାନଙ୍କୁ ଏତେ ଭୟଙ୍କର ଲାଗିନଥିଲା ଯେତେ ଭୟାନକ ଲାଗିଥିଲା ସେନାନୀର ଏତେ ଗ୍ରାମବାସୀଙ୍କୁ ନିଜ ହାତ ରକ୍ତରେ କଳଙ୍କିତ କରିବାକୁ ବାଧ୍ୟ କରିବା । ତାହାପୁଣି ଏପରି ଗୋଟିଏ ଲୋକର ରକ୍ତରେ, ଯେଉଁ ଲୋକଟି ସେମାନଙ୍କ ସାଙ୍ଗରେ ବଞ୍ଚିଥିଲା, ସେମାନଙ୍କ ସାଥିରେ ମାଛ ମାରିବାକୁ ଯାଇଥିଲା ଆଉ ବଣକୁ ଯାଇ କାଠ ଆଣୁଥିଲା ।

କାଛକୁ ଆଉଜି ପାନ ଚୋବାଉଥିବା ବୁଢ଼ୀଟି ଏଇ ଦୁଇ ବିପ୍ଳବୀ ସାଥୀଙ୍କୁ ସସ୍ନେହ ଦୃଷ୍ଟିରେ ଦେଖୁଥିଲା । ସେ ନିଷ୍ଠୁର ଦଲାଲମାନଙ୍କ ବିଷୟରେ ଗପ କହୁଥିଲା, ସେଇ ଦଲାଲଙ୍କ ଭିତରେ କିମିତି ତା' ଭଣଜା ଥିଲା ଆଉ ଏ ସାରା ଅଞ୍ଚଳରେ ସବୁଠାରୁ ବଦମାସ ଥିଲା ।

ସେ ଓଦାକଣ୍ଠରେ କହିଲା, "ମୁଁ କି ହତଭାଗିନୀ, ବର୍ଷେ ବର୍ଷେ ଧରି ମତେ ଗାଁ କାଉନସିଲ ପାଖରେ ରହିବାକୁ ପଡ଼ିଥିଲା, ଆଉ ରାତିରେ ସେଠି ମୁକ୍ତି ସଂଗ୍ରାମର ଯୋଦ୍ଧାମାନଙ୍କ ଉପରେ ସେମାନଙ୍କ ନିଷ୍ଠୁର କଷଣର ଚିତ୍କାର ଶୁଣି କିମିତି ଡରିକି ଥାଏ ମୁଁ ମଲାପରି !"

ଆଉ ଗୋଟେ ମୋଟି ସ୍ତ୍ରୀ ସାନ୍ତ୍ୱନା ଦେଲା, "କିନ୍ତୁ ତୁମେ ସେଠାରେ ରହୁଥିଲ ବୋଲି ତ ସେମାନେ ତୁମକୁ ସନ୍ଦେହ କରିନଥିଲେ, ଆଉ ତା'ଦ୍ୱାରା କ'ଣ ତୁମେ ନିଜ ଘରେ ଗାତଖୋଳି ରାଜନୈତିକ କର୍ମୀମାନଙ୍କୁ ଲୁଚାଇ ଦେବାକୁ ସମର୍ଥ ହୋଇନଥିଲ ?"

ଆଉ ଜଣେ, ମି.ତୁକୋଇର ସଂପର୍କୀୟ ନିଜକୁ ଧିକ୍କାର କଲା ଯେ ଯୁଦ୍ଧର ଏତେ କଷ୍ଟ ସମୟରେ ସେ କିଛି ବିଶେଷ କରିପାରିଲା ନାହିଁ କାରଣ ତାର ପରିବାର ବହୁତ ବଡ଼ ଥିଲା ଆଉ ତା ସ୍ତ୍ରୀ ଗୋଟେ ମିରିଗପରି ଡରୁଆ ଆଉ ଅତର୍କ ଥିଲା ।

ମୋଟି ସ୍ତ୍ରୀଟି କହିଲା, "ଜମା ନୁହେଁ, ମୁଁ ରାଜି ନୁହେଁ ଯେ ତୁମେ ବିପ୍ଳବରେ କିଛି କରିନାହଁ, ବର୍ଷବର୍ଷ ଧରି ତୁମେ ଜଙ୍ଗଲକୁ ଚାଉଳ ନେଇ ମୁକ୍ତି ସଂଗ୍ରାମର ସାଥୀମାନଙ୍କୁ ଦେଇଛ, ନିଜେ ସୈନ୍ୟବାହିନୀ ଦ୍ୱାରା ବନ୍ଦୀ ହେଲା ଯାଏଁ, ପୁଣି ଜେଲରେ ମାସ ମାସ ଧରି ରହିଛ । କ'ଣ ଠିକ କହିଲି ତ ?"

"ହଁ ... ଅଁ ... ଅଁ ।"

"ଠିକ୍ ଅଛି, ଏଇସବୁ ସେବା ତୁମେ ବିପ୍ଳବକୁ ଦେଇଛ ।"

ଏଥର ଲୋକଟି ଅପ୍ରଭିତ ହୋଇ ଜୋର ହସିଲା : "ଆଃ, ଏସବୁ ସେବା କହିବୁଲିବା ଭଳି ସେବା ନୁହେଁ ମାଡ଼ାମ ।"

ମୁଣ୍ଡରେ ଗଣ୍ଠି ପକାଇଥିବା ଲୋକଟି ହଠାତ୍ ସାଓ ଲଙ୍ଗ ଆଡ଼କୁ ଆଙ୍ଗୁଳି ଦେଖାଇ କହିଲା : "ଆଚ୍ଛା ତୁମକୁ ମୁଁ ସେତିକିବେଳଠୁ ଲକ୍ଷ୍ୟ କରୁଛି । ଯେତେ ଅଧିକ ତୁମକୁ ଦେଖୁଛି ସେତେ ଅଧିକ ତୁମକୁ ଚିହ୍ନିପାରୁଛି । କେତେ ବର୍ଷ ଆଗରୁ ତୁମେ ମଦର ବେ'ର ଗୋଟିଏ ଘରେ ରହୁଥିଲ ନା ?"

ସାଓ ଲଙ୍ଗ ଚମକିପଡ଼ି କହିଲା : "ହଁ, ହଁ ମୁଁ ସେଠି ରହୁଥିଲି । ତା ମୁହଁକୁ ରଙ୍ଗ ଉଠିଆସିଲା, ପ୍ରଭୁ ହେ ! ଲୋକେ ତାକୁ ମନେରଖିଛନ୍ତି, ଅଥଚ ସେ ସେମାନଙ୍କୁ ମନେପକାଇ ପାରୁନାହିଁ । କି ଲଜ୍ଜା ! ମଦର ବେ ? କେବେ ସେ ତା' ଘରେ ଥିଲା ? କେତେ, କେତେ ବର୍ଷ ତଳର କଥା ଇଏ ? ଯେତେ ଚେଷ୍ଟା କଲେ ବି ସେଦିନଟିକୁ ସେ ମନେପକାଇ ପାରିଲା ନାହିଁ ! ସାଓ ଲଙ୍ଗକୁ ଅପ୍ରଭିତ ହେବା ଦେଖି ମୋଟି ପାଇପିଟି ଅନୁମାନ ଲଗେଇଲା ।"

"ମଦର ବେ'ର ଝିଅଟିଏ ଥିଲା ଜୀଉ । ସେ ଜିଲ୍ଲା ବେସାମରିକ ବାହିନୀ ପାଇଁ ଦିନାକେତେ ରାନ୍ଧିଥିଲା । ତମର ମନେଅଛି, ଜୀଉର ବାଁ କାନ ତଳେ ଗୋଟେ ଲାଲ ଜାଇମନ୍ଦା ଥିଲା ?"

"ହଁ, ହଁ, ମୋର ମନେପଡୁଛି", ଚଟକିନା କହିଲା ସାଓ ଲଙ୍ଗ, "ମଦର ବେ' କ'ଣ ଏଇଠି କୋଉଠି ରହୁଛନ୍ତି କି ? ଯଦି ରହୁଥାନ୍ତି, ମୁଁ କାଲିଯାଇ ତାଙ୍କୁ ଦେଖାକରିବି । ମୁଁ ମଦର ବେ' ଘରେ କେବେ ରହିନି କିନ୍ତୁ ମୋର ଅନ୍ୟ ସାଥୀମାନେ ରହୁଥିଲେ ।"

ବାଳ ଗଣ୍ଠି ପକାଇଥିବା ବୁଢ଼ାଟି ମୁଣ୍ଡ ଟୁଙ୍ଗାରିଲା ।

"ହଁ, ମୋର ବି ମନେପଡୁଛି ତମେ ସେଠି ରହୁନଥିଲ କିନ୍ତୁ କେବଳ ମିଟିଂବେଳେ ସେଠିକି ଯାଉଥିଲ । ଗୋଟେ ଝିଅ ସେଠି ରହୁଥିଲା, ତା ନାଁ ମୁଁ ଭୁଲିଯାଇଛି । ଭାରି ଗୋରା ଝିଅଟା । ସେ ଏବେ କୋଉଠି ?"

"ହଁ, ତା' ମୁହଁରେ ବ୍ରଣ ଥିଲା ନା ?" ମୋଟି ମନେପକାଇଲା । "ମୁଁ ଶୁଣିଥିଲି ତାର ଆଉ ତମର ନିର୍ବନ୍ଧ ହୋଇଥିଲା । ସେ ତୁମର ପ୍ରେମିକା ନା ?"

ଉତ୍ ମିଏଁ । ହଁ ସେ ଉତ୍ ମିଏଁ । ଏ ନାମଟି ତା' ହୃଦୟ କନ୍ଦରରେ ଗୋଟେ କେନ୍ଦେରାର ଦୁଃଖଦ ସ୍ୱର ପରି ଜୋର୍ ବାଜିଉଠିଲା । ଗୋଟେ ଶିକାରୀ ପରି ତା' ମନରେ ଶକ୍ତ ଧକ୍କା ଲାଗିଲା, କାରଣ ସାମାନ୍ୟ ସୂଚନା ପାଇ ସେ ଠିକ୍ ଖୁସି ହୋଇ ଆସିଲାବେଳକୁ, ସେ ଦେଖିପାରୁଥିଲା ଯେ ସେମାନେ ତାକୁ କୋଉଠିକି ବି ନେଇ ପାରୁନାହାନ୍ତି । ସେମାନଙ୍କ ପାଖରେ ଥିଲା କେବଳ ପ୍ରାଚୀନ ସୂଚନା, ଯାହା ସେ ବି ଜାଣିଥିଲା, ଆଉ ଯାହା ସେ ଖୋଜୁଥିଲା, ଏମାନେ ବି ଜାଣିନଥିଲେ ।

ସେ ଉପରକୁ ଚାହିଁଲା, ଦୀର୍ଘଶ୍ୱାସଟିଏ ପକାଇ କହିଲା, "ହଁ, ଦଶବର୍ଷରୁ ବେଶୀ ହେବ ତା' ଖବର କିଛି ମୋ ପାଖରେ ନାହିଁ । ମୋର ଧାରଣା ସେ ତଥାପି ଏଇ ଅଞ୍ଚଳରେ କେଉଁଠି କାମ କରୁଛି ।"

କିଏ ଜଣେ କହିଲା, "ନା, ସେ ଏଠି କେଉଁଠି କାମ କରୁନି, ତା ହୋଇଥିଲେ, ମୁକ୍ତିର ଠିକ୍ ପରେ ପରେ ସେ ଆମମାନଙ୍କ ସାଙ୍ଗରେ ଏଠାକୁ ଆସିନଥାନ୍ତା କି ?"

ଗଣ୍ଠିବାଲା ବୁଢ଼ାଟି କହିଲା, "ସେ କ'ଣ ଜେଲରେ ଥିଲା ନା ମରିଯାଇଛି ?"

ପତଳୀ ମାଇପିଟିଏ ଉଦାସ ଆଖିରେ ଗଣ୍ଠି ବାନ୍ଧିଥିବା ବୁଢ଼ାଟି ଆଡ଼କୁ ଅନେଇଲା, ତାକୁ ଏ ଲୋକଟିର କଥା ଏମିତି ଅଜବ ଲାଗିଲା ଯେ ସେ ସଂଶୋଧନ କଲାପରି କହିଲା, "ନା, ସେ ଉତ୍ତର ଆଡ଼କୁ ଯାଇଛି । ମୁଁ ତ ଶୁଣିଥିଲି ବହୁତ ଲୋକ ସେପଟକୁ ଚାଲିଯାଇଛନ୍ତି ନିଜର ଡାକ୍ତରୀ ମାଇନା ପାଇଁ ବା ପଢ଼ାପଢ଼ି କରିବାକୁ । ଏକଥା କ'ଣ ସତ ନୁହେଁ ?"

"ହଁ", ସାଓ ଲଙ୍ଗ କହିଲା । ସେ ବି ଜାଣିଥିଲା ଯେ ଏ ଲୋକମାନେ ଯାହା କହୁଛନ୍ତି ସେସବୁ ପ୍ରକୃତରେ ଉତ୍ ମିଏଁର କ'ଣ ହୋଇଛି ତାଠାରୁ ତାକୁ ସାନ୍ତ୍ୱନା ଦେବାକୁ ଅଧିକ ଉଦ୍ଦିଷ୍ଟ ।

'ସେ ଏବେ କେଉଁଠି ?' ଗଲା ପନ୍ଦରବର୍ଷ ଧରି ଏଇ ଦୁଃଖଦ ପ୍ରଶ୍ନଟି ତା' ପ୍ରାଣରେ ବାରମ୍ବାର ଧ୍ୱନିତ ହୋଇଛି, ଯେତେବେଳେ ବି ସେ ତାକୁ ମନେପକାଇଛି । ଅବଶ୍ୟ, ସମୟ ସହିତ ତାର ଦୁଃଖର ବୋଝ କମିଛି । ବେଳେବେଳେ ସେ ଏପରି ବି ଭାବିଛି ଯେ ଏ ପୃଥିବୀରେ ସେ ବୋଧେ ଏକମାତ୍ର ଲୋକ ଯିଏ ଉତ୍ ମିଏଁ କଥା

ଭାବୁଛି, କାରଣ କିଏ ଜାଣେ, ସେ ଏ ଭିତରେ ବାହାହୋଇ ଛୁଆପିଲା ଧରି ଘରସଂସାର କରୁଥାଇପାରେ । ହୁଏତ ମିଏଁ ଆଉ କାହାକୁ ପ୍ରେମ କରୁଥିବ, ଅଧିକ ଖୁସିରେ ଥିବ । ଏଇ ସମ୍ଭାବନାଟି ତା' ଦୁଃଖ କମାଇବାରେ ସାହାଯ୍ୟ କରେ, ଆଉ ବର୍ଷ ପରେ ବର୍ଷ, ପ୍ରତିଥର ତା' କଥା ଭାବିଲାବେଳକୁ, ସାଓଲଙ୍ଗକୁ ଲାଗେ ଯେପରି ସେ ତାର କେଉଁ ପୁରୁଣା ସାଙ୍ଗକଥା ଭାବୁଛି, ଯାହାକୁ ଏକଦା ସେ ଭଲପାଉଥିଲା ।

ସତକହିବାକୁ ଗଲେ, ସ୍ୱତନ୍ତ୍ରତା ହାସଲ ଯାଏ ସେ ମିଏଁ କଥା ବେଶୀ ଭାବିନଥିଲା । ଦିନେ ସଂଧ୍ୟାରେ ବୋଧେ ଏସବୁ ଆରମ୍ଭ ହୋଇଥିଲା । ଟେଲିଭିଜନରେ ଗୋଟେ ଯୁବତୀର ଫଟୋ ଆଉ ତା' ପରିବାର ଦ୍ୱାରା ଦିଆଯାଇଥିବା ଗୋଟେ ନୋଟ ଦେଖାଯାଇଥିଲା, ଯୁବତୀଟିର ପରିଚୟ ଓ ଠିକଣା ଜାଣିବା ପାଇଁ । ସେ ଯୁବତୀଟିର ଅଲଗା ଗୋଟେ ନାମ ଥିଲା – ପୁଅପିଲାଙ୍କ ନାମ ପରି ନାଁ ଟିଏ – ହେଲେ ତା' ଆଖି ଦୁଇଟି ଏତେ ଉତ୍ ମିଏଁର ଆଖି ପରି ଲାଗୁଥିଲା ଯେ ସାଓର ପ୍ରାଣ ଗଭୀର ଭାବରେ ଆନ୍ଦୋଳିତ ହୋଇଉଠିଲା । ତାପରେ ସେ ଖବରକାଗଜ ଆଉ ଟି.ଭି. ଜରିଆରେ ତା' ବିଷୟରେ ଅନୁସନ୍ଧାନ କରିବାକୁ ଭାବିଲା । ପରେ ପୁଣି ଏପରି ନକରିବାକୁ ସ୍ଥିରକଲା, କାରଣ ସେ ଯଦି ତାର ସ୍ୱାମୀ ଓ ପିଲାମାନଙ୍କ ସହ ଶାନ୍ତିରେ ଥିବ, ତାକୁ ଅଯଥା ବ୍ୟସ୍ତ କରାଇବା ଠିକ୍ ହେବ ନାହିଁ ।

ସ୍ୱତନ୍ତ୍ରତା ପରେ ଥରେ ତାର ନାମ୍ ଥେ ସହିତ ସାକ୍ଷାତ ହୋଇଥିଲା । ସୁଶ୍ରୀ ନାମ ଥେ ତା' ସାଙ୍ଗେ ଆଉ ଉତ୍ ସାଙ୍ଗେ ୧୯୫୫–୫୬ରେ କାମ କରିଥିଲା । ସେତେବେଳେ ନାମ ଥେ ଡାକୋ ବଜାରରେ ଗୋଟେ ଗଳିରେ ଜଳଖିଆ ଦୋକାନଟିଏ ଚଳାଉଥିଲା । ପ୍ରଥମେ ନାମ ଥେ ଟିକେ ସଂକୋଚବୋଧ କଲା, ତାପରେ ବେଶ ସାହସର ସହିତ ତାକୁ ଯାବତ କାହାଣୀ ଶୁଣାଇ ଶେଷରେ ଗୋଟେ ଅନୁରୋଧ କଲା ।

"ଅଳ୍ପଦିନ ଭିତରେ ମୁଁ ଯାହା ଯାହା ସେବା କରିଛି ତାର ବିବରଣୀ ଲେଖିବି । ତୁମେ ମୋ ପାଇଁ ଗୋଟେ ସାର୍ଟିଫିକେଟ ଲେଖିଦେବ ? ତୁମେ କେବଳ ଏତିକି ଲେଖିଦେବା ଦରକାର ଯେ ତୁମ ସହିତ ଗତବର୍ଷମାନଙ୍କରେ ମୁଁ ଏଇ ଏଇ କାମ କରିଛି । ମୁଁ ଶୁଣିଛି ଯେ ବିନ୍‌ଫୋକ୍‌ର ବାସିନ୍ଦା ସୁଶ୍ରୀ ବା ଡୋଙ୍ଗ୍ – ତୁମେ ତାକୁ ଜାଣିଛ ? –ଏହିପରି କରି ଏବେ ଘରମାନଙ୍କରେ ଛୋଟ ଛୋଟ ଚିଜ ବିକିବାକୁ ଅନୁମତି ପାଇଛନ୍ତି, ଆଉ ମାସକୁ ହଜାର ହଜାର ରୋଜଗାର କରୁଛନ୍ତି । ସେପରି ହେଲେ ମୋର ଘର ଚଳେଇବାକୁ ଭାରି ସୁବିଧା ହେବ । ନା କ'ଣ କହୁଛ ?"

ସେଇମିତି ମାଙ୍ଗ୍ ସହିତ ଭେଟ ହେଲାବେଳକୁ ସାଓ ଲଙ୍ଗ୍ ଅନ୍ୟପ୍ରକାର ନିରାଶା ଅନୁଭବ କରିଥିଲା । ମାଙ୍ଗ ଥିଲା ମୁକ୍ତିସେନାର ପତ୍ରବାହକ ଆଉ ନିଜର କୌଶଳ ଓ ସାହସ ପାଇଁ ଜଣାଶୁଣା ଥିଲା । ୧୯୬୮ରେ ସେ ଶତ୍ରୁ ହାତରେ ଧରାପଡ଼ିଥିଲା ।

ତଥାପି ସାଓ ତାକୁ ପ୍ରଥମେ ଚିହ୍ନିପାରି ନଥିଲା । ତା' ଆଖିରେ ଥିଲା ଗୋଟେ ସବୁଜରଙ୍ଗର ମେକ୍-ଅପ୍ ଆଉ ଓଠ ଲାଲ ଲିପଷ୍ଟିକ୍‌ରେ ଚକଚକ କରୁଥିଲା । ସେ ପିନ୍ଧିଥିଲା ପଚାଶ ସେଣ୍ଟିମିଟର ଚଉଡ଼ାର ରଙ୍ଗୀନ ଟ୍ରାଉଜର ଆଉ ନିଜ ହୋଣ୍ଡା ବାଇକରେ ଘଣ୍ଟାଘଣ୍ଟା ଧରି ସହରସାରା ବୁଲୁଥିଲା ।

ଏ ଉଭୟ ସାକ୍ଷାତରେ, ସାଓ ଲଙ୍ଗ ଚମକି ପଡ଼ିଥିଲା ଆଉ ଉତ୍ ମିଏଁର ଛବି ତା' ମନ ଭିତରକୁ ଫେରିଆସିଥିଲା । ସେ ଭଗବାନ ବୁଦ୍ଧଙ୍କୁ ପ୍ରାର୍ଥନା କରିଥିଲା – 'ଉତ୍ ମିଏଁକୁ ସେ କେବେ ଏଇଭଳି ସମାନ ସ୍ଥିତିରେ ନଭେଟୁ ।

## ତିନି

ତିନିଦିନ ପରେ ସାଓ ଲଙ୍ଗ ଆସିଲା କାମାଉର ଉପର ଗାଁ ଛାଡ଼ି ତଳର ଗୋଟେ ଗାଁକୁ । ହାଇକେନ୍‌ର କାମ ଠିକ୍ ସରିଆସୁଥିଲା, ସେ ବି ସାଓ ସାଥିରେ ଚାଲିଲା । ମି. ତୋ କୁଇ ପରିବାରର ସମସ୍ତେ – ପ୍ରାୟ ଡଜନେରୁ ଅଧିକ ହେବେ – ଗାଁର ଆଉ କେତେ ଲୋକ, ପତଳୀ, ମୋଟି, ଚୁଟିଗଣ୍ଠିବାଲା ବୃଦ୍ଧ ଓଗେର ଆଉ ଯେତେ ସେଦିନ ରାତ୍ରି ଭୋଜନରେ ଏକାଠି ହୋଇଥିଲେ, ସମସ୍ତେ ଘର ସାମ୍ନାରେ ଠିଆହୋଇ, ସାଓକୁ ବିଦାୟ ଦେଇଥିଲେ ।

ସାଓ ଲଙ୍ଗ ଡଙ୍ଗା ଭିତରେ ପାଦଥୋଇ ନିଜକୁ ଟଳମଳରୁ ରକ୍ଷା କରିବାକୁ ଚେଷ୍ଟାକଲାବେଳକୁ ହାଇକେନ୍ ତା' କହୁଣିରେ ମୃଦୁଚାପ ଦେଇ କହିଲା : "ଦେଖ, ସେଇଠି ସିଏ ଠିଆ ହୋଇଛି ।

ସାଓ ଲଙ୍ଗ ମୁଣ୍ଡ ଉଠାଇ ଦେଖିଲା ପ୍ରାୟ ଡଜନେ ହେବ କିଶୋରୀ ଯୁବତୀ, ବୟସ୍କଙ୍କ ପଛପଟେ ଲୁଚିରହି ଗହଳି ଭିତରେ ଦୁଇ ଯୁବକଙ୍କୁ ନିରେଖି ଦେଖୁଥିଲେ । ସମସ୍ତେ ପିନ୍ଧିଥିଲେ କଳା ସାଟିନ ଟ୍ରାଉଜର, ଗୋଡ଼ଚିପା, ସେମିତି ଦେହଚିପା ଜ୍ୟାକେଟ୍, ବିଦେଶୀ ଆମଦାନୀ ହୋଇପାରେ, ଗୋଲାପି, ହଳଦିଆ କମଳାରଙ୍ଗ, ନୀଳ ଆଉ ଅନ୍ୟ ଅନ୍ୟ ଆଖି ଝଲସା ରଙ୍ଗର । ତାକୁ ଲାଗିଲା ଯେମିତି ଏଇଲେ ଅଭିନୟ ଠିକ୍ ସରିଥିବା ଗୋଟେ ଷ୍ଟେଜକୁ ସେ ଅନେଇଛି । ତାଙ୍କ ଭିତରୁ କିଏ ? ନୀଳ ଜ୍ୟାକେଟବାଲୀ ନା ହଳଦିଆ, ନା ସେ ହସକୁରୀ ଡେଙ୍ଗୀ ଗୋରୀଝିଅ ? ସେ କଳାମଚମଚ ଆଖିବାଲୀ ନା ଗୋଲ ମୁହଁ ବାଦାମୀ ରଙ୍ଗୀ ଝିଅଟି ଯିଏ ଶ୍ୟାମଦେଶୀ ପରି ଲାଗୁଛି ?

ସେଦିନ ସେ ଛୋଟ ଗାଁଟିରେ, ରାତ୍ରିଭୋଜନବେଳେ, ହାଇକେନ୍ ଗୋଟେ ଝିଅକୁ ଦେଖାଇ ତା' କାନପାଖରେ ଫୁସ୍‌ଫୁସ୍ କରି କହିଥିଲା ଭଲକରି ଝିଅଟିକୁ ଦେଖିବାକୁ । ଯେଉଁ ତିନୋଟି କନ୍ୟା ଖାଦ୍ୟ ପରଷିବାକୁ ଏପଟ ସେପଟ ହେଉଥିଲେ, ତାଙ୍କରି ଭିତରୁ

ଜଣକୁ । ଆଉ ପଚାରିଥିଲା, 'ଯଦି ତୁମର ସେ ପସନ୍ଦ ହେଉଛି ତ ମୁଁ ନିଜେ ମଧ୍ୟସ୍ଥତା କରିବାକୁ ରାଜି । ଝିଅଟି ବେଶ ଭଲ, ମୁକ୍ତିପର୍ବରୁ କେତେ ସାଇଗନୀ ଅଫିସର ତାକୁ ବାହା ହେବାକୁ ଚାହିଁଥିଲେ, କିନ୍ତୁ ସେ ମନାକରିଦେଲା । ସେ କହିଲା : "ମୁଁ ବାହାହେବି ତ ଗୋଟେ ମୁକ୍ତିବାହିନୀ ଯୋଦ୍ଧାକୁ ବାହାହେବି ।"

ସେଇ ରାତିରେ ସାଓ ଲଙ୍ଗ ବି ଝିଅଟିକୁ ପାଖରୁ ଦେଖିବାକୁ ଚେଷ୍ଟା କରିଥିଲା, କିନ୍ତୁ କିରୋସିନି ଲ୍ୟାମ୍ପର ହଳଦିଆ ଆଲୁଅ ସାଙ୍ଗକୁ ଝିଅଟିର ଲଜ୍ଜା ଯୋଗୁଁ ସେ କେବଳ ଝାପ୍‌ସାଭାବେ ଯେତିକି ଦେଖିଲା । ଯେତେଥର ସେ ଖାଇବା ଆଣୁଥିଲା, ଚଟକିନା ଥୋଇଦେଇ, ଆଲୋକର ବିପରୀତ ଦିଗକୁ ମୁହଁ ବୁଲାଇ ଚାଲିଯାଉଥିଲା । କି ଅଦ୍ଭୁତ !

ଯାଙ୍କ ଭିତରୁ କେଉଁ ଝିଅଟି ସେ ? ସେ ଭାବିଲା ହାଇକେନ୍‌କୁ ପଚାରିବ, ହେଲେ ପ୍ରଶ୍ନଟି ପବନରେ ଝୁଲିକି ରହିଲା । ଅନିଚ୍ଛା ଭଳି ଗୋଟେ ଜିନିଷ ତା' ମନକୁ ଆସିଲା । ତାକୁ ଲାଗିଲା ଯେପରି ସେ ନିର୍ମମ ଗୋଟେ କିଛି କରିବାକୁ ଯାଉଛି, ଏଇ ଭାବନା ତାକୁ ଅଟକେଇ ରଖିଲା । ସେ ଭାବିଲା ; ଏ ଗାଁଟି ଯଦି ଆଉ ଗୋଟେ କେଉଁ ଜିଲ୍ଲାର ହୋଇଥାନ୍ତା, ଗୋଟେ ଜାଗା ଯାହା ତାର ବା ଉତ୍ ମିଏଁର କୌଣସି ସ୍ମୃତି ସହିତ ଜଡ଼ିତ ନଥାନ୍ତା, ସେଦିନ ରାତିରେ ଲୋକେ ଯଦି ଉତ୍ ମିଏଁର ନାମ ଧରିନଥାନ୍ତେ, ଏ ଯାତ୍ରା ତାର ଯଦି କେବଳ ଆକସ୍ମିକ ହୋଇଥାନ୍ତା ... ତା ହେଲେ ମଜାରେ ହେଉ ପଛେ, ଏ ଯୋଡ଼ି ହୁଏତ ସମ୍ଭବ ହୋଇପାରିଥାନ୍ତା । ହେଲେ ଏବେ ... ସେ ଦେଖିଲା ଘଟଣା ଆଉ ଏମିତି ଚାଲିପାରିବ ନାହିଁ । ଆଗରୁ କିଛି ଭାବିନଥିଲେ ବି, ତାକୁ ଲାଗିଲା ଯେପରି ସେ ଗୋଟେ ଶପଥ କରିପକେଇଛି, "ନା, ଯାହା ହୋଇଯାଉପଛେ, ମତେ ଉତ୍ ମିଏଁକୁ ଖୋଜି ବାହାର କରିବାକୁ ହେବ ।"

## ଚାରି

ଦୁଇମାସ ପରେ ।

ଦିନେ ସକାଳୁ ସକାଳୁ, ସାଓ ଲଙ୍ଗ ତା' ଅଫିସ୍ କାଗଜପତ୍ର ଘାଣ୍ଟୁଥାଏ, ଟେଲିଫୋନ୍ ବାଜିଉଠିଲା ।

ସେ ରିସିଭର ଉଠାଇଲା । ରିସେପ୍‌ସନିଷ୍ଟ କହିଲା, କେହି ଜଣେ ତାକୁ ଦେଖାକରିବାକୁ ଅପେକ୍ଷା କରିଛି । ସେ ଭାବୁଥିଲା ଲୋକଟିର ନାମ ପଚାରିବାକୁ, କିନ୍ତୁ ଫୋନ୍‌ରେ କିଛି ଭଲ ଶୁଭୁ ନଥିଲା । ସେ ଫୋନ୍ ରଖିଦେଲା ।

ସାଓ ଲଙ୍ଗର ଅଫିସ୍ ଥିଲା ଚତୁର୍ଥ ମହଲାରେ । ସେ ଆଦୌ ତରତର ନହୋଇ, କେତେ କାମ ତଥାପି ବାକି ପଡ଼ିଛି ଭାବି ଭାବି ଧୀରେ ସୁସ୍ଥେ ଶିଡ଼ିରେ ତଳକୁ ଓହ୍ଲାଇ

ଆସିଲା । ପ୍ରତିଦିନ, ଡଜନେରୁ ଅଧିକ ଲୋକ ଆସନ୍ତି ତାକୁ ଦେଖାକରିବାକୁ, ଅବସ୍ଥା ଏମିତି ହେଲାଣି ଯେ ତାର ଆଉ ଏମିତି ସମ୍ପର୍କମାନଙ୍କରେ ଆଗ୍ରହ ନାହିଁ ।

ସେ ରିସେପ୍‌ସନ୍ ଅଫିସ୍ ଭିତରକୁ ପଶିଲା । ବିରାଟ କୋଠରିଟି ଏକଦା ଏତେ ଆରାମଦାୟକ, ଏବେ ପୂରା ଖାଲି । ଟେବୁଲ ପାଖରେ ବସିଥିଲା ଲିଆସନ୍ ଅଫିସର୍, ତା' କାନ୍ଧରୁ ଝୁଲୁଥିଲା ଗୋଟେ ଏ.କେ. ଅଟୋମେଟିକ ରାଇଫଲ୍ । ଘର କୋଣରେ ଗଦିବାଲା ଦୁଇଟି ଅଲଗା ରଙ୍ଗର ଆର୍ମଚେୟାର ପଡ଼ିଥିଲା । ସ୍ତ୍ରୀଲୋକଟିଏ ଅପେକ୍ଷା କରିଥିଲା, ତା' ମୁହଁ ଝରକା ଆଡ଼କୁ ରହିଥିଲା ଯେଉଁଠି ବ୍ରହ୍ମମଲ୍ଲୀର ଲତାଟିଏ ମାଡ଼ିଥିଲା । ପ୍ରାୟ ପଇଁତିରିଶ ବର୍ଷ ହୋଇଥିବ ତାକୁ, ପତଳା ସ୍ତ୍ରୀଟିଏ, ପିନ୍ଧିଥିଲା କଳାକ୍ରେପ୍‌ର ଜ୍ୟାକେଟ୍ ଓ ଟ୍ରାଉଜର୍ ।

ସାଓ ଲଙ୍ଗ ତା' ଆଡ଼କୁ ଆଗେଇ ଆସିଲାବେଳକୁ ଭାବୁଥିଲା : ମୁଁ ଏଇ ସ୍ତ୍ରୀଲୋକଟିକୁ ଆଗରୁ ଜାଣିଛି । ପାଦଶବ୍ଦ ଶୁଣି ସେ ବୁଲିପଡ଼ିଲା । ସାଓ ଯେତେ ପାଖେଇ ଆସିଲା, ସ୍ତ୍ରୀଟିର ମୁହଁ ସେତେ ଶୁଖି ଶୁଖି ଗଲା । ଅନ୍ୟ କୌଣସି ଅଙ୍ଗ ଅପେକ୍ଷା ଏଇ ରଙ୍ଗହୀନ ମୁହଁ ସାଓକୁ ସାହାଯ୍ୟ କଲା ତତ୍‌କ୍ଷଣାତ୍ ତାକୁ ଚିହ୍ନିପକାଇବାରେ । ସାଓ ଅଟକିଗଲା ।

"ତୁମେ ଉତ୍ ମିଏଁ ନା ?"

ଏକାସାଥିରେ ସ୍ତ୍ରୀଟି ଚକିତ ହୋଇ କହିଲା, "ବ୍ରଦର୍ ସାଓ !"

ଗୋଟେ ଅନୁଭବ, ଦୟା ନୁହେଁ, ସାଓର ତଣ୍ଟିକୁ ଅଠା କରିଦେଲା ଯେତେବେଳେ ସେ ଦେଖିଲା ଆଖି କୋଣରେ ଲୋଚାକୋଚା ଚମ, ଓଠ କୋଣରେ ବି ସେଇ କୁଞ୍ଚିତ ଭାଙ୍ଗ ସହିତ ଗାଲରେ ଦାଗ । ପନ୍ଦରବର୍ଷ ... ପ୍ରକୃତରେ ଗୋଟେ ଦୀର୍ଘ କାଳଖଣ୍ଡ, ହେଲେ ସାଓ ଲଙ୍ଗ କେବେ ଭାବିନଥିଲା ଯେ ଏହା ମିଏଁର ପ୍ରତ୍ୟଙ୍ଗରେ ଏଭଳି ବଦଳ ଆଣିଦେବ । ସେ ଭାବିଲା ଯଦି ମିଏଁ ଏଠାକୁ ଆସି ତାକୁ ଖୋଜି ନଥାନ୍ତା ତାହେଲେ ବସ୍ କିମ୍ବା ଗଳିମୁଣ୍ଡରେ ଦେଖି ସେ କ'ଣ ଚିହ୍ନିପାରିଥାନ୍ତା ମିଏଁକୁ ? କଦାପି ନୁହେଁ ।

ଉତ୍ ମିଏଁର ମନରେ ବି ସେଇ ଏକା ଭାବନା । ସାଓ କପାଳରେ କେରାକେରା ଧଳାବାଳ । ତା' ହଳଦିଆ ଚମ ଆଉ ଆଖିର ଧଳାରଙ୍ଗ ସ୍ପଷ୍ଟ ସୂଚାଇ ଦେଉଛି ଯେ ସେ ମାଲେରିଆରେ ଖୁବ୍ କଷ୍ଟ ପାଇଛି । ଅନେକ ମାଲେରିଆ ରୋଗୀ ପରେ ଯକୃତ ଯନ୍ତ୍ରଣା ବି ଭୋଗନ୍ତି । ଉଭୟେ ଅତି କଷ୍ଟରେ ଜୀବନ ବିତାଇ ଆସିଛନ୍ତି, ବହୁତ ଜିନିଷରୁ ନିଜକୁ ବଞ୍ଚିତ କରିଛନ୍ତି, ବିଶେଷକରି ଲୁଣିଖାଦ୍ୟ ... ହେଲେ ସାଓ ଏତେ ସିଗାରେଟ୍ ପିଉଛି କାହିଁକି ? ତା' ଆଙ୍ଗୁଠିର ଅଗଗୁଡ଼ିକ ପୋଡ଼ିଗଲାଭଳି ଦେଖାଯାଉଛି । ତା' ସ୍ତ୍ରୀ ତାକୁ ଏତେ ଧୂମପାନରୁ ଅଟକାଉନାହିଁ କାହିଁକି ? ତା' ସ୍ୱାସ୍ଥ୍ୟ ପାଇଁ ଏହା ତ ବହୁତ ଖରାପ ।

ଉତ୍ ମିଏଁ ଆଉଥରେ ଭଲକରି ତା' ଆଡ଼କୁ ଚାହିଁଲା, ଏଥର ସେ ପତଳା ହୋଇଛି

କି ମୋଟା, ଯୁବା କି ବୁଢ଼ା ସ୍ଥିର କରିବାକୁ ନୁହେଁ, ପରନ୍ତୁ ତା ଢଙ୍ଗରୁ, ପୋଷାକପିନ୍ଧା ଷ୍ଟାଇଲରୁ ଜାଣିବାକୁ ଯେ ସେ ବିବାହିତ କି ବିବାହିତ ନୁହେଁ । ଅବଶ୍ୟ ଏକଥା ଜାଣିବା ତା' ପାଇଁ ଅସମ୍ଭବ ଥିଲା, ଆଉ ସେ ନିଜର ଉଦାସୀ ଭାବନାର ବୃତ୍ତ ଭିତରକୁ ଫେରିଆସିଲା । ହଠାତ୍ ଛାତିରେ ତା'ର ଗୋଟେ ଅଦ୍ଭୁତ ଯନ୍ତ୍ରଣା ହେଲା, ହୃତ୍‌ପିଣ୍ଡ ଧକ୍ ଧକ୍ ହେଲା ଦୌଡୁଥିବା ଘୋଡ଼ା ପରି । ପନ୍ଦରବର୍ଷ ... ପୁରୁଷମାନେ କ'ଣ ଏତେବର୍ଷ ଅପେକ୍ଷା କରିପାରନ୍ତି ? ଯଦିବା ସେ ବାହାହୋଇଥିବେ, ଏସବୁ ତ ମିଏଁର ଦୋଷ, କାରଣ ସେ ତ ନିଜେ ଏୟା ଚାହିଁଥିଲା । "ମୁଁ କିଛି ଭୁଲି ନାହିଁ । ସେଦିନର ସବୁ ଟିକିନିଖି କଥା ମୋର ମନେଅଛି । ମୁଁ ସେଗୁଡ଼ିକ କେବେ ବି ଭୁଲିନାହିଁ ।"

ବାହାରେ ଅନ୍ଧାର ବହଳ ହୋଇ ଆସିଲା । ଉତ୍ ମିଏଁ ନିଜର ଗୋଟିଏ ହାତ ଆଖି ସାମ୍ନାକୁ ଉଠେଇଲା । ରାତିର ଅନ୍ଧାର ଆଉ ଦିନର ଅଳ୍ପ ଆଲୁଅ ମଝିରେ ତା' ହାତ ଗୋଟେ ଛୋଟ, ଅସ୍ପଷ୍ଟ ଚକଡ଼ା ପରି ଦିଶୁଥିଲା । ବର୍ଷେ ହେଲା କି ଅଧିକ କାଳ ହେବ, ଏଇମିତି ଦିନର ସମୟ ସେ କହି ଆସୁଥିଲା । ଏଠାରୁ ସେ ଆହୁରି ଘଣ୍ଟାଏ ଆଗରୁ ବାହାରିପାରିବ ନାହିଁ । ସେ ପୁଣିଥରେ କାନ୍ଥକୁ ଆଉଜିପଡ଼ି ଉଭୟ ହାତକୁ ନିଜ ଆଗରେ ଥୋଇଲା । ତା' ସାମ୍ନାରେ ଥିଲା କାଠକାନ୍ଥ, ତାକୁ ଲାଗିଲା ଯେପରି ସେ ଗୋଟେ ଭୂଲମ୍ବ ଭାବରେ ଥୁଆହୋଇଥିବା କଫିନ ଭିତରେ ବସିଛି । ସେଇ ଭାବନା ତା' ଭିତରକୁ ବାରମ୍ବାର ଫେରିଆସୁଥିଲା ଯେପରି ସ୍ୱାଭାବିକ ଭାବରେ ଗୋଟେ କାର୍ ବା ଇଞ୍ଜିନର ନିୟମିତ ଶବ୍ଦ ବାରମ୍ବାର ଘୂରି ବୁଲୁଥାଏ ।

... କାନ୍ଥ ବାହାରପଟୁ କ'ଣ ଗୋଟେ ଶବ୍ଦ ଶୁଭିଲା । କ'ଣ ବିଲେଇଟିଏ କାନ୍ଥକୁ ଆମ୍ପୁଡ଼ି ଚାଲିଥିଲା କି ? ଉତ୍ ମିଏଁ ଚକିତ ହେଲା । ସାଙ୍ଗେ ସାଙ୍ଗେ ହାତ ସାମ୍ନାରୁ ଘୁଞ୍ଚେଇ ଦେଇ ସେ ନିଜ ଛାତି ଉପରେ ଚାପି ଧରିଲା । ତା' ଛାତି ଏତେ ଜୋର୍ ଧଡ଼ଧଡ଼ ହେଉଥିଲା ଯେ ତାକୁ ଲାଗିଲା ଯେପରି ବାହାରେ ଠିଆ ହୋଇଥିବା ଲୋକ ବି ଏହା ଶୁଣିପାରିବ । କିଏ ସେଠି ? ଏ ଶବ୍ଦ ଶୁଭୁଥିଲା ଯେମିତି ମା ନାମ୍ ... ମା ନାମ୍ କେଉଁଠି ? ମା ନାମ୍ ! ...

କିଏ ଗୋଟେ ପୁଣି ଦୁଇଥର କାନ୍ଥକୁ ରାମ୍ପୁଡ଼ିଲା । ସାଓ ଲଙ୍ଗ । ହଁ, ଏ ତ ସାଓ ଲଙ୍ଗର ସୂଚନା ଦେବାର ଶବ୍ଦ । ଉତ୍ ମିଏଁ ତାଲା ଖୋଲି କାନ୍ଥ ବାହାରକୁ ଚାଲିଆସିଲା, ପବିତ୍ର ଆଶ୍ରୟସ୍ଥଳୀ । ହେ ଭଗବାନ ! ବ୍ରଦର ସାଓ ! ମିଏଁ ନିଜକୁ ତା ବାହୁବନ୍ଧନ ଭିତରେ ଛାଡ଼ିଦେଲା, ମଥାକୁ ତା' ଛାତିରେ ଚାପିଧରିଲା, ଆଖିରୁ ଧାର ଧାର ଲୁହ ବୋହିଯାଉଥାଏ । ଏଇମିତି ସେ ତା' ଛାତିରେ ଚାପିହୋଇ ରହିଥିଲା ପ୍ରଥମଥର, ତା ପରେ ସେମାନଙ୍କର ନିର୍ବନ୍ଧ ହୋଇଥିଲା, ହୁଏତ ସେ ବିବାହ କରିପାରିଥାନ୍ତା ବର୍ଷକ ପୂର୍ବରୁ, ଯଦି ବାଧାବିଘ୍ନ କମ୍ ହୋଇଥାନ୍ତା । ମିଏଁ ହଠାତ୍ ଅନୁଭବ କଲା ଗୋଟେ ଅତି

ସାହସିକ ପଦକ୍ଷେପ ସେ ନେଇଯାଇଛି । ତାକୁ ଲଜ୍ଜା ଲାଗିଲା । ସେ କ'ଣ ତାକୁ କହିଥିଲା ଏଇଠି ଛାଡ଼ିଦେବାକୁ ? କାହିଁକି ସେ ଏତେବେଳେ ଆସିଛି ଏଠାକୁ ?

ଏବେ ମାସକରୁ ବେଶୀ ହେଲାଣି ଏ ଅଞ୍ଚଳ ଭାରି କୋଳାହଳ ଭିତରେ ଅଛି, ଯେମିତି କେଉଁ ମାରାତ୍ମକ ଜ୍ୱରରେ କମ୍ପିଚାଲିଛି । ଗୋଟିଏ ପରେ ଗୋଟିଏ ବିପ୍ଳବୀ କ୍ୟାମ୍ପ ଲଜ୍ଜିତ ହୋଇଛନ୍ତି । ଗୁପ୍ତଚର ଦଳଦଳ ହୋଇ ବୁଲୁଛନ୍ତି । ତାଙ୍କ ଭିତରୁ ଜଣେ ତାମଚାନ୍, ଯାହାର ଆଖି ଦି'ଟା ଅସୁର ପରି, କୁଟିଳ ଚାହାଣି ସେଥିରେ, ସାଓ ଲଙ୍ଗ ଥରେ ଗୋଟେ ମିଟିଂରେ ତାକୁ ଦେଖାଇ ଦେଇଥିଲା ।

"ଦେଖ, ସେ ଗୋଟେ କମ୍ରେଡ଼, ଗୋଟେ ପାର୍ଟି ସଦସ୍ୟ, ତଥାପି ତା' ଆଖିରେ ସ୍ୱଚ୍ଛ ଚାହାଣିଟିଏ ନାହିଁ । ଅଛି ?"

ମିଏଁ ହସିଥିଲା, ଭାବିଥିଲା, ସାଓ କାହିଁକି ଗୋଟେ ଲୋକକୁ ତା ବାହ୍ୟ ଚେହେରାରୁ ବିଚାର କରୁଛି ? ଯୁକ୍ତି କରିଥିଲା, "କମ୍ରେଡ଼ ତାମଚାନ୍ ବୁଢ଼ା ହେଲାଣି, ମୋ ବଡ଼ଭାଇଙ୍କ ବୟସର । ସେ ଆମକୁ ସବୁବେଳେ ଶିଖାଇଛି ଦଳପ୍ରତି ଶେଷ ନିଃଶ୍ୱାସଯାଏଁ ବିଶ୍ୱସ୍ତ ରହିବାକୁ, ସବୁବେଳେ ମନେରଖିବାକୁ ଯେ ଆମେ ଲୋକଙ୍କର ସେବକ । ସେ ସବୁବେଳେ କହୁଥିଲା, ଆମେ ଏପରି କରିବା, ଏପରି କରିବା ନାହିଁ ... ସେ ଏତେ ଉପଦେଶ ଦେଇଛି ଯେ ମୋର ଆଉ ସେସବୁ ମନେନାହିଁ । ସେ କେତେ ଭଲ । ଆଉ ସେ କେମିତି ଦେଖାଯାଉଛି, ତାହାତ ତାର ବାହାରର ଆକୃତି । ଏଥିରେ କିଛି ଯାଏଆସେ ନାହିଁ ।"

ମାସେ ଆଗରୁ ସେ ମନେପକାଇଲା, ଦଳଶାଖାର ସେକ୍ରେଟାରୀ ଭାବରେ ତାମଚାନ୍ ଅନ୍ୟ ସଦସ୍ୟମାନଙ୍କୁ ଗୋଟେ ଜାଗାକୁ ଜଣକ ପରେ ଜଣକୁ ଡକାଇଥିଲା । ଅଥଚ ସେମାନେ ସେଠାରେ ପହଞ୍ଚିଲା ମାତ୍ରେ ଜଣକ ପରେ ଜଣେ ସମସ୍ତେ ହାତକଡ଼ି ପିନ୍ଧିଥିଲେ ।

ସୌଭାଗ୍ୟକୁ ସେଦିନ ସେ ଲୁଚି ପଳାଇଯିବାକୁ ସମର୍ଥ ହୋଇଥିଲା । "ଗୋଟେ ଡଙ୍ଗା ମତେ ମିଳିଥିଲା । ହେଲେ ଯେତେବେଳେ ଆମେ ଗୋଟେ ଦୁର୍ଗ ପାଖରେ ପହଞ୍ଚିଲୁ ଆଉ ଠିକ୍ ଡାହାଣକୁ ବୁଲି ଉଠାଣିରେ ଯିବାକୁ ସ୍ଥିର କରୁଥିଲୁ, ଆମେ ତା' ମୋଟର ଲଞ୍ଚ ସେଠାରୁ ବାହାରି ନଦୀକୁ ଯିବାର ଶୁଣିଲୁ । ସେଠାରେ ନିଶ୍ଚୟ ଆହୁରି ଲଞ୍ଚ ଥିଲା କାରଣ କେନାଲର ଜଳସ୍ତର ଉପରକୁ ଉଠୁଥିଲା ଆଉ ଉଭୟ କୂଳରେ ମଥାପିଟୁଥିଲା ; ମୁଁ ଯେଉଁ ଡଙ୍ଗାଟି ବାହୁଥିଲି, ଓଲଟିପଡ଼ିବା ଅବସ୍ଥାରେ ସେଇଟି ଟଳମଳ ହେଉଥିଲା ।"

ସେମାନଙ୍କ ମଟରଲଞ୍ଚ ଚାଲିଗଲା ପରେ, ସେ ଉଠାଣି ସ୍ରୋତରେ ଡଙ୍ଗା ବାହିଚାଲିଥିଲା, ଭାବୁଥିଲା, କ'ଣ ହେଲାକି ସେଠାରେ ! ସେତିକିବେଳେ ସେ ଦେଖିଲା, ଗୋଟିଏ ଛୋଟିଆ ଡଙ୍ଗା ସ୍ରୋତର ଅନୁକୂଳରେ ବୋହିଆସୁଛି, ସେଥିରେ ବସିଥିଲେ ଦୁଇଜଣ ଲୋକ । ଦେଖାଯାଉଥିଲେ ମାଛମାରୁଥିଲା ପରି । ସେମାନେ ତା' ଆଡ଼କୁ

ଅନାଇଲେ ବି ନାହିଁ । ଜଣେ ଅନ୍ୟଜଣକୁ କହୁଥିବାର ସେ ଶୁଣିଲା : "ବସ୍, ମିଲିଟାରୀ ଲୋକଗୁଡ଼ାଙ୍କ କାମ ପ୍ରକୃତରେ ଅବ୍ୟର୍ଥ । ଦେଖୁନ, କେମିତି କେତେ ଭିଏତକଙ୍ଗ୍‌ଙ୍କୁ ଧରି, ଗୋଛେଇ, ବେଙ୍ଗ ପରି ବାନ୍ଧି ପକେଇଲେ ।"

"ଜଣାଯାଉଛି ତାମଚାନ୍ ବି ବନ୍ଧାହେବା ଲୋକଙ୍କ ଭିତରେ ଅଛି । ତୁମେ କ'ଣ ଭାବୁଛ ?"

ଜମା ନୁହେଁ । ତୁମେ କ'ଣ ଦେଖିପାରିଲ ନାହିଁ, ଲଞ୍ଚ ଉପରେ ସେ କେମିତି ଗୋଡ଼ ପରେ ଗୋଡ଼ ପକେଇ ବସି ଜଗୁଆଳି ଆଉ ମିଲିଟାରୀ ଲୋକଙ୍କ ସାଙ୍ଗେ ବିଅର୍ ପିଉଥିଲା ? ଗିରଫ ଲୋକଗୁଡ଼ାଙ୍କ ହାତରେ ହାତକଡ଼ି ପଡ଼ିଥିଲା ଆଉ ଏକାଠି ସେଗୁଡ଼ାଙ୍କୁ କେମିତି ସେଠି ବନ୍ଧା ହୋଇଥିଲା ଦେଖିଲନି କି ?"

ଉତ୍ ମିଏଁ ଥରିଗଲା । ଘଟଣା ଏପରି ଘୂରିଗଲା କିପରି, କାହିଁକି ? ଏମାନେ କ'ଣ ତାକୁ ଗୋଟେ ରାଜନୈତିକ କର୍ମୀ ବୋଲି ଚିହ୍ନିପାରି ଜାଣି ଜାଣି ତା' କାନରେ ପଡ଼ିବାକୁ ଏପରି କହିଗଲେ ? ସେମାନେ ଚାଲିଗଲା ପର୍ଯ୍ୟନ୍ତ ଅପେକ୍ଷା କରି ତା' ଡଙ୍ଗା ସେ ମିଟିଂ ଜାଗାରୁ ଘୂରାଇ ଦୂରକୁ ଦୂରକୁ ବାହିନେଲା ।

"ଦୁଇଦିନ ପରେ", ସେ କହିଲା, "ଜିଲ୍ଲା ପାର୍ଟି ଏକ୍‌ଜିକ୍ୟୁଟିଭ ସଦସ୍ୟମାନେ ଆମକୁ ଜଣାଇଲେ ଯେ ତାମଚାନ୍ ଶତ୍ରୁପାଖରେ ଆତ୍ମସମର୍ପଣ କରିଛି, ଆଉ ଜିଲ୍ଲା ମିଲିଟାରୀ ଶିବିରରେ ରହୁଛି । ଏ ରିପୋର୍ଟ ସେଇସବୁ ପରିବାରମାନଙ୍କରେ ଆତଙ୍କ ଖେଳାଇଦେଲା ଯେଉଁମାନେ ବିଦ୍ରୋହୀ ସାଥୀଙ୍କୁ ନିଜ ଘରେ ଆଶ୍ରୟ ଦେଇଥିଲେ । ତାମଚାନ୍ ଯେତେବେଳେ ବିପ୍ଳବ ପାଇଁ ତଥାପି କାମ କରୁଥିଲା, ସେ ସମସ୍ତ ମୁଖ୍ୟ କାର୍ଯ୍ୟାଳୟ ପରିଦର୍ଶନ କରୁଥିଲା । ସେ ଆତ୍ମସମର୍ପଣ କରିବାର ସପ୍ତାହେ ପରେ ଶତ୍ରୁ ଦ୍ୱାରା ଅଙ୍କଲ ହାଇତାମ ଗିରଫ ହେଲେ । ସେ ତାମଚାନ୍‌ର ଯେଉଁ ଉପକାର କରିଥିଲେ ଏହା ଥିଲା ତାର ପ୍ରତିଫଳ । ତାମଚାନ୍‌ର ହାଣ୍ଡିପରି ବାହାରିଆସିଥିବା ପେଟକୁ ଚିକିତ୍ସା କରି କମାଇଥିଲେ ହାଇତାମ । ମାଲେରିଆରେ ପୀଡ଼ିତ ହୋଇଥିବାବେଳେ ତାମଚାନ୍‌କୁ ବର୍ଷେ ଯାଏଁ ଘରେ ରଖି ଶୁଶ୍ରୁଷା କରିଥିଲେ ସେ । ଏବେ ଅଙ୍କଲ ହାଇଙ୍କୁ ଗିରଫ କରି ରାଜଧାନୀର କେଉଁ ଏକ ଅଜଣା ସ୍ଥାନକୁ ନିଆ ହୋଇଥିଲା । ତିନିଦିନ ପରେ ଆସିଲା ମାଆ ଚିନ୍ ଗିଓଁର ପାଳି । ସେ ବି ଖାଇବା ପିଇବାକୁ ଦେଇ ତାମଚାନ୍‌କୁ ନିଜ ମାଟିତଳ ଘରେ ଲୁଚାଇ ଆଶ୍ରୟ ଦେଇଥିଲେ । ସେଇଦିନ ସକାଳେ ମିଲିଟାରୀ ଲୋକେ ତିନିଜଣଙ୍କୁ ବାଡ଼େଇ ବାଡ଼େଇ ମାରିଦେଇଥିଲେ, ତାଙ୍କ ଭିତରେ ଜଣେ ଥିଲା ମାଆ ନାମ୍ । ସେ ଏବେ ଏବେ ଘରକୁ ଫେରିଥିଲା ଆଉ ଗୋଟେ ଦାନା ବି ତା' ପେଟକୁ ଯାଉନଥିଲା, ଭାତ ପାଟିକୁ ନେଲାବେଳକୁ ବାନ୍ତି ମାଡ଼ିଆସୁଥିଲା । ସାଓକୁ ପଚାରିଥିଲା ମିଏଁ : "କାହିଁକି ତୁମେ ଏଠାକୁ ଆସିଛ ?"

"ମୁଁ ଗୋଟେ ଲକ୍ଷ୍ୟ ନେଇଚାଲିଛି", ସାଓ କହିଲା, "ତା' ଛଡ଼ା ମୁଁ ଗୋଟେ ଗୋପନ କାମରେ ବି ଲାଗିଛି । ଆଜିକି ମାସେ ହେଲା ତୁମ ଖବର ମୁଁ କିଛି ପାଇନାହିଁ, ଆମର କେତେ ସାଥୀ ଧରାପଡ଼ିଛନ୍ତି, କେତେ ନିହତ ହୋଇଛନ୍ତି, ଆଉ କେତେ ପ୍ରତିରୋଧୀ କାର୍ଯ୍ୟାଳୟର ଗୁମର ଖୋଲିଯାଇଛି ଆଉ କେତେ ଧ୍ୱସ୍ତ ହୋଇଛି, ମୁଁ କିଛି ଜାଣିନି । ଗତ ରାତିରେ ମୁଁ ଶୁଣିଲି ଯେ ଗୋଟେ ପଳତୀ, ସୁନ୍ଦରୀ ଝିଅକୁ ସେମାନେ ଗିରଫ କରିଛନ୍ତି । ସେମାନେ ତା ଆଖିରେ ଅନ୍ଧପୁଟୁଳି ବାନ୍ଧି, ହାତବାନ୍ଧି ଡଙ୍ଗାର ଉପର ଡେକ୍‌ରେ ବସାଇ ରାଜଧାନୀ ଆଡ଼କୁ ନେଉଥିଲେ । ଏ ଖବର ମତେ ଶକ୍ତ୍‌ ଧକ୍କା ଦେଲା । ହରି ହେ ! ଏ କ'ଣ ମୋର ପ୍ରାଣପ୍ରିୟା ଉତ୍ ମିଏଁ ହୋଇଥିବ ! ମତେ ଲାଗିଲା ଯେମିତି ମୋ ହୃଦୟ ପୋଡ଼ିଜଳିଯିବ । ମୁଁ ଏଠାକୁ ଆସି ତୁମ ବିଷୟରେ ଅନୁସନ୍ଧାନ କରିବାକୁ ସ୍ଥିରକଲି ଆଉ ମୋ ମନକୁ ଶାନ୍ତି ଦେବାକୁ ଉଚିତ ମନେକଲି ।

ଉତ୍ ମିଏଁ କହିଲା, "ସେଇ ଆକସ୍ମିକ ମୁହାଁମୁହିଁ ଘଟଣା ପରେ ମୁଁ ଭାବି ଲାଗିଲି : ଅସମ୍ଭବ । ଯଦି ଘଟଣା ଏହିପରି ଘଟିଚାଲେ, ଦିନେ ନା ଦିନେ ତୁମେ ମୋ'ରି ପାଇଁ ନିହତ ହେବ । ଆମେ ଯଦି କାମରେ ଲାଗିରହି ନିହତ ହୁଅନ୍ତି ଅଲଗା କଥା, ସେଥିରେ ଦୁଃଖ କରିବାର କିଛି ନାହିଁ । ହେଲେ ଗୋଟେ ପୁରୁଷ ତାର ପ୍ରେମିକାକୁ ଦେଖାକରିବାକୁ ଆସି ନିହତ ହେବା କେତେ ଦୟନୀୟ ! ବର୍ତ୍ତମାନ ଅବସ୍ଥାରେ, ଆମର ରୋଜଗାର କରିବା କଷ୍ଟକର, ଧରା ନପଡ଼ି କିମ୍ବା ଗୁଳି ନଖାଇ କାମ କରିବାର ପ୍ରଶ୍ନ ନାହିଁ । ତେଣୁ ବାହାହୋଇ ଏକାଠି ରହିବାଠାରୁ ଏକୁଟିଆ ରହିବା ଭଲ । ପୁଣି ଯଦି ଆମର ଛୁଆପିଲା ହେଲେ ? କାହା ଦାୟିତ୍ୱରେ ଆମେ ସେମାନଙ୍କୁ ଛାଡ଼ିବା ? ମୋ ପିଲାଙ୍କୁ ପାଳିବାକୁ ହେଲେ ମତେ କାମ ଛାଡ଼ିବାକୁ ହେବ । ଆଉ ମୁଁ ଯଦି କାମ ଛାଡ଼ିଦିଏ, ଓଃ, ବରଂ ମୁଁ ମରିଯିବି । ନାଃ, ଆମେ ପରସ୍ପରଠାରୁ ଦୂରେଇଯିବା ବରଂ ଭଲ ।"

"ମାସେ ପରେ ... ମୋର ସେ ଦିନଟି ଆଜି ବି ମନେଅଛି । ବର୍ଷର ଏଇ ସମୟ ପ୍ରାୟ । ବର୍ଷାଋତୁ ସରିଆସୁଥାଏ । ହେଲେ କା-ମୁଏ ତଥାପି ଜଳସମୁଦ୍ର ହୋଇ ରହିଥାଏ, ନଦୀ-ଉପନଦୀ ସମେତ । ଯୁଆଡ଼େ ଚାହଁ ପାଣିଛଡ଼ା ଆଉ କିଛି ଦେଖିପାରିବ ନାହିଁ । ଆଉ ଗୋଟେ ଅଞ୍ଚଳକୁ ଯିବାକୁ ମୁଁ ଆଦେଶ ପାଇଥାଏ । ମୁଁ ନିଜକୁ ଗୋଟେ ସପୁରି ବିକାଳିର ଛଦ୍ମବେଶରେ ସଜାଇ ଅନ୍ୟ ଯାତ୍ରୀମାନଙ୍କ ସହ ସପୁରି ବୋହି ଡଙ୍ଗା ବାହିନିଏ ସେଇଠିକି, ଯେଉଁଠାରେ ଦଳୀୟ ସମିତି ଥାଏ । ସେଠାରେ ମୋ କାମର ଲିଖିତ ବିବରଣୀ ଦେଇଦେବା ପରେ, ମୋ ସପୁରି ବିକା ସହିତ ଅନ୍ୟ ବିପ୍ଳବ କାର୍ଯ୍ୟାଳୟ ସହ ସମ୍ପର୍କ କରେ, କିନ୍ତୁ ଦିନସାରା ବିନା କାମରେ ଗୋଟେ ଅନ୍ଧାରି କୋଣରେ ମତେ ଚୁପ୍‌ଚାପ ବସିରହିବାକୁ ପଡ଼େ । ସେତିକିବେଳେ ମୁଁ ଭାବେ ତୁମରି କଥା, ଭାବିଚାଲେ ..."

ସାଓ ଲଙ୍ଗର ଖୁସି ଆଉ ବାଧା ମାନୁନଥିଲା । ହେଲେ ସେ ଯେତେ ଅଧିକ ଖୁସି

ହେଉଥିଲା ମିଏଁ ସେତେ କଷ୍ଟ ପାଉଥିଲା । ଯେତେବେଳେ ମିଏଁ କାତର ହୋଇ କାନ୍ଦିବାକୁ ଲାଗିଲା, ସାଓ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "କ'ଣ ହେଲା ? ତୁମେ କାନ୍ଦୁଛ କାହିଁକି ?"

ମିଏଁ ମୁହଁ ବୁଲାଇନେଲା, ସେ କାନ୍ଦୁଥିଲା, ପଦେ ବି ଶବ୍ଦ ତା' ପାଟିରୁ ବାହାରିଲା ନାହିଁ । ବହୁତ କଷ୍ଟରେ ଏତିକି କହିପାରିଲା : "ତୁମ ସହିତ ସମ୍ପର୍କ ଛିଣ୍ଡାଇଦେବାକୁ ମୋତେ ଅନୁମତି ଦେବ ନା ?"

ନିଜ କାନକୁ ବିଶ୍ୱାସ କରିପାରୁନଥିଲା ସାଓ ।

"ନନ୍‌ସେନ୍‌ସ, ଆଉଥରେ କୁହ କ'ଣ ତୁମେ କହିଲ, ପ୍ଲିଜ । ନା, ମୁଁ ବୁଝିପାରୁନାହିଁ କ'ଣ ତୁମେ କହୁଛ ।" ସେ ମିଏଁର କାନ୍ଧକୁ ଜୋର୍‌ରେ ଧରି ନିଜ ଆଡ଼କୁ ବୁଲାଇ ଆଣିଲା ।

ତା ଆଖିକୁ ନଅନାଇ ମିଏଁ କହିଲା, "ମତେ ଭୁଲିଯାଅ । ଧରିନିଅ ମୁଁ ମରିଯାଇଛି, ମୁହାଁମୁହିଁ ଯୁଦ୍ଧରେ ..."

ହସିଲା ସାଓ । "ଏତେ ସହଜ ତୁମକୁ ଭୁଲିଯିବା ? ହେଲେ ମତେ କୁହ, ତୁମେ କାହିଁକି ବାହାରକୁ ଆସିଛ, ପୁଣି ଏଭଳି ଏକ ଅଦ୍ଭୁତ କାହାଣୀ ଧରି ।"

ଅପ୍ରତିଭ ହୋଇ ମିଏଁ କହିଲା ଯେ ବହୁତ ଲୋକ ନିହତ ହୋଇଥିବା କଥା ସେ ଶୁଣିଥିଲା ।

ସାଓ ଉତ୍ତରଦେଲା, "କ'ଣ ବହୁତ ଲୋକ ଯଦି ନିହତ ହୁଅନ୍ତି, ସବୁ ପତି-ପତ୍ନୀ ପରସ୍ପରକୁ ତ୍ୟାଗ କରିଦିଅନ୍ତି ?"

ଆହୁରି ଅପ୍ରତିଭ ହେଲା ମିଏଁ ।

"କଥାଟା ସେମିତି ନୁହେଁ । ଯେଉଁମାନେ ବିବାହ କରିସାରିଛନ୍ତି ସେମାନଙ୍କୁ ତ ଯେମିତି ହେଲେ ପରସ୍ପର ସହ ସବୁସ୍ଥିତିରେ ରହିବାକୁ ହେବ । ଆମ କଥା ଭିନ୍ନ, ଆମେ ଅଳ୍ପଦିନ ହେଲା ପରସ୍ପରର ବାଗ୍‌ଦତ୍ତା ହୋଇଛେ । ଚାଲ, ଆମେ ନିର୍ବନ୍ଧ ଭାଙ୍ଗିଦେବା ।"

ତାକୁ ବୁଝେଇବାକୁ ଶତଚେଷ୍ଟା କରି ବିଫଳ ହେବା ପରେ ସାଓ ରାଗିଗଲା । କେବଳ ରାଗିଗଲା ନାହିଁ, ତା' ମନରେ ସନ୍ଦେହର ବୀଜଟିଏ ମୁଣ୍ଡ ଟେକିଲା । ମିଏଁର ମତଲବ କ'ଣ ? ଏଣେ ତାକୁ ଛାଡ଼ିଯାଉଛି ବୋଲି ମିଏଁ ମନରେ ଦୁଃଖ ଥିଲା, ତା' ଉପରେ ସାଓର ସନ୍ଦେହ । ତାର ଇଚ୍ଛା ହେଉଥିଲା ଚିତ୍କାର କରିବ :

"ନା, ମୁଁ ତୁମକୁ ହିଁ ଭଲପାଏ ସାଓ, କେବଳ ତୁମକୁ । ଏଇ ମୁହୂର୍ତ୍ତରେ ତୁମକୁ ମୁଁ ସବୁଠାରୁ ବେଶୀ ଭଲପାଉଛି ।" ହେଲେ କିଛି ନକହି ସେ ନୀରବ ରହିଲା ।

ଟିକିଏ ପରେ ସାଓ କୁନ୍ଥେଇ କୁନ୍ଥେଇ କହିଲା, "ଏବେ ତ ତୁମରି ଉପରେ ସବୁ ନିର୍ଭର କରୁଛି, ତୁମେ ମୋତେ ବାହା ହେବ କି ହେବ ନାହିଁ । ଆଉ ମୋ କଥା ଆଗ

ଶୁଣିନିଅ, ମୁଁ ଶପଥ କରୁଛି, ତୁମକୁ ଛାଡ଼ିବି ନାହିଁ । କିନ୍ତୁ ତୁମେ ମୋତେ ଆଗପରି ଭଲପାଉନାହଁ, ତେଣୁ ତୁମକୁ କେମିତି ମୁଁ ବାଧ କରିପାରିବି ?"

ସେ ଅଧିକ କିଛି ତିକ୍ତ, ଉପହାସମୂଳକ କଥା କହିବାକୁ ଚାହୁଁଥିଲା, ହେଲେ ପାରିଲା ନାହିଁ । ନୀରବ ରହିଲା ।

ମିଏଁ କହିଲା, "ତୁମେ ସତରେ କେତେ ଦୟାଳୁ, ତୁମକୁ ମୁଁ ସହାନୁଭୂତି ଜଣାଉଛି । ହେଲେ, ମୁଁ କ'ଣ କରିପାରିବି ?"

ତା' ଆଖିରୁ ଦୁଇଧାର ଲୁହ ତା' ଗାଲକୁ ତିନ୍ତାଇ ବୋହିଗଲା ।

## ପାଞ୍ଚ

ମିଏଁ ଚାହିଁଲା ସାଓ ଲଙ୍ଗକୁ । ପଚାରିବାକୁ ଭାବୁଥିଲା ତା'ର କେତୋଟି ପିଲାପିଲି, ହେଲେ ସାହସ ଜୁଟେଇ ପାରିଲା ନାହିଁ । ତା' ଆଙ୍ଗୁଳିକୁ ଦେଖିଲା, ବିବାହ ମୁଦ୍ରିକା ପିନ୍ଧିଛି କି ନାହିଁ । ତାହା ବି ନଥିଲା । ପୁଣି ମିଏଁ ଭାବିଲା, ବିଦ୍ରୋହୀକର୍ମୀମାନେ ମୁଦି ପିନ୍ଧନ୍ତି ନାହିଁ, ବାହା ହୋଇଥାନ୍ତୁ କି ନହୋଇଥାନ୍ତୁ । ସେ ଅଫିସ୍‌ରେ କାମ କରୁଛି । ମୁଁ ଯଦି ତାକୁ ବଜାରରେ କି ଗଳିରେ ଦେଖିବି, ଦେଖିନେବି ସେ ପିଲାଙ୍କ ପ୍ଲାଷ୍ଟିକ ଖେଳଣା ଧରିଛି କି ନାହିଁ କିମ୍ବା ଗୋଟେ ହାତଧୂଆ ଟବ୍ ବା ଫ୍ଲାସ୍କ ... ଅନୁମାନ କରିନେବି ସେ ବିବାହିତ କି ନୁହେଁ । ହେଲେ ଏତେ ଅନୁମାନ କରିବା କ'ଣ ଦରକାର ? ପୁରୁଷମାନେ କେମିତି ଏତେବର୍ଷ ଏକୁଟିଆ ରହି ଅପେକ୍ଷା କରିପାରିବେ ?

ସାଓ ଲଙ୍ଗ ବି ତାକୁ ଆହୁରି ନିରିଖେଇ ଦେଖିଲା । ତା' ମନରେ ବି ଗଭୀର କଳ୍ପନା ଆଉ ଅନୁମାନ କିଛି କମ୍ ନଥିଲା ।

ଉତ୍ ମିଏଁ ଆର୍ମଚେୟାର ଗଦିରେ ଆଙ୍ଗୁଳି ଘଷି ଘଷି କହିଲା, "କାଲି ରାତିରେ ମହିଳା ମୁକ୍ତିମୋର୍ଚ୍ଚାର ଗୋଟେ ଆଞ୍ଚଳିକ ବୈଠକରେ ମୁଁ ଯୋଗଦେଇଥିଲି । ଜଣେ କମ୍ରେଡ୍ ତୁମ ନାଁ ମନେପକାଇ କହିଲେ ଯେ ତୁମେ ଏଇଠି କାମ କରୁଛ । ସେଇଥିରୁ ମୁଁ ଜାଣିଲି ।"

ଏତକ କହିପକାଇବାକ୍ଷଣି ତାକୁ ଲାଜ ମାଡ଼ିଆସିଲା ।

ସାଓ ଲଙ୍ଗ ତା' ଅବସ୍ଥା ଦେଖି କ'ଣ କହିବ ଭାବିପାରୁନଥାଏ ।

ମିଏଁ ପୁଣି କହିଲା, "ପ୍ଲିଜ୍, ତୁମକୁ ଏମିତି ଖୋଜି ଖୋଜି ଭେଟିବାକୁ ଆସିଲି ବୋଲି ଖରାପ ଭାବିବ ନାହିଁ । କଥାଟା ସ୍ପଷ୍ଟ ହୋଇଯିବା ଭଲ, ତାହେଲେ ମତେ ଆଉ ଅସହଜ ଲାଗିବ ନାହିଁ ।"

"ଦୁଇମାସ ତଳେ ମୁଁ ଯାଇଥିଲି ନାମକାନ୍, ତୁମକୁ ଖୋଜିବାକୁ, ହେଲେ ପାଇଲି ନାହିଁ । ତୁମେ ଆଜିଯାଏଁ କେଉଁଠି କାମ କରୁଥିଲ ?" ସାଓ ପଚାରିଲା ।

"କାନ୍-ଥୋରେ ; ମୁଁ ୧୯୬୪ରୁ କାନ୍-ଥୋରେ ଥିଲି ।"

"ଓଃ, କାନ୍-ଥୋ, ୧୯୬୪ ? ସେଇଥିପାଇଁ ତୁମ ଖବର ମୁଁ କିଛି ପାଇନାହିଁ ।"

ପୁଣି ତା' ସବୁ ଛୋଟମୁହଁକୁ ସିଧାଚାହିଁ ସାଓ ପଚାରିଲା, "ତମର ଅଙ୍କଲ ତାମଖୋଇ କଥା ମନେଅଛି ?"

"ହଁ", କେମିତି ମିଏଁ ଭୁଲିପାରିବ ତାମଖୋଇକୁ, ଯିଏ ସେ ଦୁହିଁଙ୍କୁ ଏକାଠି କରାଇଥିଲେ ।

"ଅଙ୍କଲ ତାମ ଶତ୍ରୁ ହାତରେ ନିହତ ହେବା କଥା ଜାଣିଛ ?"

"ଓଃ, କେବେ ଏପରି ଘଟିଲା ?"

"୧୯୬୩ରେ, ଦିଏଁ ପତନର ପ୍ରାୟ ମାସକ ଆଗରୁ ।"

"ହେ ପ୍ରଭୁ ! ସେ ଏତେ ଭଲଲୋକ ଥିଲେ, ତାଙ୍କ ଭଳି ଲୋକର ନିଧନ ... କି ଭୟଙ୍କର କଥା !"

"ତମର ମା' ନାମ୍ କଥା ମନେଅଛି ? ତାଙ୍କର ଗୋଟେ ପୁଅ ଥିଲା ହୁନାଇ, ସିଏ ୧୯୫୫ରେ ଉତ୍ତରକୁ ପଳାଇଥିଲା ।"

"ହଁ", ମିଏଁ ଉତ୍ତରଦେଲା । ତା' ଓଠରେ ସେଇ 'ହିଁ'ଟି କେତେ ସୁନ୍ଦର ଶୁଭୁଥିଲା । ଏଇ ସେଇ ମା' ନାମ୍‌ର ଘର, ଯେଉଁଠି ଉତ୍ ଆଉ ସାଓ କେତେବାର ପରସ୍ପରକୁ ଭେଟିଥିଲେ ।

"ତୁମେ ମା'ନାମକୁ କାହିଁକି ମନେପକାଇଲ ?" ପଚାରିଲା ମିଏଁ ।

"ମୁଁ ଶୁଣିଥିଲି ଯେ ସେ ଚାରିଥର ଗିରଫ ହୋଇ ଜେଲ ଭୋଗିଛନ୍ତି । ଜେଲରେ କୁଆଡ଼େ ତାଙ୍କୁ ପ୍ରବଳ ପିଟାଯାଏ, ଯାହାଫଳରେ ସେ ଏବେ ଛୋଟେଇ ଚାଲୁଛନ୍ତି ।"

ଉତ୍ ମିଏଁ ହଠାତ୍ ମୁଣ୍ଡ ଟେକିଦେଲା ।

"ମୁଁ ବି ଗିରଫ ହୋଇ ତିନିଥର ଜେଲରେ ରହିଛି । ପ୍ରଥମଥର ଛଅମାସ, ଦ୍ୱିତୀୟଥର ଆଠମାସ ... ଆଉ ଶେଷଥର ସବୁଠାରୁ ବେଶୀ ସମୟ ... ପନ୍ଦର ମାସ ... ।"

ତା' ସ୍ୱର ଅସମ୍ଭବ ଶାନ୍ତ ଶୁଭୁଥିଲା, ଗୋଟେ ରମଣୀର ଶାନ୍ତଭାବ, ଯିଏ ସବୁ ଆଶା ଛାଡ଼ିଦେଇଛି, ଯିଏ କୌଣସି ପ୍ରାପ୍ତିକୁ ଅପେକ୍ଷା କରୁନାହିଁ ଆଉ ନିଜ ଭାଗ୍ୟ ପାଖରେ ନିଜକୁ ସମର୍ପି ଦେଇଛି ।

"ହଁ, ମୁଁ ଶୁଣିଛି ସେ କଥା ।" ସାଓ ଲଙ୍ଗ କହିଲା ।

ସେ ବି ଶାନ୍ତ ରହିବାକୁ ଚେଷ୍ଟା କରୁଥିଲା, ହେଲେ ନିଜର ଆବେଗ ଲୁଚାଇପାରିଲା ନାହିଁ, ତା' ଛାତିତଳ କରୁଣାରେ ଏପରି ତରଳିବା ଆରମ୍ଭ କଲା ଯେ ବଡ଼ପାଟିରେ କାନ୍ଦିବାକୁ ତାର ଇଚ୍ଛା ହେଲା । ନା-ନା, ସେ ଜାଣିନଥିଲା ମିଏଁ ଗିରଫ ହୋଇ ଏତେକାଳ ଜେଲରେ ଥିଲା । ସେ ତ ତା'ଠାରୁ ପନ୍ଦରବର୍ଷକାଳ ବିଚ୍ଛିନ୍ନ ହୋଇ ରହିଥିଲା । ହେଲେ

ତା' ଉଜ୍ଜ୍ୱଳ ଆଖି ଦୁଇଟିକୁ ଅନାଇ, ତା'ର ସ୍ୱଚ୍ଛ କିନ୍ତୁ ସମର୍ପିତପ୍ରାୟ ମୁହଁକୁ ଦେଖି, ପୁରୁଷ ହୋଇ ବି ସେ ବୁଝିପାରିଲା ଯେ ମିଏଁ ତାକୁ ସତ୍ୟ କହିବାକୁ ଚାହୁଁଛି । ସମ୍ପୂର୍ଣ୍ଣ ସତ୍ୟ, ଗୋଟେ ଅଳ୍ପ ବୟସର ଯୁବତୀର ସବୁଠାରୁ ବଡ଼ କ୍ଷତି ବିଷୟରେ । ଆଉ ଦେଖାଯାଉଥିଲା ଯେମିତି ତା' ମନରେ ଭୟ ବି ଅଛି । ସେ ବୋଧେ ଭାବୁଥିଲା ଯେ ସାଓ ତା' ଆସିବାକୁ ଅପେକ୍ଷା କରିଥିଲେ ବି, ସବୁ ସତକଥା ଜାଣିସାରିବା ପରେ ତାକୁ ତ୍ୟାଗ କରିଦେବ ।

ସାଓର ଚାହାଣିରେ ତା'ର ଉତ୍ତର ଥିଲା : "ତୁମେ ଭୁଲ ଭାବୁଛ । ମୋତେ ଚାହଁ, ମୋ ମନରେ ତିଳେ ହେଲେ ଦ୍ୱନ୍ଦ୍ୱ ନାହିଁ । କେବଳ ଯଦି ତୁମେ ... ଯଦି ବିବାହ କରିଥାଅ ବା ବିଧବା ହୋଇଥାଅ ... ଛୁଆପିଲା ..."

ସେ ପୂର୍ବରୁ କହୁଥିବା କଥାକୁ ଫେରିଆସିଲା ।

"ମା'ନାମ ଏବେ ଗକ୍‌ହିଏଁଠାରେ ତାଙ୍କ ଝିଅ-ଜ୍ୱାଇଁଙ୍କ ସହ ରହୁଛନ୍ତି । ମୁଁ ଏବେ ସେଠାକୁ ଯାଇଥିଲି କିନ୍ତୁ ତାଙ୍କୁ ଭେଟିପାରିଲି ନାହିଁ । କାରଣ ସେ ମୋ ରହିବା ଜାଗାଠାରୁ ଦୂରରେ ଥିଲେ ।"

"ତୁମ କଥା ଶୁଣି ମୋର ମା'ନାମ କଥା ବହୁତ ମନେପଡୁଛି । ତମେ କେମିତି ତାଙ୍କୁ ଦେଖାନକରି ଫେରିଆସିଲ ?"

"ମୁଁ ତୁମକୁ ଅପେକ୍ଷା କରିଥିଲି । ଦିନେ ନିଶ୍ଚୟ ତୁମକୁ ନେଇଯିବି, ଆଉ ଆମେ ଦୁହେଁ ତାଙ୍କୁ ଭେଟିବା । ଆମେ ମା'ନାମକୁ ଦେଖିବା, ମା'ବେକୁ ଦେଖିବା ଆଉ ଅଙ୍କଲ ତୁଖୋଇ, ତୁସେନ୍‌କୁ ବି ସାକ୍ଷାତ କରିବା । ସେଇଠି ତ ଆମର ଶେଷ ଦେଖାହୋଇଥିଲା, ମନେ ନାହିଁ ? ଆଉ ସେଇଠି ବି ତୁମେ କହିଲାଗିଥିଲ ଯେ ମୋ ସାଙ୍ଗେ ସମ୍ପର୍କର ଡୋରି ଛିଣ୍ଡାଇଦେବ ।"

"ହଁ", ମିଏଁ ବିଗଳିତ, ବିଚଳିତ ହୋଇ କହିଲା । ସାଓ ଯଦି ବାହା ହୋଇନଥିବ ତାକୁ ସବୁକଥା ସେ କହିଦେବ, କାହିଁକି ସମ୍ପର୍କ ଛିଡ଼ାଇ ଦେବାକୁ ସେ ଚାହିଁଛି, କେତେ ନିର୍ଯାତନା ସେ ଭୋଗିଛି ଆଉ କେତେ କାନ୍ଦିଛି ... ।

ସାଓ ଲଙ୍ଗ ତାକୁ ପ୍ରକୃତିସ୍ଥ କରିବାକୁ କହିଲା : "ତୁମେ ଭାବୁଛ ଆମେ ଆସନ୍ତା ମାସରେ ସେଠାକୁ ଯାଇପାରିବା ?"

"ହଁ", ମିଏଁ ଉତ୍ତରଦେଲା । ତା' ମୁହଁରେ ରଙ୍ଗ ଉକୁଟିଆସିଲା, ଏମିତି ଗୋଲାପୀରଙ୍ଗ ଯାହା ମାଲେରିଆ ପୀଡ଼ିତ ମୁହଁରେ କ୍ୱଚିତ ଦେଖାଯାଏ ।

ସାଓ ଗଭୀର ଭାବରେ ମିଏଁର ଆଖିକୁ ଅନେଇଲା । କ'ଣ ସେ କହୁଛି ? ପୁରୁଷର ହୃଦୟ ଆନନ୍ଦରେ ନାଚିଉଠିଲା ! କେଡ଼େ ଭାଗ୍ୟ ତା'ର ! କେତେ ବଡ଼ ଭାଗ୍ୟ ତା'ର ଯେ ସେଇ ନୀଳ ଜ୍ୟାକେଟ୍ ପିନ୍ଧିଥିବା ଝିଅଟିକୁ ସେ କିଛି କଥା ଦେଇନି

କିମ୍ବା ସେ ହଳଦିଆ ପୋଷାକବାଲୀ, ଯାହାର ଆଖି ଏତେ ନୀଳ ଥିଲା ବା ସେଇ ବାଦାମୀ ରଙ୍ଗର ଗୋଲମୁହିଁ ଝିଅଟି, ଯିଏ ଗୋଟେ ଶାମଦେଶୀ ପରି ଲାଗୁଥିଲା – ସଂକ୍ଷେପରେ, ସେ ଜାଣିନଥିଲା କେଉଁ ଝିଅଟି ଇଏ ଥିଲା ।

*୨୦ ଜୁଲାଇ ୧୯୭୬*

୩

# ଆମ୍ଭେ ଯେବେ ମରିଯାଏ

ଭୁ ବାଓ

ଆମେ ଯେମିତି ଯୋଜନା କରିଥିଲୁ, ସେମିତି ଯଦି ଘଟଣାମାନ ଘଟିଯାଇଥାନ୍ତା, ତାହେଲେ ଚେ-ପୋଷ୍ଟ ବିରୁଦ୍ଧରେ ସେବର୍ଷର ଯୁଦ୍ଧ ବିଷୟରେ ମୋର ଏବେ ଲେଖିବାର କିଛି ନଥାନ୍ତା ।

କମାଣ୍ଡ ଅଫିସରମାନଙ୍କ ପ୍ରତ୍ୟକ୍ଷ ତଥା ନିବିଡ଼ ତତ୍ତ୍ୱାବଧାନରେ ବହୁ କଷ୍ଟ ସ୍ୱୀକାର ପୂର୍ବକ ଏକଦମ ସଠିକ ଯୋଜନାର ସବିଶେଷ ନକ୍‌ସା ତିଆରି ହୋଇଥିଲା । ଶତ୍ରୁ ଶିବିରରେ ଜଗୁଆଳିମାନଙ୍କ ଜଗିବା ସମୟର ଅବଧି, ଜଗୁଆଳି ବଦଳିବାବେଳ, ଶତ୍ରୁର ପ୍ରକୃତି, ଶକ୍ତିର ଗଭୀରତା, ଅସ୍ତ୍ରଶସ୍ତ୍ର ପରିମାଣ ବିଷୟରେ ପ୍ରତିଦିନ ନୂତନ ଗୁପ୍ତ ରିପୋର୍ଟ ମିଳୁଥିଲା । ଚେ-ପୋଷ୍ଟର ଆତ୍ମରକ୍ଷାର ରୂପରେଖ ଦେଖାଉଥିବା ଚିତ୍ର ବାରମ୍ୱାର ଅଙ୍କିତ ହୋଇ, ପୁନଃ ଅଙ୍କିତ ହେଉଥିଲା । ଶେଷରେ ଅଙ୍କାଅଙ୍କି ଏତେ ବେଶୀ ଥର ହୋଇଗଲା ଯେ ଏହା ଗୋଟେ ପ୍ରକାର ସମ୍ପୂର୍ଣ୍ଣ ନିର୍ଭୁଲ ଅବସ୍ଥାକୁ ଆସିଗଲା । ପ୍ରତିଟି ଶତ୍ରୁକୁ ଶିକାର କରିବାର ପ୍ରତିଟି ସ୍ଥାନକୁ ଗୁପ୍ତଚର ପଠାଇ ତଦାରଖ କରାଗଲା ଓ ରେଖାଚିତ୍ର ଉପରେ ଅଲଗା ଚିହ୍ନଦେଇ ଚିହ୍ନିତ କରିଦିଆଗଲା । ବିଜୟକୁ ଆଉ ଅଧିକ ସୁନିଶ୍ଚିତ କରାଯାଇପାରିନଥାନ୍ତା ।

ହେଲେ ଯୁଦ୍ଧ ତ ଏପରି ଗୋଟାଏ ଖେଳ ନୁହେଁ ଯେଉଁଥିରେ ଗୋଟେପକ୍ଷ ଗୁଳି ମାରିଚାଲିଥିବ ଆଉ ଗୋଟେପକ୍ଷ ଗୁଳି ଖାଇଚାଲିଥିବ । ଚେ-ପୋଷ୍ଟର ଦାୟିତ୍ୱରେ ଥିବା ମେଜର ଥିଲା ଗୋଟେ ପୁରୁଣା, ଅଭିଜ୍ଞ, ଧୂର୍ତ୍ତ ଯୁଦ୍ଧ-ଶିଆଳ । ସେ ଜାଣିଥିଲା କିପରି ନିଜର ସବୁଠାରୁ ମୂଲ୍ୟବାନ ସମ୍ୱଳ ଲୁଚାଇବାକୁ ହୁଏ । ଶତ୍ରୁକୁ ଠାବ କରିବା ଆଉ ସାମରିକ ପର୍ଯ୍ୟବେକ୍ଷଣ ନିମନ୍ତେ ଆମେ ଗୁଳିବର୍ଷଣ କରି ଯଥେଷ୍ଟ ଉସୁକେଇବାକୁ ଚେଷ୍ଟା କରିଥିଲୁ । ହେଲେ ସେସବୁକୁ ଅଣଦେଖା କରି ଦୁଇଟା ଶକ୍ତିଶାଳୀ, ଓଜନଦାର ମେସିନଗନ ଚୁପଚାପ କମାଣ୍ଡ ବଙ୍କର (ସୁଡ଼ଙ୍ଗ) ରନ୍ଧ୍ରରେ ଶତ୍ରୁମୁହାଁ କରି ଲୁଚାଇ ରଖିଥିଲା । ଆମ ଦଳ ତାରବାଡ଼ ଭେଦି, କାଟି, ଶତ୍ରୁ ପରିସରର ମଧ୍ୟସ୍ଥଳରେ ଗୋଟେ

ଇଂରାଜୀ 'ଭି' (V) ଆକୃତି ଧାଡ଼ିରେ ନପହଞ୍ଚିଲା ଯାଏଁ ସେ ମେସିନଗନ୍ ଦୁଇଟି ନିଜର ସଣ୍ଢୁଆଶି ପାଟିରେ ଆମକୁ ଧରିନେବା ପାଇଁ ଖୋଲିନଥିଲା ।

ଆମ ଆକ୍ରମଣ ସ୍ତବ୍ଧ ହୋଇ ବନ୍ଦ ହୋଇଗଲା । ଆମ ପଦାତିକବାହିନୀ ମାଟି ସହିତ ସମାନ ହୋଇ ଲାଖିଗଲେ, ସମସ୍ତଙ୍କ ପେଟ ମାଟି ସହିତ ଲାଗିରହିଥାଏ, କେହି ଜଣେ ବି ମୁଣ୍ଡ ଉଠାଇବାକୁ ସାହସ କରୁନଥାନ୍ତି । ସବୁଠାରୁ ଅଲୌକିକ କଥାଟି ଥିଲା ଏୟା ଯେ ଆମେ ଧୂଳି-ନିଃଶ୍ୱାସ ନନେଇ ଆମ ମଥା ଓ ଅଙ୍ଗ-ପ୍ରତ୍ୟଙ୍ଗ ତଥାପି ଠିକ୍‌ଠାକ୍ ରଖିପାରିଥିଲୁ ।

ଲଢ଼େଇ ଯୋଜନାବେଳେ ଏତାଦୃଶ ଘଟଣାର ଅନୁମାନ କରାଯାଇ ପାରିନଥିଲା, ଆଉ ଏବେ କମାଣ୍ଡର କୌଣସି ପ୍ରତିକ୍ରିୟା ଦେଖାଇ ପାରୁନଥିଲେ । ସାଧାରଣତଃ ଥରେ ସେନାନୀ କାମରେ ଲାଗିଗଲେ, ଉପରିସ୍ଥମାନେ ଡକାଡକି ହୋଇ ତତ୍‌କ୍ଷଣାତ୍ ପରାମର୍ଶ, ଆଲୋଚନା, ଧାରଣାର ଆଦାନ ପ୍ରଦାନ କରନ୍ତି ଓ ସମୟୋପଯୋଗୀ ନିଷ୍ପତ୍ତି ସେଇଠାରେ ନିଅନ୍ତି । ହେଲେ ଏଥର, ପଦାତିକବାହିନୀର କମାଣ୍ଡର, ଲୁଅତ୍, ଆମ ସମ୍ମୁଖ ଦଳରେ ରହିଯାଇଥିଲେ ଆଉ କମିଶନର୍ ଥିଲେ ପଶ୍ଚାତବାହିନୀ ଦାୟିତ୍ୱରେ, ଡେପୁଟୀ କମିଶନର ବ୍ୟସ୍ତ ଥିଲେ ଆହତମାନଙ୍କୁ ତାରବାଡ଼ ଆରପଟକୁ ବୋହି ନେବାରେ ସାହାଯ୍ୟ କରିବା ଓ ପଟିବନ୍ଧା କାମରେ । ନିଜ ରିଭଲଭରଟି ବାହାର କରି କମିଶନର ଶୂନ୍ୟକୁ ଗୁଳିମାରି, ଆଗକୁ ଡେଇଁପଡ଼ି ଚିତ୍କାର କଲେ, ସାଥୀଗଣ, ଆଗେଇ ଚାଲ ... ।"

ତାଙ୍କ ଆଦେଶ ଗୋଟେ ଗୁଳି ଆଘାତରେ ଅଧା ରହିଗଲା ।

ଲୁଅତ୍ ନଇଁପଡ଼ି ଗୁରୁଣ୍ଡି ଗୁରୁଣ୍ଡି ଧାଡ଼ିରୁ ବାହାରି ଆସି ନିଜ ଥୋଡ଼ିଟାକୁ ଗୁଳିମାରିବାର ନିର୍ଦ୍ଦିଷ୍ଟ ଜାଗା ଆଡ଼କୁ ଉଠାଇଦେଲେ, ଅର୍ଥାତ୍ ଏଇ ବାମଦିଗରେ ବାହାରିଯାଅ, ଦକ୍ଷିଣପାର୍ଶ୍ୱ ମୋ ପାଇଁ ଛାଡ଼ିଦିଅ ।

ଆମେ ସମ୍ମୁଖବାହିନୀକୁ ତ 'ଭି' (V) ଆକାରରେ ଦୁଇଭାଗ କରି ଧାଡ଼ିକରି ଦେଇଥିଲୁ । ଅଧାସେନା ଲୁଅତ୍ ସାଥିରେ ପେଟେଇ ପେଟେଇ ଚାଲିଲେ, ବାକି ଅଧକ ମୋ ସାଥିରେ । କେବଳ ଭୀନ୍ ତା ଜାଗାରେ ସେଇମିତି ପେଟେଇ ପଡ଼ିରହିଲା ।

ମୁଁ ଗୁରୁଣ୍ଡି, ପେଟେଇ ତା ପାଖକୁ ଫେରିଆସିଲି ।

"କ'ଣ ହୋଇଛି ।"

ଭୀନ୍‌ର ସ୍ୱରରେ ଥିଲା ଭୟାନକ କ୍ଲାନ୍ତି । "କେମିତି ଆମେ ଆଗେଇପାରିବା ? ଗୁଳି ତ ବର୍ଷା ପରି ବର୍ଷୁଛି ।"

"ତୁମେ କ'ଣ ଏଇଠି ଏମିତି ଶୋଇ ମୃତ୍ୟୁକୁ ଅପେକ୍ଷା କରିବ ?"

"ମୃତ୍ୟୁ ସେଠାରେ ବି ଅପେକ୍ଷା କରିଛି ।"

ଆମ ଉପରେ ଗୁଳି ବର୍ଷୁଥିବା ଅବସ୍ଥାରେ, ଏଠାରେ ଗୋଟେ ଭୀରୁକୁ ସାହସୀ

ସୈନିକରେ ବଦଳାଇବାର ସମୟ ବା ସ୍ଥାନ ଆଦୌ ନଥିଲା । ମୁଁ ଚିତ୍କାର କଲି : "ଦିଅ ତୁମର ଗୁଳିଭରା ବେଲ୍‌ଟ ଆଉ ଗ୍ରେନେଡ୍ ।"

"ତାହେଲେ ମୁଁ ଶତ୍ରୁର ବିପରୀତ ଆକ୍ରମଣରେ ମରିଯିବି ।"

ମୋ ରକ୍ତ ଫୁଟୁଥିଲା । ତା' ହାତରୁ ସବ୍‌ମେସିନ୍ ଛଡ଼ାଇନେଲି । "ମତେ ଆଗେଇବାକୁ ହେବ । ବାହିନୀର ଏଇ ପତାକାଟିକୁ ଧରି ଏଇଠି ଥା' ।"

ଗୁଳିବର୍ଷା ତଳେ, ଗୁରୁଣ୍ଡି ଗୁରୁଣ୍ଡି ମୁଁ ଆଗେଇଲି ବନ୍ଧୁକନଳି ମୁହଁରୁ ବାହାରୁଥିବା ଅଗ୍ନି ଉପରେ ନଜର ସ୍ଥିର ରଖି । ହଠାତ୍ ବଙ୍କର୍ ରନ୍ଧ୍ରରୁ ଆମ ଉପରେ ବର୍ଷୁଥିବା ଗୁଳିମାଡ଼ ବନ୍ଦ ହୋଇଗଲା । ତାପରେ ଫାଙ୍କା ଜାଗା ଦେଖି ମୁଁ ମୋ ରାଇଫଲଟାକୁ ଆଗକୁ ମୁହାଁଇଦେଇ ଗୁଳି ବିଛାଇ ଚାଲିଲି । ପୂରା ଶେଷ ଗୁଳିଟି ସରିଲାଯାଏ, ସାରା ଅଞ୍ଚଳକୁ ଖେଦିଗଲା ଗୁଳି ।

ଚାରିପଟୁ ଆନନ୍ଦ ଲହରୀ ଧ୍ୱନିତ ହେଲା । ଚତୁର୍ଥବାହିନୀ ପଶିସାରିଥିଲା ମୂଳକାର୍ଯ୍ୟାଳୟକୁ ଭିତରକୁ । ହେଲେ ତାହାପରେ ଯାହା ଘଟିଲା ତାହା ଥିଲା ଆମର କଠିନତମ ସଂଗ୍ରାମ । ତାଙ୍କ ଦୁର୍ଗ ପାଖରେ ଆମେ ଗୋଟିଏ ପରେ ଗୋଟିଏ ସୁରକ୍ଷିତ ଜାଗାକୁ ଦୌଡ଼ିଯାଇ ନିଜର ମାନସିକ ତଥା ନୈତିକ ଶକ୍ତି ବଜାୟ ରଖିବାକୁ ଆପ୍ରାଣ ଉଦ୍ୟମ କରୁଥାଉ । ସେମାନଙ୍କ ମୁଖ୍ୟ କାର୍ଯ୍ୟାଳୟଟି ଉଡ଼େଇଦେବାକୁ ଆମେ ସମର୍ଥ ହେଲାବେଳକୁ ଆଉ ରାତି ନଥିଲା, ସକାଳ ହୋଇଆସୁଥିଲା ।

ପରେ ବାଟାଲିୟନ କମାଣ୍ଡର ଆମ ଆଡ଼କୁ ଦୌଡ଼ି ଆସିଲେ, "ଜଲ୍‌ଦି, ଜଲ୍‌ଦି ଖାଦ୍ୟ, ରେସନ, ଅସ୍ତ୍ରଶସ୍ତ୍ର ଯାହା ପାରୁଛ ନେଇଆସ । ସକାଳ ହୋଇଆସୁଛି, ଯଦି ଶତ୍ରୁପକ୍ଷର ଦୂରବାହୀ କମାଣରୁ ଗୁଳିବର୍ଷିବା ଆରମ୍ଭ ହୋଇଯିବ, ତାହେଲେ ନିଜକୁ କେଉଁ ସ୍ଥାନରେ ପାଇବ ଜାଣିଛ ତ ?"

ପଛକୁ ବୁଲିପଡ଼ି ଦେଖିଲି, ଭୀନ୍ ପାଖରେ ଠିଆ ହୋଇଛି । ତା ବାମପଟ ପ୍ୟାଣ୍ଟର ଗୋଡ଼ ଅଠା ପରି ତା' ଜଙ୍ଘରେ ଲାଖିଯାଇଛି । ମୁଁ ମୋ ବେଲ୍‌ଟ ଭିତରେ ଗୁଞ୍ଜିଥିବା ବ୍ୟାଣ୍ଡେଜଟି କାଢ଼ି ଚିରିଦେଲି । ଲୁଓତ ମୋ ହାତ ଧରି ପକାଇଲେ, "ବ୍ୟସ୍ତ ହୁଅ ନାହିଁ । ସେ କେବଳ ଡରରେ ମୂତି ପକେଇ ନିଜକୁ କଳୁଷିତ କରିପକାଇଛି ।"

ଚେ-ପୋଷ୍ଟରୁ ଚାରିକିଲୋମିଟର ଦୂର ନୟଗାଁକୁ ଆମେ ଫେରିଆସିଲୁ । ଆଞ୍ଚଳିକରକ୍ଷୀମାନଙ୍କ ଦ୍ୱାରା ଆକାଶରୁ ଅତର୍କିତ ଆକ୍ରମଣର ମୁକାବିଲା ପାଇଁ ଆଶ୍ରୟସ୍ଥଳ, ଟ୍ରେଞ୍ଚ ଖୋଳାସରିଥିଲା । ଆକ୍ରମଣବେଳେ ଯେଉଁ ଦଳଟି ରିଜର୍ଭରେ ଥିଲେ ସେମାନେ ଏବେ ଛୋଟ ଗାଁଟିର ସୀମା ଜଗିବାକୁ ପଠାହେଲେ । ଆଉ ଗାଁର ଘରେ ଘରେ ବଡ଼ ବଡ଼ କଡ଼େଇ ବସି କୁକୁଡ଼ା ମାଂସ ରନ୍ଧା ହେଉଥିଲା ଆମପାଇଁ । ହେଲେ ସାରା ରାତିର ଗୁଳିଚାଳନା, ଗୁରୁଣ୍ଡାଗୁରୁଣ୍ଡି ଆଉ ପଙ୍କରେ ଗଡ଼ିବା ପରେ ସାମାନ୍ୟ କିଛି ଆମେ

ଖାଇପାରିଲୁ । ଖାଇବାଠାରୁ ଶୋଇପଡ଼ିବା ଭଲ । ନଡ଼ା ଗଦି ଉପରେ ଗଡ଼ିପଡ଼ିଲା ପରେ, ଆମେ ଜାଣି ବି ପାରିଲୁ ନାହିଁ ଆମ ଉପରେ ଆକାଶ ଥିଲା ନା ତଳେ ଧରିତ୍ରୀ ।

ହଠାତ୍ କେହି ଜଣେ ମତେ ଟାଣି ଠିଆ କରେଇଦେଲା । ତଥାପି ନିଦ ମଳମଳ ଆଖିରେ କିଛି ଦେଖିପାରୁନଥିଲେ ବି କାନରେ ପଡ଼ିଲା ଲୁଓତର ଆଦେଶ – 'ଶୀଘ୍ର ଦଳକୁ ପୂରା ୟୁନିଫର୍ମ ଆଉ ଅସ୍ତ୍ରସଜ୍ଜିତ କରାଇ ପ୍ରସ୍ତୁତ ହୋଇଯାଅ । ସମସ୍ତଙ୍କୁ ସାଥିରେ ଧରି ସେନାହେଡ଼କ୍ୱାଟର୍ସକୁ ଆସ–ସେଠାରେ ତୁମପାଇଁ ନୂଆ କାମଟିଏ ଅପେକ୍ଷା କରୁଛି ।''

''ୟେସ୍ କମାଣ୍ଡର ।''

ହେଡ଼କ୍ୱାଟର୍ସରେ ପହଞ୍ଚିଲାବେଳକୁ ଦଳପତି କହିଲେ ଯେ ଗୋଟେ ବିଦେଶୀ ସାଥୀ ଆମ ଉପରେ ଡକୁମେଣ୍ଟାରୀ ଫିଲ୍ମ ସୁଟିଂ କରିବାକୁ ଆସିଛି । ଏବେ ଯେହେତୁ ଯୁଦ୍ଧ ସରିଯାଇଛି, ତାରି ପାଇଁ ଅନ୍ତତଃ ଆମେ ଆଉ ଥରେ ଯୁଦ୍ଧକରି ଦେଖାଇବା ଦରକାର । କ୍ୟାମେରାରେ ତାର ଯେଉଁ ପ୍ରଥମ ଫଟୋଟି ଉତ୍ତଳିତ ହେବ ତାହା ଚେ–ପୋଷ୍ଟର ଉପରେ ଆମ ପଦାତିକବାହିନୀର ପତାକା ଉଡୁଥିବାର ହେବ ।

ମୁହୂର୍ତ୍ତକ ପାଇଁ ମୁଁ ବୋକାଙ୍କ ପରି ଠିଆହୋଇ ରହିଲି । ''କମାଣ୍ଡର, ଯୁଦ୍ଧପରେ ପରେ ତ ଆମେ କ୍ଷୁଦ୍ଧକ୍ଷେତ୍ରରୁ ଶୃଙ୍ଖଳିତ ହୋଇ ତତ୍‌କ୍ଷଣାତ୍ ଏଠାକୁ ଫେରିଆସିଲୁ । ସେଠାରେ ପତାକା ଉଡ଼ାଇବାକୁ ଆମର ସମୟ ନଥିଲା ।''

''ତାହେଲେ ବର୍ତ୍ତମାନ ତୁମେ ଗୋଟେ ଉଡ଼ାଇବ ।''

''ସାର୍, ଆମପାଖରେ ତ ପତାକା ନାହିଁ ।''

''କ'ଣ ତୁମେ କହୁଛ, ଆମ ବିଜୟ ପତାକା କ'ଣ ହେଲା, ଯେଉଁଟା ଯୁଦ୍ଧ କରିବାକୁ ଆସିବା ପୂର୍ବରୁ ତୁମକୁ ରେଜିମେଣ୍ଟ କମାଣ୍ଡର ଦେଇଥିଲେ ? ସେ ତୁମ ସୈନ୍ୟମାନଙ୍କ ଆଗରେ ତୁମକୁ ଏହା ଦେଇନଥିଲେ ? ତୁମେ ତ ୟୁନିଟ୍ କମାଣ୍ଡର ନା ?''

''ସି.ଓ ଯେତେବେଳେ ଆମକୁ ଆଗେଇବାକୁ ଆଦେଶ ଦେଲେ, ପତାକାଟିକୁ ମୁଁ ଭୀନ୍‌କୁ ବଢ଼ାଇ ଦେଇଥିଲି । ବଡ଼ ମେସିନ୍‌ଗନ୍‌ଟି ମୁଁ ବାହାର କଲାପରେ ହିଁ ବାହିନୀ ଆଡ଼କୁ ମାଡ଼ିଗଲେ । ଭୀନ୍ ତାଙ୍କରି ସାଥିରେ ଆସିଲା, କିନ୍ତୁ ସେ ପତାକାଟି ଆଣିବାକୁ ଭୁଲିଗଲା ।''

''ତୁମେ ତାହେଲେ କାହିଁକି ସେଇଟିକୁ ଖୋଜିଲ ନାହିଁ ?''

''ଖୋଜିଥିଲି, କିନ୍ତୁ ପାଇଲି ନାହିଁ । ସେଇ ଜାଗାକୁ ଯେତେବେଳେ ଫେରିଗଲି, ସେଠାରେ ଆଗରୁ ଫୁଟିସାରିଥିବା କେବଳ ତିନୋଟି ଛୋଟ ତୋପ ପଡ଼ିଥିଲା ।''

ଦଳପତି ବୁଲିପଡ଼ିଲେ ପ୍ରେସ–ଲିଆସନ ଅଫିସର ଆଡ଼କୁ ଆଉ ଏହା ବଦଳରେ ତୃତୀୟ ବାହିନୀର ବିଜୟ ପତାକା ନେଇଆସିବାକୁ କହିଲେ ।

ଏବେ ଭୀନ୍ ଉପରକୁ ଆସନ୍ତୁ, ତାର ସୌଭାଗ୍ୟ ଥିଲା ଯେ ସେ କର୍ମକର୍ତ୍ତା –

ରେଜିମେଣ୍ଟ ମୁଖ୍ୟଙ୍କୁ ଝିଆରୀକୁ ବିବାହ କରିଥିଲା । ତେଣୁ ଦଳପତି ତା କାର୍ଯ୍ୟକଳାପକୁ ନଦେଖିଲା ପରି ରହିଯିବାକୁ ସ୍ଥିର କରିଥିଲେ ।

ବିଦେଶୀ ସାଥୀଜଣକ ଆମକୁ ଆମ ଦଳୀୟ ହେଡ଼କ୍ୱାଟର୍ସରେ ଅପେକ୍ଷା କରୁଥିଲେ । ହସି ହସି ସେ ଆମ ସାଥିରେ ହାତ ମିଳାଇଲେ, "ଭିଏତନାମର ଜୟ ହେଉ ! ଓଃ, ତୁମମାନଙ୍କ ପାଇଁ ମୁଁ ଗର୍ବିତ ।" ସେ କହୁଥିଲେ ଭିଏତ୍‌ନାମୀ ଭାଷାରେ ।

ଆମେ ଜୋର୍‌ରେ ହସି ପକାଇବା ଭୟରେ ଓଠ ଚାପିଦେଲୁ ।

ପତାକା ଉତ୍ତୋଳନର ପୁନଃ–ବ୍ୟାଖ୍ୟାନ ପ୍ରକ୍ରିୟା ଏତେ ସହଜ ନଥିଲା । ମେସିନ୍‌ଗନ୍‌ବାହିନୀ ନିଜକୁ ସଜାଇନେଲେ ବାହ୍ୟ–ସୀମା ପାଖରେ । ଓଜନଦାର କମାଣବାହିନୀ ଆକାଶୀ ଆକ୍ରମଣ ଉପରେ ନଜର ରଖିବାକୁ ଚାରୋଟି ପର୍ଯ୍ୟବେକ୍ଷଣ ଖୁଣ୍ଟି ପୋତିଦେଇଥାନ୍ତି । ଗୋଟେ ପଦାତିକବାହିନୀ ଚେ–ପୋଷ୍ଟର ଭିତରେ ପ୍ରସ୍ତୁତ ଥାଆନ୍ତି କାଳେ ଶତ୍ରୁପକ୍ଷର କେଉଁ ପାରାଚୁଟବାହିନୀ ଆମ ଉପରେ ଲମ୍ଫ ପ୍ରଦାନ କରିବେ । ଆଉ ଆମ ବାହିନୀଟି, ବିଦେଶୀ ସାଥୀଙ୍କ ନିର୍ଦ୍ଦେଶନାରେ ମୁଖ୍ୟବଙ୍କର ଧ୍ୱଂସକାର୍ଯ୍ୟର ପୁନଃ–ଅଭିନୟ ଦାୟିତ୍ୱ ନେଇଥାଆନ୍ତି । ଦୁର୍ଯୋଗକୁ ଯେତେବେଳେ ଗଦାହୋଇଥିବା ବିସ୍ଫୋରକ ଦ୍ରବ୍ୟତକ ଫୁଟାହେଲା, ବଙ୍କରରୁ ଗୋଟେ ସିମେଣ୍ଟ କଂକ୍ରିଟ ଖଣ୍ଡ ଛିଟିକି ଆସି ମୋ ଆଣ୍ଠୁରେ ଗଳିଗଲା, ମୁଁ ଭୂଇଁ ଉପରେ ଟଳିପଡ଼ିଲି । ତତ୍‌କ୍ଷଣାତ୍ ଡେଇଁପଡ଼ି ଉଠିବାକୁ ମୁଁ ଚେଷ୍ଟାକଲି, ହେଲେ ଠିଆ ହୋଇପାରିଲି ନାହିଁ । ଡାକ୍ତର ଜଣେ ମତେ ଧରି ସେଠାରୁ ନେଇଗଲେ ଆଉ ବ୍ୟାଣ୍ଡେଜ ବାନ୍ଧି ମୋ ରକ୍ତବୁହା ବନ୍ଦ କରିଦେଲେ । କିନ୍ତୁ ପରବର୍ତ୍ତୀ ଦୃଶ୍ୟରେ ଅଭିନୟ କରିବା ପାଇଁ ମୋର ଆଉ ବଳ ନଥିଲା ।

ଲୁଓତ ବିଦେଶୀ ସାଥୀଙ୍କୁ ପଚାରିଲେ : "ଡାଇରେକ୍ଟର, ଅନ୍ୟ କେଉଁ ସୈନ୍ୟଙ୍କୁ ପତାକାଉତ୍ତୋଳନ ପାଇଁ ବାଛିବାକୁ ଚାହିଁବେ କି ?" ବିଦେଶୀ ସାଥୀ ମଥା ହଲେଇ ଆମ ଧାଡ଼ି କଡ଼େକଡ଼େ ଆମକୁ ଜଣଜଣ କରି ଅନାଇ ଚାଲିଗଲେ । ବୁଲିପଡ଼ି ପୁଣିଥରେ ସାମ୍ନାରୁ ପଛକୁ ଫେରିଆସୁଥିବାବେଳେ ଭୀନ୍ ଆଗରେ ଅଟକିଗଲେ ଆଉ ତା' ଛାତି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ :

"ଠିକ୍ ଅଛି, ଏଇ ସୈନିକଟି ପତାକାଧାରୀ ହେଉ ।"

ଆମେ ପୁନଃ ଅଭିନୟ ଆରମ୍ଭ କରିବା ପୂର୍ବରୁ ଦଳପତି ଅନେଶତ ଥର ପୁନରାବୃତ୍ତି କରିସାରିଥିଲେ, ଏହି ଚଳଚ୍ଚିତ୍ର ନିର୍ମାଣ କେତେ ଗୁରୁତ୍ୱପୂର୍ଣ୍ଣ ଥିଲା, କିପରି ଏହା ସାରାବିଶ୍ୱର ପ୍ରତିଟି ଅଞ୍ଚଳରେ ଦେଖାଇ ଦିଆଯିବ । ନିର୍ଦ୍ଦେଶକଙ୍କ ମନରେ ଯାହା ବି ଧାରଣା ଅଛି ସେସବୁକୁ ଅକ୍ଷରେଅକ୍ଷରେ ସମସ୍ତେ ସେହିପରି ମାନିବେ ଯେପରି ଯୁଦ୍ଧକ୍ଷେତ୍ରର ଆଦେଶ ।

ଲୁଓତ ନିଜର ହାତ ଉଠାଇଲେ ଯେପରି ବାରଣ କରିବାକୁ ହେଲେ, ପୁଣି ତଳକୁ

ଖସାଇଦେଲେ । ତା ପରଠାରୁ ସେ ତା' ନିଜର ଭୂମିକାଟିକୁ ବି କୌଣସି ଉତ୍ସାହର ସହିତ ଅଭିନୟ କରିପାରିଲା ପରି ଜଣାଗଲା ନାହିଁ ।

ସୁଡ଼ଙ୍ଗ ନିର୍ମାଣକାରୀ ସୈନ୍ୟମାନେ ଖମ୍ଭ ଚାରିପଟେ ଆଠଟି ଗୋଲାକୃତି ବୋମା ଫୁଟାଇଲେ ଓ କାମେରାବାଲାଙ୍କୁ ଧୂଆଁ ଓ ନିଆଁର କୁହେଳି ମଧ୍ୟରେ ଫଟୋ ଉତ୍ତୋଳନ କରିବାକୁ ସୁଯୋଗ ଦେଲେ ।

ତାପରେ ଆସିଲା ପତାକା ଉତ୍ତୋଳନର ଦୃଶ୍ୟାଭିନୟ । ବିଦେଶୀ ସାଥୀର ନିର୍ଦ୍ଦେଶନା ଅନୁସାରେ ଲୁଓତ ନିଜ ରିଭଲଭର ହଲାଇ ହଲାଇ ଆଗକୁ ଡେଇଁପଡ଼ିଲେ, ତାଙ୍କ ପଛେ ପଛେ ଭୀନ ପତାକା ସହିତ ଖୁଣ୍ଟିଟିକୁ ଉଚ୍ଚକୁ ଟେକି ଧରିଲା, ଆଉ ତା ପଛକୁ ସାରାଦଳ । ଅଟକି ଯାଅ ! ତାପରେ – ଆକ୍ସନ !

ଭୀନ୍ କୌଣସି ପ୍ରକାରେ ମୁଖ୍ୟକାର୍ଯ୍ୟାଳୟର ବଙ୍କର ଛାତ ଉପରକୁ ଚଢ଼ିଗଲା ଆଉ ଜୋତା ଗୋଇଠିରେ ଶତ୍ରୁର ପତାକା ଖୁଣ୍ଟକୁ ଗୋଇଠା ମାରି ତଳକୁ ଫିଙ୍ଗିଦେଲା । ଦୁଇଗୋଡ଼କୁ ଦୃଢ଼ଭାବେ ଦୁଇପଟକୁ ପ୍ରସାରି ସେ ଠିଆହେଲା ଆଉ ବିଜୟ ପତାକାଟିକୁ ଧରି ହଲାଇଲା । ଦଳର ବାକି ସୈନ୍ୟମାନେ ଉଭୟପଟୁ ତାକୁ ଜୋର ସମର୍ଥନ କରୁଥାଆନ୍ତି । ସେମାନେ ନିଜ ନିଜର ମେସିନ୍‌ଗନ୍ ଉଠାଇଲେ ଓ ଆନନ୍ଦରେ ଚିତ୍କାର କଲେ ।

ହେଲେ ଏଇ ଦୃଶ୍ୟଟିକୁ ତିନିଥର ସୁଟିଂ କରିବାକୁ ପଡ଼ିଲା କାରଣ ଆମେ ସମସ୍ତେ ଯେପରି ସ୍ଥବିର ହୋଇଯାଇଥିଲୁ ।

ବ୍ୟାଖ୍ୟାକାରୀ ଜରିଆରେ ନିର୍ଦ୍ଦେଶକ ଜଣାଇଦେଲେ ଯେ ଚେ-ପୋଷ୍ଟର ସୁଟିଂ କରିବା ବହୁତ କଷ୍ଟକର କାମ । ଆମେ ଆଉ ଟିକେ କଷ୍ଟକରି ସାରା ଦୁନିଆକୁ ଜଣାଇ ଦେଇପାରିବା କି ଆମ ସେନାନୀର ନୈତିକ ଶକ୍ତି କେତେ ଦୃଢ଼ ?

ଶେଷରେ ସୁଟିଂ ସରିଲା । କ୍ଳାନ୍ତିରେ ଟଳମଳ ହୋଇ ଆମେ କ୍ଷୁଦ୍ର ନୟ ଗ୍ରାମକୁ ଫେରିଆସିଲୁ । ନିଜର ଯନ୍ତ୍ରପାତି ବନ୍ଧାବନ୍ଧି କରିବା ପୂର୍ବରୁ ବିଦେଶୀ କମ୍ରେଡ଼ ଆମ ସହିତ ହାତ ମିଳାଇଲେ ।

"ଭିଏତନାମର ଜୟ ହେଉ ! ତୁମମାନଙ୍କ ପାଇଁ ମୁଁ ଗର୍ବିତ ।"

ଯୁଦ୍ଧ ପରେ ପରେ ପୁଣି ଯୁଦ୍ଧାଭିନୟକୁ ଯିବା ଫଳରେ ସେଇ ଦୃଶ୍ୟ ବାବଦରେ ଭାବିବା ପାଇଁ ଆମ ପାଖରେ ସମୟ ନଥିଲା । ଗୋଟେ ଯୁଦ୍ଧ ପରେ ପରେ ଆମେ ଢେର ଖୁସିଥିଲୁ କେବଳ ଏତିକି ଦେଖି ଯେ ଆମ ସାଥୀମାନେ ନିଜ ମୁଣ୍ଡ, ହାତ, ଗୋଡ଼ ଠିକ୍ ରଖି ଭଲରେ ଫେରିଆସିଥିଲେ । ଯୁଦ୍ଧ ଏବେ ସରିଗଲା ଆଉ ଟିକିଏ ପରେ ଆମେ ଆମ ବନ୍ଧୁକ ଫେରାଇଦେଇ ଫେରିଯିବୁ ଘରକୁ ଆଉ ପେଟପାଟଣା ପାଇଁ ପ୍ରତ୍ୟେକେ କିଛି ନା କିଛି ବୃତ୍ତି ଖୋଜିନେବୁ । ଆମେ ଚେ-ପୋଷ୍ଟରେ ପତାକା ଉତ୍ତୋଳନ କଥା ପୂରା ଭୁଲିଯାଇଥିଲୁ ।

ତାପରେ ଦିନେ, ମୁଁ ସେଲୁନ୍‌ରେ ବସି ଚୁଳ କାଟୁଥାଏ, ଆଉ ସମୟ କଟାଇବା ପାଇଁ ଖବରକାଗଜ ପଢୁଥାଏ, ଗୋଟାଏ ବଡ଼ ବଡ଼ ଅକ୍ଷରର ପ୍ରଥମ ପୃଷ୍ଠା ସମ୍ବାଦ ମୋ ଆଗରେ ଦପ ଦପ ଜଳିଉଠିଲା । ସେହି ଡକ୍ୟୁମେଣ୍ଟାରୀ "ଶୋଣିତ ଓ ଅଗ୍ନିର ପଥ" ଚଳଚ୍ଚିତ୍ରର ପ୍ରଥମ ସୋ ଆଜି ଦେଖାଇ ଦିଆହୋଇଛି । "ତୁମପାଇଁ ମୁଁ ଗର୍ବିତ" ଶବ୍ଦଗୁଡ଼ିକ ମୋ ମନରେ ତତ୍‌କ୍ଷଣାତ୍ ଧ୍ୱନିତ ହୋଇଉଠିଲା । ଏଇ ବଡ଼ ବଡ଼ ଅକ୍ଷର ତଳେ ଠିକ୍ ଥିଲା ଭୀନ୍‌ର ଫଟୋ, ଦୁଇପଟକୁ ଗୋଡ଼ ଫାଡ଼ି ସେ ହେଡ଼କ୍ୱାଟର୍ସ ବଙ୍କର ଉପରୁ ହଲାଉଥିଲା ବିଜୟ ପତାକା । ଉଭୟ ପାର୍ଶ୍ୱରୁ ଅଭିନନ୍ଦିତ ହୋଇଥିଲା ମୋ ସାଥୀମାନଙ୍କ ସବମେସିନଗନ୍ ଉତ୍ତୋଳନ ଓ ସେମାନଙ୍କ ଉଲ୍ଲସିତ ଚିତ୍କାର ଦ୍ୱାରା ।

ମୁଁ ଜାଣିଥିଲି ଏହା ଥିଲା ଯୁଦ୍ଧର ପୁନରାଭିନୟ ମାତ୍ର । ତଥାପି ମୋ ଛାତି ଭିତରେ ହୃତ୍‌ପିଣ୍ଡଟି ଜୋର୍ ଧକଧକ ହେବାକୁ ଲାଗିଲା ଯେତେବେଳେ ମୁଁ ସମ୍ବାଦର ଶୀର୍ଷକଟିକୁ ପଢ଼ିଲି – 'ରକ୍ତ ଓ ଅଗ୍ନିର ପଥ' ଚଳଚ୍ଚିତ୍ରର ଏକ ସ୍ଥିର ଛବି : ଚେ–ପୋଷ୍ଟରେ ପତାକା ଉତ୍ତୋଳନ ।

ଏ ବିଷୟରେ କଥାବାର୍ତ୍ତା କରିବା ବି ଅର୍ଥହୀନ । ଯୁଦ୍ଧପରିସ୍ଥିତି ନଥିବାବେଳର ଅଧିକାଂଶ ସୈନ୍ୟଙ୍କ ପରି, ମୋ ଜୀବନ ଦୈନନ୍ଦିନ ସାଂସାରିକ କାର୍ଯ୍ୟରେ ବ୍ୟସ୍ତ ରହିଲା । ଆମ ଭିତରୁ କେହି ବି ଆମ ସୈନ୍ୟବିଭାଗର ସ୍ୱୀକୃତିପତ୍ରକୁ କାନ୍ଥରେ ଲଗାଇ ପ୍ରଦର୍ଶିତ କରୁନଥିଲୁ କିମ୍ବା ପଦକଗୁଡ଼ିକୁ ଛାତିରେ ଲଗାଇ ବୁଲୁ ନଥିଲୁ । ଉତ୍ତମ ଖାଦ୍ୟ ଯୋଗାଡ଼ କରିବାରେ ସମୟ କଟାଇବା ବରଂ ଭଲ । ଯାହାହେଲେ ବି ଏଇ ଚଳଚ୍ଚିତ୍ର ମାମଲା ସବୁବେଳେ ଏଇଭଳି କୌଶଳ, ପ୍ରଚାର ଆଉ ଦୃଷ୍ଟି ଆକର୍ଷଣକାରୀ ବସ୍ତୁରେ ପୂର୍ଣ୍ଣ ଥାଏ । ଯେତେବେଳେ ଆମ ଗ୍ରାମ ସମବାୟ ଘୁଷୁରିଶାଳକୁ ନେଇ ଚଳଚ୍ଚିତ୍ର ହେଉଥିଲା, ସିନେମାବାଲା ଯାଇ ପ୍ରତି ପରିବାରରୁ ସବୁଠାରୁ ବଡ଼ ଘୁଷୁରି ବାଛି ଆଣି ଏକାଠି କରାଇଥିଲେ ଆଉ ଘୁଷୁରି ପାଟିରେ ରସୁଣ ଘଷୁଥିଲେ ଯେମିତି ସେମାନେ ପରସ୍ପରକୁ ନକାମୁଡ଼ିବେ । ଆଉ ଯେତେବେଳେ ସେମାନେ ଆମର ଆଦର୍ଶ ମାଛପୋଖରୀର ସୁଟିଂ କରିବାକୁ ଚାହିଁଥିଲେ ସେତେବେଳେ ତ ସେମାନେ ଝୁଡ଼ି ପୂର୍ଣ୍ଣକରି ବଡ଼ ବଡ଼ ମାଛ ସାଥିରେ ଆଣିଆସିଥିଲେ, ଆଉ ସେଗୁଡ଼ିକୁ ଡଙ୍ଗାରେ ଲଦିଦେଇଥିଲେ, ଫଳରେ ଲାଗୁଥିଲା ଯେମିତି ଜାଲରେ ପୋଖରୀରୁ ମାଛ ଧରାହୋଇ ଡଙ୍ଗାରେ ରହିଛି ।

ଚେ–ପୋଷ୍ଟ ଉପରେ ବିଜୟ କେବଳ ଆମ ବାହିନୀ ପାଇଁ ଗର୍ବର ବିଷୟ ନଥିଲା, ସମଗ୍ର ବାହିନୀ ପାଇଁ ମୁହୂର୍ତ୍ତଟି ଥିଲା ଅବିସ୍ମରଣୀୟ । ଏପରିକି ଡିଭିଜନ କମାଣ୍ଡର ପତାକା ଉତ୍ତୋଳନର ଫଟୋକୁ ଡବଲ ବିଛଣା ଚାଦର ଆକାରରେ ବଡ଼କରି ଡିଭିଜନ ମ୍ୟୁଜିୟମ୍ କାନ୍ଥରେ ଏପଟୁ ସେପଟ ଲଗାଇ ପ୍ରଦର୍ଶିତ କରିଥିଲେ । ପୂର୍ବରୁ ଯୋଜନା କରିଥିବା ଅନୁଭୂତିସମ୍ପନ୍ନ ବୟସ୍କମାନେ ଭଲଭାବେ ଜାଣିଥିଲେ ଯେ ଏହା କେବଳ

ପୁନରାଭିନୟ ଦୃଶ୍ୟ ଥିଲା । ହେଲେ ନୂଆ ଯେଉଁମାନେ ନିଯୁକ୍ତି ପାଇଥିଲେ ସେମାନେ ପ୍ରଶଂସାପୂର୍ଣ୍ଣ ଆଖିରେ ଭୀନ୍‌ର ବିଜୟ ପତାକା ଉଡ଼ାଉଥିବା ଦୃଶ୍ୟକୁ ଦେଖି ଭାବୁଥିଲେ ଯେ ଶତ୍ରୁର ଅଗ୍ନିବର୍ଷା ତଳେ ଯୁଦ୍ଧବେଳର ଫଟୋ ଇଏ ।

ଏକଥା ଅବଶ୍ୟ ମାନିବାକୁ ହେବ ଯେ ସିନେମାର ଏହି ସ୍ଥିର ଚିତ୍ରଟି ଅତ୍ୟନ୍ତ ସୁନ୍ଦର ଥିଲା : ନାଗରିକ ସେନାନୀର ଗୋଟେ ସୈନ୍ୟ ଶତ୍ରୁ ହେଡ଼କ୍ୱାଟର୍ସ ଛାତ ଉପରେ ଅଭିଜାତ ଢଙ୍ଗରେ, ଟିକିଏ ବି କେଉଁଠି ଦାଗ ନଲାଗି ଠିଆ ହୋଇଥିଲା । ଗୋଟେ ଚିତ୍ରକର ଏହି ଫଟୋକୁ ତା ଅଙ୍କନର ମଡ଼େଲକରି ବ୍ୟବହାର କରିଥିଲା ଆଉ ଷ୍ଟାମ୍ପ ଉପରେ ଲଗାଇ ସେନାଦିବସରେ ବାଣ୍ଟିଥିଲା । କ୍ୟାଲେଣ୍ଡରରେ ବି ଏହା ସ୍ଥାନ ପାଇଥିଲା, ଯଦିଓ ବୟସ୍କମାନେ ଏହା ଦେଖିଲା ପରେ ନିଜ ଭିତରେ ଦାନ୍ତ କଡ଼ମଡ଼ କରିଥିଲେ । ଦଳପତି କାନ୍ଧ ହଲାଇ କହିଲେ, ଚିତ୍ରକର ଉପରେ ଏହା ନିର୍ଭର କରେ, କେଉଁ ନିର୍ଦ୍ଦିଷ୍ଟ ଛବି ଓ ପ୍ରତୀକ ସେ ବ୍ୟବହାର କରିବ – ଗୋଟିଏ ଫଟୋରେ ସାରାବାହିନୀକୁ ଆଣିବା ତ ସମ୍ଭବ ନୁହେଁ ।

କୋଡ଼ିଏ ବର୍ଷ ପରେ ...

ଦିନେ ଜଣେ ଚଳଚ୍ଚିତ୍ର ନିର୍ଦ୍ଦେଶକ, ଟି.ଷ୍ଟିଭେନ୍‌ସନ୍ ଆସି ଭିଏତନାମରେ ପହଞ୍ଚିଲେ 'ରକ୍ତ ଓ ଗୋଲାପ' ସିନେମାର ସୁଟିଂ କରିବାକୁ । ଯୁଦ୍ଧବେଳେ ହୋଇଥିବା ସିନେମାଗୁଡ଼ିକର ଛବି ଷ୍ଟୁଡ଼ିଓମାନଙ୍କରେ ଦେଖିସାରି, ସେ ସଂସ୍କୃତି ମନ୍ତ୍ରୀଙ୍କୁ ଅନୁରୋଧ କଲେ ସେହି ଘଟଣାରେ ସମ୍ପୃକ୍ତ ଲୋକମାନଙ୍କ ସହ ତାର ସାକ୍ଷାତର ବ୍ୟବସ୍ଥା କରିଦେବାକୁ, ତାହେଲେ ସେ କିଛି ଦୃଶ୍ୟ କିଣିପାରିବ ।

ମନ୍ତ୍ରୀ ଫୋନ୍ କଲେ ଆର୍ମିର ରାଜନୈତିକ ବିଭାଗକୁ, ରାଜନୈତିକ ବିଭାଗ ଡିଭିଜନକୁ ଫୋନ୍ କଲା । ଏତେବେଳକୁ ପୁରୁଣା କମାଣ୍ଡରମାନେ ଅବସର ନେଇସାରିଲେଣି, ତାଙ୍କ ଜାଗାରେ ଆସିଥିବା ନୂଆ କମାଣ୍ଡରମାନେ ବିଶ୍ୱାସ କରୁଥାନ୍ତି ଯେ ଭୀନ୍ ହିଁ ପ୍ରକୃତରେ ଶତ୍ରୁର ଅଗ୍ନି ଭିତରଦେଇ ଯାଇ ଚେ-ପୋଷ୍ଟରେ ପତାକା ପୋତିଥିଲା । ଡିଭିଜନ କମାଣ୍ଡର ରାଜନୈତିକ ଅଫିସକୁ ଆଦେଶ ଦେଲେ, ଭୀନ୍‌କୁ ଖୋଜି ବାହାର କରି ତୁରନ୍ତ ହେଡ଼କ୍ୱାଟର୍ସକୁ ଆଣି ଷ୍ଟିଭେନ୍‌ସନ୍ ସହ ଭେଟ କରାଅ ।

'ରକ୍ତ ଓ ଗୋଲାପ' ସାରା ଦେଶର ଚଳଚ୍ଚିତ୍ର ପରଦାରେ ଦେଖାଗଲା ।

ଭୀନ୍ ସେଇସବୁକଥା ଷ୍ଟିଭେନ୍‌ସନ୍‌କୁ କହିଥିଲା, ଯାହା ବିଦେଶୀ କମ୍ରେଡ଼ ଦ୍ୱାରା ହୋଇଥିବା ଚଳଚ୍ଚିତ୍ରର ପୁନଃ ଅଭିନୟ ସହିତ ଏକଦମ ମେଳ ଖାଉଥିଲା, ସତେ ଯେପରି ପ୍ରକୃତରେ ଏହିପରି ଘଟିଥିଲା । ସେ ଜାଣିଶୁଣି ଭୁଲିଯାଇଥିଲା ଯେ ଯୁଦ୍ଧବେଳେ ସେ ପଙ୍କରେ ଲୋଟି ପଡ଼ିରହିଥିଲା, ଭୟରେ ଏମିତି ଆତଙ୍କିତ ହୋଇ ପଡ଼ିଥିଲା ଯେ ପ୍ୟାଣ୍ଟରେ ମୂତି ନିଜ ଆତ୍ମାକୁ ବି ମାରା କରିଦେଇଥିଲା ।

ଲୁଓତ ମୋତେ ଭେଟିବାକୁ ଆସିଲେ, କହିଲେ, ‘‘ଭୀନ୍ ନିଶ୍ଚୟ ଧରିନେଇଛି ଯେ ଆମେ ସମସ୍ତେ ମରିଗଲେଣି ।’’

ମୁଁ ତାଙ୍କୁ ସାନ୍ତ୍ୱନା ଦେବାକୁ ଚେଷ୍ଟାକଲି, ‘‘ଘଟଣାର ସତ୍ୟାସତ୍ୟ ଏବେ ଆମ ସୈନ୍ୟମାନଙ୍କ ପାଇଁ କ’ଣ ପାର୍ଥିବ ମଙ୍ଗଳ କରିପାରିବ ?’’

‘‘ଯଦି ଆମ ଆଖି ଆଗରେ ଦେଖିଥିବା ଘଟଣା ଏପରି ବିକୃତ ହୋଇପାରେ, ତାହେଲେ ଶହେ ବା ପଚାଶବର୍ଷ ଆଗରୁ ଘଟିଥିବା ଅନ୍ୟ ଘଟଣାର କ’ଣ ହେଉଥିବ ? କେନ୍ଦ୍ରୀୟ ସମିତିକୁ ମୁଁ ଗୋଟେ ଚିଠି ଲେଖିଛି ଯେ ଚେ-ପୋଷ୍ଟରେ କୌଣସି ପତାକା ଉତ୍ତୋଳନ ହୋଇନାହିଁ । ତୁମେ ଏଥିରେ ଦସ୍ତଖତ କରିବ ?’’

‘‘ଠିକ୍ ଅଛି, ମୁଁ ଦସ୍ତଖତ କରିବି ।’’

‘‘ବହୁତ ଭଲ । ତୁମ ପଦବୀ ବି ଲେଖିଦିଅ, ଆଉ ଆମ ଦଳର ସାଙ୍କେତିକ ଶବ୍ଦ ବି, ପ୍ଲିଜ୍ ।’’

ମୁଁ ସବୁ ଲେଖିଦେଲି । ମାସେ ପରେ ଜାଣିବାକୁ ପାଇଲି ଯେ ଲୁଓତ-ପତ୍ନୀ ସେମାନଙ୍କର ଏକମାତ୍ର ଘୁଷୁରିଟିକୁ ବାଧ୍ୟହେଲେ ବିକ୍ରି କରିଦେବାକୁ କାରଣ ଲୁଓତ ତାଙ୍କ ପୂର୍ବ ସାଥୀମାନଙ୍କ ପାଖକୁ ଯାଇ ସେମାନଙ୍କ ଦସ୍ତଖତ ସଂଗ୍ରହ କରି ଆଣିବାର ଥିଲା । ଯାତ୍ରା ପାଇଁ ଅର୍ଥ ଆସିଥାନ୍ତା କେଉଁଠାରୁ ? ସେ ତାଙ୍କ ଚିଠିର ଶହ ଶହ କପି କରି ଉପଯୁକ୍ତ ପ୍ରତିନିଧିକାର୍ଯ୍ୟାଳୟକୁ ପଠାଇଦେଲେ ।

ଏହି ଘଟଣାରେ ସମଗ୍ର ଡିଭିଜନରେ ହଇଚଇ ଖେଳିଗଲା, ହେଲେ କେହି ଡିଭିଜନ ମ୍ୟୁଜିୟମ୍‌ରେ ଲାଗିଥିବା ବିରାଟ ଫଟୋଟିକୁ କାଢ଼ି ଦେବାକୁ ସାହସ କରିପାରିନଥିଲେ । ଆଉ କେହି ବି ସାହସ କରିପାରିନଥିଲେ ଲକ୍ଷ ଲକ୍ଷ ଷ୍ଟାମ୍ପ ଆଉ ହଜାର ହଜାର କ୍ୟାଲେଣ୍ଡର ଫୋପାଡ଼ିଦେବାକୁ ।

ଡିଭିଜନ କମାଣ୍ଡର ଆମ ସମସ୍ତଙ୍କ ସହ ଏକ ବ୍ୟକ୍ତିଗତ ଆଲୋଚନାର ବ୍ୟବସ୍ଥା କଲେ । ସମସ୍ତଙ୍କୁ ଗୋଟେ ବିଭ୍ରାନ୍ତିମୂଳକ ସ୍ଥିତିରେ ନପକାଇବାକୁ ସେ ଆମ ସମସ୍ତଙ୍କୁ ଅନୁରୋଧ କଲେ । ଚେ-ପୋଷ୍ଟ ବିରୁଦ୍ଧରେ ସଂଗ୍ରାମ ଥିଲା ଡିଭିଜନର ଇତିହାସରେ ଏପର୍ଯ୍ୟନ୍ତ ସବୁଠାରୁ ବଡ଼ ସଂଗ୍ରାମ ; ଏହା ଥିଲା ସମଗ୍ର ଦଳର ଗୌରବ ଓ ଗର୍ବ । ସାଙ୍ଗେ ସାଙ୍ଗେ ଅବଶ୍ୟ ସେହି ଫଟୋଟିକୁ ସେଇ ଜାଗାରେ ଟଙ୍ଗାଇଦେବେ ।

ହେଲେ ମୁଁ ନିଶ୍ଚିତ ଥିଲି ଯେ ସେଠାରେ ଟଙ୍ଗାଇବାକୁ ଗୋଟାଏ ଉପଯୁକ୍ତ ଫଟୋ ମିଳିବ ନାହିଁ, ଆଗାମୀ ଶହେବର୍ଷ ଭିତରେ ବି ନୁହେଁ ।

ଦିନେ ଲୁଓତଙ୍କ ପୁଅ ଦୌଡ଼ି ଦୌଡ଼ି ଆମ ଘରକୁ ଆସିଲା ।

‘‘ମଉସା, ବାପାଙ୍କ ପେଟ ବହୁତ ଜୋର୍ କାଟୁଛି, କ’ଣ ହୋଇଛି କେଜାଣି । ବାପା ମତେ ପଠାଇଛନ୍ତି ତୁମକୁ ଡାକିନେଇଯିବାକୁ, ଅପରେସନ ଟେବୁଲ ଉପରକୁ

ଯିବାଆଗରୁ ସେ ତୁମକୁ ଦେଖାକରିବାକୁ ଚାହୁଁଛନ୍ତି ।"

ମୁଁ ସାଇକେଲ ଧରି ଦୌଡ଼ିଲି ହସପିଟାଲ ।

ଲୁଓତ ମୋତେ ଖଟଉପରେ ବସିବାକୁ ଇଙ୍ଗିତ ଦେଲେ । ମୋ ହାତଟିକୁ ଜୋର୍ ଚାପିଧରିଲେ ।

"ତୁମେ ଜଣେ ଲେଖକ, ତୁମେ କେବେ ଅର୍ଦ୍ଧସତ୍ୟ ଲେଖିବା ଉଚିତ ନୁହେଁ କିମ୍ବା ଅସତ୍ୟକୁ ସତ୍ୟରେ ବଦଳାଇବା ଉଚିତ ନୁହେଁ । ତୁମେ ଯାହା ଆଖିରେ ଦେଖିଛ ତାହାହିଁ ତୁମକୁ ଲେଖିବାକୁ ହେବ : ଚେ-ପୋଷ୍ଟରେ କୌଣସି ପତାକା ଉତ୍ତୋଳନ ହୋଇନଥିଲା । ଚଟାପଟ ଲେଖ ଆଉ ମତେ ପଢ଼ି ଶୁଣାଅ ।"

"ଏଭଳି ଅଶୁଭ କଥା କୁହ ନାହିଁ । ଗୋଟାଏ ମିଛ ଗୋଟିଏ ଦିନରେ ସଂଶୋଧିତ ହୁଏ ନାହିଁ । ହେଲେ, ବ୍ୟସ୍ତ ହୁଅ ନାହିଁ, ମୁଁ ଏ ବିଷୟରେ ନିଶ୍ଚୟ ଲେଖିବି, ଅବଶ୍ୟ ଲେଖିବି ।"

ଅପରେସନ ସଫଳ ହୋଇଥିଲା । ଲୁଓତ ବଞ୍ଚିଗଲେ । ଭୀନ୍‌ର ପତାକା ହଲାଉଥିବାର ଫଟୋ ଏବେବି ଝୁଲୁଛି ଡିଭିଜନ ମ୍ୟୁଜିୟମରେ । ଏବେ ଅଳ୍ପଦିନ ତଳେ ଷ୍ଟିଭେନ୍‌ସନ୍ ଦ୍ୱାରା ଆମନ୍ତ୍ରିତ ହୋଇ ଭୀନ୍ ଯାଇଥିଲା ନିର୍ଦ୍ଦେଶକଙ୍କ ଦେଶକୁ । 'ରକ୍ତ ଓ ଗୋଲାପ' ଚଳଚ୍ଚିତ୍ର ମୁକ୍ତି ଅବସରରେ ପତାକା ଉତ୍ତୋଳନ ବିଷୟରେ ତାର ସେଠାରେ କିଛି ବକ୍ତବ୍ୟ ଉପସ୍ଥାପିତ କରିବାର ଥିଲା । ଭୀନ୍ ଥିଲା ବାସ୍ତବରେ ଭାଗ୍ୟବାନ୍ । ଯେତେବେଳେ ମୁଁ ତାକୁ ତାର ଗୁଳିଭରା ବେଲ୍‌ଟ ଆଉ ବିସ୍ଫୋରକ ଗୋଳା ଗ୍ରେନେଡ଼ ମାଗିଲି ସେତେବେଳେ ସେ ଯଦି ସେତିକି ଲଜ୍ଜିତ, ଅପମାନିତ ଅନୁଭବ କରିଥାନ୍ତା ତ ଉଠିପଡ଼ି ଦୁର୍ଗ ପ୍ରାଚୀରର ରନ୍ଧ୍ର ଆଡ଼କୁ ସମସ୍ତଙ୍କ ସାଥିରେ ଦୌଡ଼ିଥାନ୍ତା ଆଉ ଏହା ଉପରେ ନିଜ ଦେହ ଲଦି ବନ୍ଦ କରିବାକୁ ଚେଷ୍ଟା କରିଥାନ୍ତା, ଆଉ ଏବେ ଯାଏଁ ବଞ୍ଚିରହି ନଥାନ୍ତା ବିଦେଶୀଙ୍କ ଆଗରେ ନିଜର ବଡ଼େଇ କରିବାକୁ ।

ବିଦେଶରେ କେମିତି ବା ଲୋକେ ଜାଣିବେ ଯେ ଭୀନ୍ ନିଜ ଆତ୍ମାକୁ ବହୁ ଆଗରୁ କଳୁଷିତ କରିସାରିଛି ?

୪

# ଅଧାସିଝା ଛେଳିମାଂସର କରାମତି

ହୋ ଆନ୍ ଥାଇ

ଶେଷରେ ହୋୟ ଗୋଟେ ଟେଲିଭିଜନ କିଣିପାରିଲା, ତାହା ପୁଣି ରଙ୍ଗୀନ ।

ଦିନେ ସଂଧ୍ୟାରେ ତାର ଦୁଇ ଦୁଷ୍ଟ ପୁଅ ତାଙ୍କ ଅଜା ଘରକୁ ବୁଲିଯାଇଥିଲେ ଆଉ ତା ସ୍ତ୍ରୀ ତରତର ହୋଇ ବାହାରୁଥିଲା ତା' ବଡ଼ବାବୁକୁ ଭେଟିବା ପାଇଁ, ବଡ଼ବାବୁ ଥିଲେ ବାଣ୍ଟାକ୍ ସରକାରୀ ହୋଟେଲର ମ୍ୟାନେଜର । ହୋୟ ଆଶ୍ଚର୍ଯ୍ୟ ହେଉଥିଲା, ଆଜିକାଲି ବିବି କାହିଁକି ଏତେ ଘରୁ ବାହାର, ବାହାରୁ ଘର ହେଉଛି । ଦେଶସାରା ଦୁର୍ନୀତି ବିରୋଧୀ ଧରପଗଡ଼ ପୂରା ଦମ୍‌ରେ ଚାଲିଥିଲା, ବୋଧହୁଏ ସେ ଦୁହେଁ କିଛି ଲୁଚାଇବା ଚେଷ୍ଟାରେ ଅଛନ୍ତି । ଘରେ ଏକୁଟିଆ ହୋଇଯିବାରୁ ସେ ଟେଲିଭିଜନ ଲଗାଇଦେଇ ଗୋଟେ ରହସ୍ୟ ଉପନ୍ୟାସ ଧରି ପଢ଼ିବାକୁ ଲାଗିଲା । ହେଲେ ତାର ଅଧାମନ ଥିଲା ବହିରେ ଆଉ କାନ ଟି.ଭି. ଆଡ଼କୁ । ଟିଭି ପର୍ଦ୍ଦାରେ ଗୋଟେ ଫେସନ ସୋ' ଆସିଗଲା ଆଉ ସେ ଆଖି ବୁଲାଇ ନେଲା ବହିରୁ ସୋ' ଆଡ଼କୁ । ମଡ଼େଲଗୁଡ଼ା ବୋଧେ ନୂଆ ଥିଲେ, ସେମାନଙ୍କ ଚାଲି ଅତି ଲୋକଦେଖାଣିଆ, ଅସହଜ ଥିଲା ଆଉ ହାତ ସେମାନଙ୍କର ଢିଲା ହୋଇ ଆଗପଛ ହେଉଥିଲା । କାଠପୁତୁଳି ଅଦୃଶ୍ୟ ସୂତାରେ ଝିଙ୍କି ହୋଇଗଲା ପରି ସେମାନେ ନିଜ ପାଦରେ ନିଜେ ଝୁଣ୍ଟି ବେଢଙ୍ଗିଆ ଚାଲି ଚାଲୁଥିଲେ । ସବାଶେଷ ଝିଅଟି ପିନ୍ଧିଥିଲା ଟୁ ପିସ୍ ବିକିନୀ । ସେ ଅପ୍ରସ୍ତୁତ ହେଲାପରି ଗୋଟେ କାମୋଦ୍ଦୀପକ ଚାହାଣି କ୍ୟାମେରା ଆଡ଼କୁ ପକାଇ, ନିଜ ପିଠି ଦେଖାଇବାକୁ ବୁଲିପଡ଼ିଲା ଆଉ ପୁଣିଥରେ ସିଧା ହୋଇଗଲା । ହଠାତ୍ ଆଗରୁ କେବେ ଘଟିନଥିବା ଘଟଣାଟିଏ ଘଟିଲା । ମଡ଼େଲ ନିଜର ଉପର ଟପ୍‌ଟିକୁ ଟାଣି ତଳେ ପାଦ ପାଖରେ ପକାଇଦେଲା ଆଉ ଘୂରିଚାଲିଲା ଗୋଲାକାରରେ । ହୋୟ ଟିଭି ପର୍ଦ୍ଦାକୁ ଅନେଇ ପାଟିକଲା, ସେ ତାକୁ ସତର୍କ କରାଇଦେବାକୁ ଚାହୁଁଥିଲା ଯେ ସେ ତାର ବାଥ୍‌ରୁମ୍‌ରେ ନାହିଁ । ହେଲେ ସେତେବେଳକୁ ଢେର ବିଳମ୍ବ ହୋଇସାରିଥିଲା । ଝିଅଟି ସେତେବେଳକୁ ପୂରା ପୋଷାକ ଖୋଲି ଆଉ ଗୋଟେ ଜନ୍ମଦିନ ପାର୍ଟି ସୁଟ୍ (ଦୁଇପିସ୍) ପିନ୍ଧି ସାରିଥିଲା । ସମ୍ପୂର୍ଣ୍ଣ ନଗ୍ନତାର ଗୋଟେ ଅନୁକ୍ରମ ଚାଲିଥିଲା ।

ହୋୟ ବିଶ୍ୱାସ କରିପାରୁନଥିଲା ଯେ ଟେଲିଭିଜନ ଏ ଭିତରେ ଏତେ ଅଗ୍ରଗାମୀ ଆଉ ସାହସୀ ହୋଇଯାଇଛି । ହେଲେ ଏହା ଯେହେତୁ ଅବିଶ୍ୱସନୀୟ ଥିଲା, ନିଜକୁ ନିଜେ ସେ କହିଲା, ଏ ବିଷୟରେ ସେ ଅନୁସନ୍ଧାନ କଲାବେଳେ ତାକୁ ବହୁତ ସତର୍କତା ଅବଲମ୍ବନ କରିବାକୁ ପଡ଼ିବ ।

ପରଦିନ ସକାଳେ, ଅଫିସରେ ସମସ୍ତେ ଯେତେବେଳେ ଗୁଲିଖଟିରେ ମସଗୁଲ, ହୋୟ ସାଧାରଣ ଭାବରେ ପଚାରିଲା : "କାଲି ରାତିର ସେ ଟିଭି ପ୍ରୋଗ୍ରାମ ପୂରା ଉତ୍ତେଜକ ଥିଲା ନା ?"

"ବିଲ୍‌କୁଲ୍ ହାସ୍ୟାସ୍ପଦ", ଯୁବକଟିଏ ହୋୟ ଆଡ଼କୁ ଅନେଇ ଗର୍ଜନକଲା, "ଯେତେବେଳେ ବି ଦେଖ, ସେମାନେ ଚୁମ୍ବନ କରିବାକୁ ଠିକ୍ ଗଲାବେଳକୁ, କ୍ୟାମେରା ଯାଇ ଗଛ, ଘର ଉପର କିମ୍ବା ଟ୍ରେନ ଉପରେ ପଡ଼ି ଏ ଦୃଶ୍ୟଠାରୁ ଦୂରରେ ରହୁଛି । ସେପରି ସିନେମା ତ ପେନସନଭୋଗୀ ଆଉ ବୁଢ଼ାମାନଙ୍କ କ୍ଲବ ପାଇଁ ସଞ୍ଚୟ କରି ରଖିବା ଉଚିତ ।"

ଜେନେରାଲ ମ୍ୟାନେଜର ଡିଏଁ ସମସ୍ତଙ୍କୁ ଚୁପ୍ କରାଇ କହିଲା : "ନନ୍‌ସେନ୍ସ, ଆମେ ତ ଏହାର ବିପରୀତ, ସମ୍ପୂର୍ଣ୍ଣ ମୁକ୍ତ ସିନେମା ଭଲପାଉ ଯେଉଁଠି ଝିଅମାନଙ୍କ ଦେହରେ କିଛି ବି ବସ୍ତ୍ର ନଥିବ । ହେଲେ, ଆମେ ବି ଏତେ ମାତ୍ରାରେ ଅନୁଭୂତିସମ୍ପନ୍ନ ଆଉ ସମର୍ପିତ ଯେ ଏଭଳି ସିନେମା ଦେଖି ଚରିତ୍ର ହରାଇବାର ସମ୍ଭାବନା ହିଁ ନାହିଁ ।" ବିଶେଷକରି ଯୁବକଟି ଆଡ଼କୁ ଚାହିଁ ଭର୍ତ୍ସନା କଲାପରି ସେ ପୁଣି କହିଲା, ହେ ଶୁଣ, ତୁମେ ଯେତେବେଳେ .... ବରଂ ସାବଧାନ ରହିବା ଭଲ । ଯଦି ଲଗାମ ଢିଲା ହୋଇଯାଏ, ଖୁବ୍ ଶୀଘ୍ର ତୁମ ଗୋଡ଼ ଲମ୍ପଟତା ଭିତରକୁ ଖସିଯିବ ।"

ହୋୟ ଏସବୁ ଶୁଣି ବୁଝିଗଲା ଯେ ମ୍ୟାନେଜର ବା ତା'ର ସହକର୍ମୀ କେହି ବି ସେ ଦେଖିଥିବା ଗତରାତି କାର୍ଯ୍ୟକ୍ରମଟିକୁ ଦେଖିବାର ସୌଭାଗ୍ୟ ଲଭିନାହାନ୍ତି, ଯଦିଓ ସେମାନେ ସମସ୍ତେ ନିଜ ନିଜ ଟେଲିଭିଜନକୁ କ୍ରମାଗତ କୁଣ୍ଢେଇ ଧରି ବସିଥାନ୍ତି । ଠିକ୍‌ଅଛି, ବଡ଼ହାଟରେ ବିକ୍ରିହେବା ପୂର୍ବରୁ ମେଞ୍ଚା ମେଞ୍ଚା ଭାତ ଖୁଆଇ ମୋଟା ରୋଟା କରିଥିବା କୁକୁଡ଼ା-ଗଞ୍ଜାଦଳ ପରି ଧରିକି ବସିଥାନ୍ତୁ ସେଇ ପୁରୁଣା, ଏକାପ୍ରକାର ସିନେମାଗୁଡ଼ିକୁ ।

ହୋୟକୁ ଆଶ୍ୱସ୍ତକରି, ପର କେତେ ହପ୍ତା ଧରି ଖୁବ୍ ସ୍ୱାଭାବିକ୍ ଚାଲିଲା । ଯାହାହେଲେ ବି, ବାପ-ମା, ପିଲା, ପରିବାର ଏକାଠି ବସି କ'ଣ ଲଙ୍ଗଳୀମାନଙ୍କୁ ଦେଖିବା ସମ୍ଭବ ?

କିନ୍ତୁ କେବଳ ଏଇଭଳି ସଂଧ୍ୟାମାନଙ୍କରେ ଯେତେବେଳେ ତା' ସ୍ତ୍ରୀ ଓ ପିଲାମାନେ ବାହାରକୁ ଯାଇଥାନ୍ତି ଆଉ ସିଏ ଏକୁଟିଆ ଥାଏ, ସେତିକିବେଳେ ଅନ୍ଧାର ଶୋଇବା

ପରେ ଟେଲିଭିଜନ ପର୍ଦ୍ଦାରେ ପୁଣି ଥରେ ସେଇ ପ୍ରେଗ୍ରାମ ଝପଟିଆସେ । ସେଥିରେ ଗୋଟେ ଶୃଙ୍ଗାର ରସାତ୍ମକ ଚଳଚ୍ଚିତ୍ର ଥିଲା, ଘୁଷୁରିଙ୍କ ଉପରେ, ସେଥିରେ ସତ କହିବାକୁ ଗଲେ, ଦେଖିଲା ଭଳି କେତେଗୁଡ଼ିଏ ଦୃଶ୍ୟ ଥିଲା । ଏକଥା ସତ ଯେ ଏଭଳି ପ୍ରୋଗ୍ରାମ କେବଳ ସେତିକିବେଳେ ଦେଖାଯାଏ ଯେତେବେଳେ ସେ ଏକୁଟିଆ ଘରେ ଥାଏ ।

ହୋୟର ନିମ୍ନସ୍ୱରର ବର୍ଣ୍ଣନା ଶୁଣି, ତା' ହାକିମ ଡିଏଁ ସନ୍ଦିହାନ ହୋଇଉଠିଲା ।

"ସତରେ ?" ଗୋଟେ ମାମୁଲି ହସ ହସି ସେ କହିଲା, "ଠିକ୍ଅଛି, ମୁଁ ବରଂ କେତେବେଳେ ତୁମ ଘରକୁ ଆସିଯିବି, ଆଉ ନିଜ ଆଖିରେ ଦେଖିବି କଥାଟା କେତେଦୂର ସତ ।"

ସେଦିନ ରାତିରେ ହୋୟ ତା' ପିଲାଙ୍କୁ ସିନେମା ଟିକଟ ଦେଇ ଆଉ ସ୍ତ୍ରୀକୁ କ'ଣ ଗୋଟେ ବାହାନା କରି ବାହାରକୁ ପଠାଇଦେଲା ।

ଡିଏଁ ଆସି ଘରେ ପହଞ୍ଚିବାକ୍ଷଣି ଦୁଇଜଣଯାକ ଟେଲିଭିଜନ ସାମ୍ନାରେ ବସିଗଲେ ।

ଘୁଷୁରି ଚଳଚ୍ଚିତ୍ରଟି ହୋୟକୁ ମୋହିତ କଲା । କିନ୍ତୁ ସେ ଯେତେବେଳେ ଡିଏଁ ଆଡ଼କୁ ବୁଲିପଡ଼ିଲା ଦେଖିବାକୁ ଯେ ତା' ହାକିମକୁ ଏ ଦୃଶ୍ୟ କେମିତି ଲାଗୁଛି, ସେ ଦେଖିଲା ଆର୍ମଚେୟାରରେ ଗୋଟେ ଛେଳି ତାର ଆଗଗୋଡ଼ ଛାତିରେ ଚାପି, ପଛଗୋଡ଼ ଦୁଇଟି ସଙ୍ଗୀତ ସହ ତାଳଦେଇ ହଲାଉଛି । ହୋୟ ଚିତ୍କାର କରି ଦୌଡ଼ିଲା ।

"କ'ଣ ହେଲା ତୁମର ?" ଛେଳିଟି ନିଜର ବୁଢ଼ାଲୋକଙ୍କ ଚଷମା ତଳୁ, କବାଟ ପାଖରେ ଠିଆ ହୋଇଥିବା ହୋୟକୁ ଅନାଇ ଗୋଟେ ସଂଯତ, ଭଦ୍ରସ୍ୱରରେ ପଚାରିଲା ।

ଛେଳିଟି ତଥାପି ଡିଏଁ ପରି ଦିଶୁଥିଲା । ତା' ବେକ ଚାରିପଟେ ସେଇ ସୁନାଚେନ୍‌ଟି ପଡ଼ିଥିଲା ଯେଉଁଟି ମ୍ୟାନେଜର ପ୍ରାୟ ପିନ୍ଧିଥାଏ : ଗୋଟେ ପୁରୁଣା ହାତବନ୍ଧା ଘଣ୍ଟା ତାର ଆଗ ବାମଗୋଡ଼ରେ ବନ୍ଧାହୋଇଥାଏ । ତଫାତ୍ କେବଳ ଏତିକି ଥିଲା ଯେ ଡିଏଁର ଭାତୁଡ଼ିମୟ ଚିବୁକରେ ଥିବା ସ୍ୱଳ୍ପ, ବିକ୍ଷିପ୍ତ ଦାଢ଼ି ଜାଗାରେ ଥିଲା ମୁନିଆଁ ଛେଳି ଦାଢ଼ି ଆଉ ଡିଏଁର ପୋଷାକ ବଦଳିଯାଇଥିଲା ମୋଟା ଧଳା-କଳା ଲୋମରେ ।

ହୋୟ କୌଣସି ପ୍ରକାରେ ନିଜକୁ ଶାନ୍ତ କରି ପଚାରିଲା : "ତୁମେ ଏଭଳି ଦୟନୀୟ ଅବସ୍ଥାରେ କେମିତି ପଡ଼ିଲ ?"

"କ'ଣ ତୁମେ କହିବାକୁ ଚାହୁଁଛ ?"

"ମୁଁ କହିବାକୁ ଚାହୁଁଛି ଯେ ତୁମେ ଗୋଟେ ଛେଳିରେ ବଦଳିଯାଇଛ ।"

"କ'ଣ ? ତୁମର ଏତେ ସାହସ ଯେ ମତେ କହୁଛ ମୁଁ ଗୋଟେ ଛେଳି ହୋଇଯାଇଛି ?"

ହୋୟ ତାକୁ ଗୋଟେ ଦର୍ପଣ ଧରାଇଦେଲା । ହେଲେ ହୋୟ ଯେପରି ଭାବିଥିଲା, ଛେଳିଟି ସେଭଳି ଭୟଭୀତ ହେଲା ନାହିଁ । ସେ ଦର୍ପଣରେ ନିଜକୁ ବହୁତ ସମୟ ଧରି

ଦେଖିଲା, ଏପରିକି ନିଜର ସାମ୍ନା, ପଛଗୋଡ଼ ଟେକି ଖୁରାଗୁଡ଼ିକୁ ପରୀକ୍ଷା କଲା । ଯଦିଓ ଛେଳିଟି ନୀରବ ବେଦନାରେ ଥିଲା, ତଥାପି ବିଚଳିତ ହେଉ ନଥିଲା । ଶେଷରେ ଦର୍ପଣଟି ହୋୟକୁ ଫେରାଇଦେଲା, ଦୀର୍ଘଶ୍ୱାସଟିଏ ପକାଇ ସେ କହିଲା,

"ହଉ, ଠିକ୍ଅଛି, ମୋ ଜୀବନ ତ ଧ୍ୱସ୍ତ ହୋଇଗଲା, ତେବେ କିଛି ଭାବ ନାହିଁ, ବ୍ୟକ୍ତିଗତ ମାମଲା ସର୍ବସାଧାରଣଙ୍କ ମଙ୍ଗଳରେ ବାଧାଦେବା ଉଚିତ୍ ନୁହେଁ । ଶୁଣ, କାଲି 'କନ୍‌ଷ୍ଟ୍ରକସନ୍ ମ୍ୟାଟେରିଆଲ ସର୍ଭିସ'ର ମ୍ୟାନେଜର ଆମ କାରଖାନା ଦେଖିବାକୁ ଆସିବେ । ଯୋଜନା ବୋର୍ଡ଼ର ମୁଖ୍ୟଭାବରେ, ତୁମେ ସେମାନଙ୍କୁ ମୋ ତରଫରୁ ସ୍ୱାଗତ କରିବ । ଆଉ ମୋ ଅନୁପସ୍ଥିତିର କ'ଣ ଗୋଟେ କାରଣ ବାହାର କରି ..."

"ସେମାନଙ୍କ ପାଇଁ ମୁଁ କିଛି ମନଗଢ଼ା କାହାଣୀ ବାହାର କରିଦେବି, ହେଲେ ତୁମ ସ୍ତ୍ରୀକୁ କ'ଣ କହିବି ?"

"ମଝିରେ କଥା କୁହ ନାହିଁ । ଦକ୍ଷିଣକୁ ଭୋର ଫ୍ଲାଇଟ୍ ଧରିବା ଆଗରୁ ତାକୁ ଏତିକି କହିଦେବ ଯେ ରାତିରେ ଜରୁରୀ କାମ ପାଇଁ ମିନିଷ୍ଟର ମୋତେ ଡକାଇ ନେଇଛନ୍ତି ।"

"ତୁମେ କ'ଣ ମୋରି ଘରେ ଲୁଚି ରହିବାକୁ ସ୍ଥିର କରିଛ ?"

"କିଛିଦିନ ପାଇଁ–ଏଇ ଅଳ୍ପ କେତେଟା ଦିନ, ଏବେ ଶୀଘ୍ର ଆସ, ଆଉ ମୋ ପାଇଁ ଗୋଟେ ଲୁଚିବା ଜାଗା ଖୋଜିଦିଅ ।"

ହୋୟର ଆଉ ବାଟ ନଥିଲା, ସେ ଘର ପଛପଟ ଘୁଷୁରିଶାଳର ଗୋଟେ କୋଣକୁ ଛେଳିଟିକୁ ନେଇଗଲା । ଅଳ୍ପଦିନ ଆଗଯାଏ, ତା ବିବି ଅନେକ ସମୟରେ ହୋଟେଲରୁ ବଳକା ଖାଦ୍ୟ ଘରକୁ ଆଣି ଆସୁଥିଲା, ଭଲଭଲ ଖାଦ୍ୟ ମଣିଷଙ୍କ ପାଇଁ ରଖି, ପଚାଖାଦ୍ୟ ଘୁଷୁରିଙ୍କୁ ଦେଇଦେଉଥିଲା । ହେଲେ ଏବେ ଏବେ ହୋଟେଲର ପରିସ୍ଥିତି ବଦଳି ଉଦ୍‌ବେଗଜନକ ହୋଇଯାଇଛି ଆଉ ପତ୍ନୀ ଘରକୁ କିଛି ଆଣିବାକୁ ସାହସ କରୁନାହିଁ । ତେଣୁ ଏଇପଟଟି ଖାଲି ପଡ଼ିଥିଲା ।

ହୋୟ ପରଦିନ ଉପରଓଳି ଶୀଘ୍ର ଘରକୁ ଫେରିଆସିଲା । ସ୍ତ୍ରୀ ଆଉ ପିଲାମାନେ ଘରକୁ ଫେରିନଥିବା ଜାଣି, ସେ ଘୁଷୁରିଶାଳାକୁ ଦୌଡ଼ିଲା । ଛେଳିଟି ଧରିନେଇଥିଲା ଯେ ହୋୟ ନିଶ୍ଚୟ ଘରକୁ ଆସି ତାକୁ ଦିବାଭୋଜନ ଖୁଆଇବ । ତେଣୁ ସେ ଅଧୈର୍ଯ୍ୟ ହୋଇ ଅପେକ୍ଷା କରିଥିଲା । କିନ୍ତୁ ସେ ଯେତେ ଅପେକ୍ଷା କଲା, ହୋୟ ସେତିକି ଡେରି କଲା । ଶେଷରେ ଯେତେବେଳେ ସେ ଆସିଲା, ଛେଳିଟି ଆଉ ଧୈର୍ଯ୍ୟ ରଖିପାରିଲା ନାହିଁ ।

"ସେଇଠି ତୁମେ ଲଟକି ରହିଛ, ସେଇ କନ୍‌ଷ୍ଟ୍ରକ୍‌ସନ ମ୍ୟାଟେରିଆଲ ସର୍ଭିସର ଲୋକଙ୍କ ସାଥିରେ ମଦପିଇ, ମଉଜ କରି ସମୟ ନଷ୍ଟକରି ଚାଲିଛ, ମତେ ଏଠି ଭୋକ ଉପାସରେ ମରିବାକୁ ଛାଡ଼ିଦେଇ ! ମୋ ଅବସ୍ଥା ଦେଖିଲ କ'ଣ ହେଲାଣି !" ଛେଳିଟି ମେଁ ମେଁ ହୋଇ ପାଟିକଲା ।

"ହେଲେ, ସାର୍, ମୋ ଠାରୁ ତୁମେ କେଉଁ ପ୍ରକାର ସାହାଯ୍ୟ ଆଶା କରୁଛ ? ମୋ ଲନ୍‌ର ଘାସ କ'ଣ ତୁମ ଚୋବେଇବା ପାଇଁ ଯଥେଷ୍ଟ ନୁହେଁ ?"

"ଘାସ ? ମୋ ପାଇଁ ? ଥଟ୍ଟା କରୁଛ ନା କ'ଣ ? ଯାଅ ତୁରନ୍ତ ଲାଗିପଡ଼ି ମୋ ପାଇଁ ମୋର ପ୍ରିୟ ଖାଦ୍ୟ ପ୍ରସ୍ତୁତ କରି ଆଣ : ପଦ୍ମନାଡ଼ ଓ ଛେନା ତରକାରି, ଚିକେନ୍ ଦୋପିଆଜା, ସପୁରି-କ୍ରିମ ସାଲାଡ଼, ଟଟକା ବିନ୍ ସିଝା ଆଉ ଯଦି ଅଛି - ଗୋଟେ ଗ୍ଲାସ୍ ଚାମେଲି ହୁଇସ୍କି !"

"ଦେଖ, ତୁମର ବର୍ତ୍ତମାନ ଘରକୁ ଫେରିଯିବା ନିହାତି ଦରକାର, ଆଉ ମୁଁ ନିଶ୍ଚିତ ଯେ ତୁମ ପ୍ରିୟତମା ପତ୍ନୀ ସେଇସବୁ ଖାଦ୍ୟ ରାନ୍ଧିଦେବ", ହୋୟ ତଳ ଓଠକୁ କାମୁଡ଼ି ନିଜକୁ ଶାନ୍ତ କରିବାକୁ ମନେ ମନେ ଗୋଟେ ପ୍ରେମଗୀତ ଗୁଣୁଗୁଣେଇଲା । "ଠିକ୍‌ଅଛି, ତୁମ ପାଇଁ ଖାଦ୍ୟ କିଣି ଆଣୁଛି । ଯା'ହେଲେ ବି ..."

ହୋୟ ନଇଁପଡ଼ିଲା ଆଉ ଉପରକୁ ଉଠିଥିବା ମୁନିଆଁ ଗୋଟେ କାନଉପରେ ଫୁସ୍‌ଫୁସ୍ କରି କହିଲା ଯେ କନଷ୍ଟକ୍‌ସନ ମ୍ୟାଟେରିଆଲ ସର୍ଭିସ ମିଟିଂରେ ଆଜି ସେ କହିଦେଇଛି କାରଖାନା ଡେ-କେଆର କେନ୍ଦ୍ରର ମରାମତି ବାହାନାରେ କିଛି ଇଟା, ଟାଇଲ ଆଉ ସିମେଣ୍ଟ ତା ଘରକୁ ପଠାଇଦେବେ ।

"ଅସମ୍ଭବ, ଛେଳିଟି ପଛ ଦୁଇଗୋଡ଼ରେ ଠିଆହୋଇପଡ଼ିଲା, ଆଉ ଖୁବ୍ ଜୋର୍ ନିଜର ସାମ୍ନା ଡାହାଣ ଗୋଡ଼ଟି ହଲାଇ କହିଲା, "ତା ମାନେ ତୁମ ନିଜର ବ୍ୟକ୍ତିଗତ ଲାଭ ପାଇଁ ସର୍ବସାଧାରଣ ସମ୍ପତ୍ତି ତୁମେ ନେବ ?"

"କାହା ଲାଭ ସାର ? ତୁମକୁ ଭାରି ଭୋକ ହେଉଥିବା କଥା ତୁମେ କହିନଥିଲ ?"

"ମୋ ଅସୁବିଧାରୁ ଫାଇଦା ଉଠାଇବାକୁ ଚେଷ୍ଟା କର ନାହିଁ ।"

ହୋୟ ଛେଳିଟିକୁ ରାତିସାରା ଉପାସ ରଖେଇଦେଲା । ଭୋକରେ ଆଉଟୁପାଉଟୁ ହୋଇ ଛେଳିଟି ଅତି ଦୁର୍ବଳତା ଯୋଗୁଁ ଯଦିଓ ଠିଆ ବି ହୋଇପାରୁନଥିଲା, ତଥାପି ମେଁ ମେଁ କରି କାହାକୁ ଡାକିବାର ସାହସ ଜୁଟାଇ ପାରିଲା ନାହିଁ , କାଳେ ହୋୟର ସ୍ତ୍ରୀ ଶୁଣିଦେବ । ଛେଳିଟି ଜାଣିଥିଲା, ସୁସ୍ୱାଦୁ ଖାଦ୍ୟ ବନାଉଥିବା ସେହି ପାଚିକା ହାତରେ ଯଦି ବିଚରା ଧରାପଡ଼ିଯିବ ତ ଅତିଶୀଘ୍ର ଏହା ଦରସିଝା ଛେଳିମାଂସର କେତୋଟି ଥାଳିରେ ପରିବେଷିତ ହୋଇଯିବ । ଶେଷରେ ଆଉ ସହିନପାରି, ପରଦିନ ସକାଳୁ ଛେଳିଟି ହୋୟର ସବୁ ସର୍ତ୍ତ ମାନିନେଲା । ହୋୟ ଆଗରୁ ତିଆରି କରିଥିବା କେତେଗୁଡ଼ିଏ ଅଫିସ କାଗଜ ଗୋଟିଏ କାଠବାକ୍ସରେ ଆଣି ତା' ଆଗରେ ଥୋଇଦେଲା । ଛେଳିଟି କଲମ ଧରିଲା, ହେଲେ ଦସ୍ତଖତ କରିବା ପୂର୍ବରୁ କେତେବେଳେ ଧ୍ୟାନରେ ହଜିଗଲା । ଦୁଃଖରେ ମୁଣ୍ଡ ହଲାଇଲା ।

"କି ପରିହାସ ! ପୁଣି ଖାଦ୍ୟ ପାଇଁ !"

"ଯାହା କିଛି ଆମେ କରେ, ଖାଦ୍ୟ ପାଇଁ ହିଁ କରେ, ସାର୍ ।"

ଅବିଳମ୍ବେ, ହୋୟ ନିଜ ଘର ନବୀକରଣ ନିମନ୍ତେ ଗଦାଗଦା ମାଲମତା ପାଇଗଲା । କାଗଜପତ୍ର ଖେଳାଇ ଦେଖୁଥିବାବେଳେ, ମନେମନେ ଖୁବ୍ ଭାବିବାକୁ ଲାଗିଥିଲା ଯେ ଏହାପରେ ଛେଳିକୁ ଭୋକିଲା ରଖି ସେ ଆଉ କ'ଣ ଲାଭ ଉଠାଇ ପାରିବ ।

ନିଜ ଯୋଜନାକୁ ହୋୟ କାର୍ଯ୍ୟକାରୀ କରିବା ପୂର୍ବରୁ ଦିନେ ସକାଳୁ ସକାଳୁ ତିଏଁର ଧର୍ମପତ୍ନୀ, ଟୋନ୍ ଘରଭିତରକୁ ଧସେଇ ପଶିଆସିଲା ।

"ମୋ ସ୍ୱାମୀ ଦକ୍ଷିଣକୁ ଯାଇଛନ୍ତି କହି ତୁମେ ସମସ୍ତଙ୍କୁ ବୋକା ବନେଇପାରିବ, ମୋତେ ନୁହେଁ । ମୁଁ ଏବେ ମନ୍ତ୍ରୀଙ୍କୁ ଦେଖାକରି ଆସୁଛି, ସେ କହିଲେ, ମୋ ସ୍ୱାମୀର ତ ତାଙ୍କ ସାଙ୍ଗେ କିଛି ଜରୁରୀ କାମ ନଥିଲା । ଯାହା ଜଣାଯାଉଛି, ତାଙ୍କର କେଉଁ ବଦମାସ୍ ମାଇକିନା ସାଥିରେ କିଛି ମନ୍ଦ କାରବାର ଚାଲିଛି, ଯେଉଁଥିରେ ତୁମେ ଭାଗୁଆଳି ଅଛ ।"

ଟୋନ୍ ଦେହରୁ ଝାଳ ବୋହିଯାଇଥିଲା, ହୋୟର ପ୍ରଶାନ୍ତ ଠାଣି ହଠାତ୍ ଟୋନ୍ ମୁହଁରେ ବାଲ୍‌ଟିଏ ଥଣ୍ଡାପାଣି ଛାଟିଦେଲା । ହୋୟର ଶାନ୍ତ ମୁହଁ ତଳେ ଗୋଟେ ନିର୍ଦ୍ଦୟ ହତ୍ୟାକାରୀର ଶୀତଳ ଆତ୍ମା ସେ ଦେଖିପାରିଲା । ଏଥର ଟୋନ୍ ପୂରା ଡରିଗଲା । ହେଲେ ସେ ବି ଥିଲା ଉଦ୍ଧତ ଆଉ କଳହପ୍ରିୟା । ତା' ମନରେ ଯାହାଥିଲା ଅସଂଯତଭାବରେ ଗଡ଼ଗଡ଼ ହୋଇ ପାଟିବାଟେ ବାହାରି ଆସିଲା ।

"ନଚେତ୍ ତୁମେ ମୋ ସ୍ୱାମୀର ମୁଣ୍ଡ ଫଟେଇ, ଖଣ୍ଡଖଣ୍ଡ କରି ହାଣି ତୁମ ଘୁଷୁରିଶାଳରେ ଫୋପାଡ଼ି ଦେଇଛ । କି ସଇତାନ୍ ! ସେ ଗୋଟେ ସୁନାଚେନ୍ ବେକରେ ପକାଇଥିଲେ ଆଉ ତାଙ୍କ ଘଣ୍ଟା ଆଉ ତାଙ୍କ ସୁନା ଫ୍ରେମ୍‌ବାଲା ଚଷମା । ଓଃ !"

ସେଇସବୁ ଦାମୀ ଜିନିଷର ନାମ ନେବାକ୍ଷଣି, ସେସବୁ ହରାଇଥିବା ଭାବନାରେ ଟୋନ୍‌ର ଲୋଭ ଆଉ ପରିତାପ ତା କ୍ରୋଧକୁ ଏତେ ବଢ଼ାଇଦେଲା ଯେ ସେ ଭୟଶୂନ୍ୟ ହୋଇଗଲା । ଆବେଗଚାଳିତ ହୋଇ ସେ ବୁଲିପଡ଼ି ଘର ପଛପଟକୁ ଧାଇଁଲା, ଯେଉଁଠି ଘୁଷୁରିଶାଳ ଥିଲା ।

ତାକୁ ବୁଝାଇବାକୁ ବା ଅଟକାଇବାକୁ ହୋୟ ପାଖରେ ସମୟ ନଥିଲା । ଠିକ୍‌ଅଛି, ବିବି ନିଜ ଆଖିରେ ଦେଖୁ, ଭାବିଲା ହୋୟ । ହେଲେ ସେ ଭଙ୍ଗାଦଦରା ଘରଟାରେ ଟୋନ୍ ଆଗ କିଛି ଦେଖିପାରିଲା ନାହିଁ । ଶେଷରେ ଯେତେବେଳେ ତା' ଆଖି ଛାଇଛାଇଆ ଅନ୍ଧାରକୁ ସୁହାଇଲା, ସେ ଦୀର୍ଘସମୟ ଧରି ଛେଳିଟିକୁ ଅନାଇ ରହିଲା । ହଠାତ୍ ସେ କମ୍ପିଉଠିଲା ।

"ତମେ ଏଠି ? ଏତେଦିନ ଧରି ତୁମେ ଏଇଠି ରହିଛ ?" ଦୟାର୍ଦ୍ର ସ୍ୱରରେ ପଚାରିଲା ଟୋନ୍ ।

ଛେଳିଟି କିଛି ଉତ୍ତର ଦେଲା ନାହିଁ । କେବଳ ମୁଣ୍ଡଟିକୁ ପୋତିଦେଲା, ଯେମିତି

ନିଜ ଦୋଷ ମାନିଯାଉଛି । ଟୋନ୍ ଦେଖିନେଲା ଏହା ତଥାପି ପିନ୍ଧିଛି ସୁନାଚେନ୍, ଘଣ୍ଟା ଆଉ ସୁନାଫ୍ରେମ୍ ଚଷମା ।

ଆଶ୍ଚର୍ଯ୍ୟରେ ହୋୟ ପଚାରିଲା, "ତୁମେ ତାଙ୍କୁ କେମିତି ଚିହ୍ନିଲ ଟୋନ୍ ?"

"କାହିଁକି ଚିହ୍ନିବି ନାହିଁ ?" ହୋୟର ଆଖିରେ ସହାନୁଭୂତି ଦେଖି, ଟୋନ୍ ନିଜ ହୃଦୟର କଥା ତା' ଆଗରେ ଅଜାଡ଼ିଦେଲା । "ଯେଉଁଦିନ ସେ ମୋତେ ବିବାହ କରିବାକୁ ପ୍ରସ୍ତାବ ଧରି ଆସିଥିଲେ, ସେଇଦିନ ହିଁ ପ୍ରଥମଥର ପାଇଁ ମୁଁ ତାଙ୍କୁ ଏହିପରି ଦେଖିଥିଲି । ମୋ ବାପା–ମା, ଆଉ ଭଉଣୀମାନେ ତାଙ୍କ ପ୍ରଶଂସାରେ ମୁଖର ହୋଇଉଠିଥିଲେ : ସେ ଏତେ ସୁନ୍ଦର, ଏତେ ପ୍ରତିଭାଶାଳୀ, ଗୋଟେ ଜେନେରାଲ ମ୍ୟାନେଜର ଯେତେବେଳେ ମାତ୍ର ତିରିଶ ବର୍ଷ ହୋଇଛି । କେବଳ ମୁଁ ଦେଖିପାରିଥିଲି, ସେଦିନ ଆମ ଘର ଭିତରକୁ ଯିଏ ଆସୁଥିଲା, ସେ ଥିଲା ଗୋଟିଏ ତୀକ୍ଷ୍ଣ ଦାଢ଼ିଥିବା ଛେଳି, ମଣିଷମାନଙ୍କ ପ୍ରତି ସମ୍ବେଦନହୀନ ଛେଳିଟିଏ । ହେଲେ ମୁଁ ଥିଲି ତେତିଶ ବର୍ଷର ଗୋଟେ ଅବିବାହିତା କୁମାରୀ ଆଉ ସେ ଥିଲା ମୋର ଶେଷ ସୁଯୋଗ । ଏବେ କୋଡ଼ିଏ ବର୍ଷରୁ ଊର୍ଦ୍ଧ୍ୱକାଳ ଆମେ ଏକାଠି ପରସ୍ପର ସହ ରହିଆସିଲୁଣି, ଆଉ ସବୁବେଳେ ମୁଁ ତାଙ୍କୁ ଦେଖିଆସିଛି ଠିକ୍ ଏଇମିତି, ଯେମିତି ସେ ଏଇମୁହୂର୍ତ୍ତରେ, ଏଇ ଘୁଷୁରିଶାଳରେ ଅଛନ୍ତି ।"

ତିନିଜଣଯାକ କେତେବେଳ ଧରି ଚୁପ୍ ରହିଲେ । ଶେଷରେ ହୋୟ ପଚାରିଲା, "ବର୍ତ୍ତମାନ ତୁମର ଯୋଜନା କ'ଣ ?"

"ସେ ଏଇଠି ରହନ୍ତୁ – ଆଉ କିଛି ଦିନ ତାଙ୍କର ଯତ୍ନନିଅ । ମୋ ଘରେ ଜାଗା ନାହିଁ ତାଙ୍କୁ ଖାଇବାକୁ ଦେବାକୁ, ତା'ଛଡ଼ା ଆମର ଗାଁରୁ ଲୋକ ଆସିଛନ୍ତି । ମୁଁ ୟାଙ୍କ ପାଇଁ ଖାଦ୍ୟ ଯୋଗାଇଦେବି, ଆଉ ତୁମ ହରକତ ପାଇଁ ତୁମେ ଅର୍ଥ ପାଇଯିବ ।"

"ହେଲେ ତୁମକୁ ଖୁବ୍ ଶୀଘ୍ର ତାଙ୍କୁ ଫେରାଇ ନେବାର ବ୍ୟବସ୍ଥା କରିବାକୁ ପଡ଼ିବ ।" ହୋୟ ନିଜ ଥୋଡ଼ିଟା ଛେଳି ଆଡ଼କୁ କୁଞ୍ଚେଇ ଦେଇ କହିଲା, "ମୋ ସ୍ତ୍ରୀ ଯଦି ସାର୍‌ଙ୍କୁ ଏଠାରେ ଦେଖିଦିଏ, ସେ ସାଙ୍ଗେ ସାଙ୍ଗେ ତାଙ୍କୁ ବାଣ୍ଟୋକ୍ ହୋଟେଲକୁ ନେଇଯିବ ଆଉ ସ୍ୱତନ୍ତ୍ର–ଥାଳି ବିଭାଗକୁ ବିକିଦେବ ।"

କେତେଦିନ ବିତିଗଲା । ଦିନେ ସଂଜବେଳେ ଟୋନ୍ ଗୋଟେ ଝୋଟ ଅଖା ଆଣି, ଛେଳିଟାକୁ ତା ଭିତରେ ପୂରାଇ ତା ମୋଟରସାଇକେଲ ପଛରେ ବାନ୍ଧିଦେଲା । ଖୁବ୍ ଶୀଘ୍ର ଛେଳିଟି ନିଜ କୋଠରି, ନିଜ ଟେବୁଲ, ଆଉ ପ୍ରିୟ ବହିମାନଙ୍କ ଭିତରକୁ ଫେରିଗଲା । ଟୋନ୍ ବେଶ ସତର୍କତାର ସହ ସ୍ୱାମୀର 'ଘରଫେରନ୍ତା' ଭୋଜିର ଆୟୋଜନ ବି କଲା, ସ୍ୱାମୀର ପ୍ରିୟ ସାମ୍ପେନ ଆଉ ପ୍ରିୟ ଖାଦ୍ୟ ସହିତ ।

ଗୋଟେ ଗ୍ଲାସ୍ ହୁଇସ୍କି ପରେ ଛେଳିର ଆଖିଦୁଇଟି ଓଦା ହୋଇଆସିଲା ଆଉ ମୁହଁ ଗମ୍ଭୀର ହୋଇଗଲା । ଚାପାସ୍ୱରରେ ସେ କହିଲା : "ଏଯାବତ୍ ମୋ ମନରେ

ଗୋଟିଏ ଆଶା ମୁଁ ପାଳି ରଖିଥିଲି । ହେଲେ, ଆଜି ଏ ଆଶା ମୋର ପୂରା ଧୂଳିସାତ୍ ହୋଇଗଲା । ତୁମ ଦୁଇଜଣଙ୍କୁ ଗୋଟେ ଗୁଜବ ପ୍ରଚାର କରିଦେବାକୁ ହେବ ଯେ ଜରୁରୀ ପ୍ରୋଜେକ୍ଟରୁ ଫେରିବା ପରଠାରୁ ବହୁତ ଦୁର୍ବଳ ହୋଇଯାଇଛି ଆଉ ମୁଁ ଅଫିସ୍‌ରେ କାମ କରିପାରିବି ନାହିଁ । ଆଉ ତୁମେ, ମୋର ସ୍ତ୍ରୀ, ମୋର ଅବସର ପାଇଁ ଗୋଟେ ଦରଖାସ୍ତ ଅଫିସରେ ଦେଇଦେବ ।''

''ହୋୟ ପାଟିରୁ ଖସିଗଲା, ଗୋଟେ ଛେଳି ଅବସର ନେବାପାଇଁ ଏତେ ଯତ୍ନଶୀଳ କାହିଁକି ?''

''ସେପରି କୁହନାହିଁ । ସବୁଦିଗରୁ ଶାନ୍ତି ଓ ସନ୍ତୋଷରେ ଭରପୂର ମୋର ଚାକିରିକାଳ, ଗୋଟେ ନିର୍ବିଘ୍ନ, ସମ୍ମାନଜନକ ପ୍ରତ୍ୟାହାର ଦାବି କରେ ।''

''ମୁଁ ତୁମକଥା ବୁଝିପାରୁଛି'', ତା' ସ୍ତ୍ରୀ ମୁଣ୍ଡ ହଲେଇଲା । ''ଆମକୁ ଗୋଟେ ସଂକ୍ରାମକରୋଗ ତୁମ ପାଇଁ ଆବିଷ୍କାର କରିବାକୁ ପଡ଼ିବ, ତାହେଲେ କେହି ତୁମକୁ ପରୀକ୍ଷା କରିବାକୁ ଆସିବେ ନାହିଁ । ଠିକ୍‌ଅଛି, ତୁମ କାରଖାନାର ବ୍ୟକ୍ତିଗତ ବିଭାଗରେ ମୁଁ କହିଦେବି ଯେ ତୁମକୁ ଏଡ଼ସ୍ ହୋଇଛି ।''

ଛେଳିଟା ରାଗରେ ଡେଇଁପଡ଼ିଲା ।

''ତୁମେ ମୋ ମାନସମ୍ମାନ ଉପରେ କଳା ବୋଳିଦେବ । ମୋ ପରି ଗୋଟେ ପରିଚ୍ଛନ୍ନ ଲୋକ, ଅବସର ନେବାର କାରଣ ରୂପେ ସେଭଳି ଅପରିଚ୍ଛନ୍ନ ରୋଗର ସାହାରା ନେଇପାରିବ ନାହିଁ ।''

ଶେଷରେ, ହୋୟ ଆଉ ଟୋନ୍ ମିଶି ଛେଳିକୁ ବୁଝାଇଦେଲେ ଯେ ସେ ଜଣ୍ଡିସ୍ ଆଉ ଫୁସ୍‌ଫୁସ୍ କ୍ଷୟ ରୋଗରେ ଚିକିତ୍ସିତ ହେଉଥିଲା । ସେଇ ବାହାନାରେ ସେମାନେ ତା' ଅବସର ପାଇଁ ଫାଇଲ କରିବେ ।

ହୋୟ ସାମାନ୍ୟ ମାତାଲ ହୋଇ ଘରକୁ ଫେରିଲା । ଘରପାଖ ହେଲାବେଳକୁ ତାର ମନେପଡ଼ିଲା ଯେ ତାର ଦୁଇପୁଅ ଆଜି ସଂଧ୍ୟାରେ ବାହାରକୁ ଯାଇଥିବେ, ପଡ଼ାରେ କିଶୋରମାନଙ୍କର ଆୟୋଜିତ ଗୋଟେ ସଭାରେ ଯୋଗଦେବାକୁ । ତା ସ୍ତ୍ରୀ ଏକୁଟିଆ ଘରେ ଥିବ । ହଠାତ୍ ତା' ମନକୁ ଆସିଲା, ବିବି ତାର ମନପସନ୍ଦ କେଉଁ ଗୋଟେ ପ୍ରୋଗ୍ରାମ ଏଇଲେ ଟେଲିଭିଜନରେ ଦେଖୁଥିବ ।

ହୋୟ କବାଟ ଆଉ କଡ଼ିକାଠ ଫାଙ୍କରେ ଆଖି ଲଗେଇ ଦେଖିଲା ।

କୋଠରିଟି ଟେଲିଭିଜନର ନିଷ୍ପ୍ରଭ କ୍ଷୀଣ ଆଲୁଅରେ ଝାପ୍‌ସା ଦେଖାଯାଉଥିଲା । ବହୁତସମୟ ଆଖିକୁ ଫାଙ୍କା ଜାଗାରେ ଚାପି କଷ୍ଟେମଷ୍ଟେ ସେ ଟି.ଭି. ପର୍ଦ୍ଦାରେ ଗୋଟେ କମନୀୟ ପୁରୁଷକୁ ନିଜର ପିଠି ଆଉ ଛାତି ପ୍ରଦର୍ଶିତ କରୁଥିବାର ଦେଖିଲା । ଫେସନ୍ ମଡ଼େଲ ପରି ପୁରୁଷଟି ଘୂରୁଥିଲା । ହଠାତ, ଗୋଟେ ସେକେଣ୍ଡରେ ସେ ଦେଖିଲା

ସେଇ ଏକା ମଡ଼େଲ ପୁରୁଷଟି ଚାରିପଟଯାକ ବୁଲୁଛି, ତା' ଦେହରେ ସୂତାଖଣ୍ଡେ ନାହିଁ ।

ହୋୟ ରାଗରେ କବାଟକୁ ଧକ୍କା ମାରିଲା, ଏପରିକି ନିଜକୁ ବି କବାଟ ଦେହରେ ପିଟିଦେଲା । ତା' ସ୍ତ୍ରୀ ତରତର ହୋଇ କବାଟ ଖୋଲିଲା, ଟେଲିଭିଜନଟାକୁ ବନ୍ଦ କରିଦେବାର ଅନୁଗ୍ରହ ବି କଲାନାହିଁ । ପର୍ଦ୍ଦାରେ ହୋୟ ସେଇ ଏକା ଲୋକଟାକୁ ଦେଖିଲା, ସେଇ ଏକା ମନୋହର ହସ, ଏବେ ନଟୁପରି ଘୂରି ଘୂରି ନବପ୍ରଚଳିତ ଜନପ୍ରିୟ ଢଙ୍ଗ ସେ ଦେଖାଉଥିଲା । ଅବଶ୍ୟ ଅନୁକ୍ରମର ଅଦଳବଦଳ ତାକୁ ଠକିପାରିଲା ନାହିଁ ।

"ସାବଧାନ ରୁହ", ହୋୟ ସ୍ତ୍ରୀକୁ ଚାହିଁ ଗାଉଁ ଗାଉଁ ହେଲା, "ମୁଁ ଏପରି ଜଣକୁ ଜାଣେ ଯିଏ ଏହିପରି ସିନେମା ଦେଖି ଛେଳିରେ ବଦଳି ଯାଇଥିଲା ।"

ତା' ସ୍ତ୍ରୀ ଆରାମରେ ହଲି ହଲି ଆସି ଚୌକିରେ ବସିଲା । ତାପରେ ଦୃଢ଼ସ୍ୱରରେ କହିଲା, "ଲୋକେ କେବଳ କଥାରେ କହନ୍ତି ଯେ ଗୋଟେ ଜିନିଷ ଆଉ ଗୋଟେ ଜିନିଷରେ ବଦଳିଗଲା । ହେଲେ, ଏହା ତୁମର ଭୁଲ୍ – ଏପରି କିଛି ନାହିଁ, କେହି ନାହିଁ ଯାହା ସ୍ୱୟଂରେ ବି ବଦଳିଯାଇପାରିବ ।"

"ସ୍ତ୍ରୀର କଥାର ମର୍ମ ବୁଝିବା ଆଗରୁ, ହୋୟ କେତେକ୍ଷଣ ଅଚଳ ହୋଇ ଠିଆ ହୋଇଗଲା ।"

"ତା ମାନେ ତୁମେ କହୁଛ ମଣିଷଗୁଡ଼ା ଛେଳିପରି ।"

"ମୋ ଚାରିପଟେ ମୁଁ ଯାହା ଦେଖୁଛି, ତାହା ଗୋଟେ ଛେଳିର ସମାଜ । ଘର, ଗଳି ସବୁଆଡ଼େ ଛେଳିମାନେ ପଲପଲ ହୋଇ ବୁଲୁଛନ୍ତି । ଛେଳିମାନେ ସାଇକେଲ, ହୋଣ୍ଡା ମଟରସାଇକେଲ ଚଢ଼ୁଛନ୍ତି । ଟୟୋଟା ଭିତରେ ବସିଛନ୍ତି ଛେଳିମାନେ ।"

"ତୁମେ ଏକଥା ଆଗରୁ କାହିଁକି କେବେ କହି ନଥିଲ ?"

"କାରଣ, କହିଥିଲେ ମୁଁ ତତ୍କ୍ଷଣାତ୍ ବୋଡ଼ଙ୍ଗ୍ ମାନସିକ ଚିକିତ୍ସାଳୟରେ ଫୋପଡ଼ା ହୋଇଥାନ୍ତି । ବରଂ ତା ବଦଳରେ, ମୁଁ ଅଣ୍ଡିରା ଛେଳିଗୁଡ଼ାଙ୍କୁ ଦାଦା, ମାମୁ, ଭାଇ କହି ସ୍ୱାଗତ କରେ । ଆଉ ମାଈଛେଳିଗୁଡ଼ାଙ୍କୁ ଖୁଡ଼ି, ମାଇଁ, ଭଉଣୀ କହି । ଅବଶ୍ୟ ମଫସଲରୁ ମୋ ହୋଟେଲକୁ ପ୍ରତିଦିନ ଆସୁଥିବା ଛେଳିପଲଙ୍କଠାରୁ ଏମାନଙ୍କ ଫରକ ବହୁତ ବେଶୀ । ସେଠାରେ ମୁଁ ଗୋଟେ ଛେଳିକୁ ଏୟା ଭାବି କାଟେ ଯେ ଏହା ଥିଲା ହୋଟେଲ ସମବାୟର ଡାଇରେକ୍ଟର ଜେନେରାଲ ଯିଏ ମତେ ଫ୍ରାନ୍ସ ଯିବାକୁ ଅନୁମତି ଦେଇନଥିଲା, ଆଉ ଗୋଟାର ଛାଲ ଉତାରିବାବେଳେ ମତେ ଦିଶେ ବ୍ୟକ୍ତିଗତ ବିଭାଗର ସେଇ ମାଇକିନାଟା ପରି ଯିଏ ମୋ ଭାଇକୁ ଚାକିରି ଦେବାକୁ ମନା କରିଦେଇଥିଲା । ଆଉ ମୁଁ ସେଇ କାମୁକୀ ଆସିଷ୍ଟାଣ୍ଟ ମ୍ୟାନେଜରର ମାଂସରୁ ଦରସିଝା ଥାଳି ବନାଇବାରେ ଲାଗିଯାଏ ।

ହୋୟ ଥରିଗଲା । ସେ ଭାବୁଥିଲା ସ୍ତ୍ରୀକୁ ପଚାରିବ – ତାର ବି ଗୋଟେ ଛେଳି

ସାଙ୍ଗରେ ଏକା ଶେଯରେ ଶୋଇବାର, ଏକା ଖାଦ୍ୟ ଖାଇବାର ଅନୁଭବ ସବୁବେଳେ ହୋଇଛି କି । ସେ କିନ୍ତୁ ଚୁପ୍ ରହିଲା । ଉଭୟେ ଭଲଭାବେ ବୁଝିସାରିଥିବା କିଛି କଥାର ସତ୍ୟତା ପ୍ରମାଣ କରିବାକୁ ଯେପର୍ଯ୍ୟନ୍ତ ଜଣେ ଅନ୍ୟଜଣକୁ ବାଧ ନକରିଛି, ସେପର୍ଯ୍ୟନ୍ତ ଜଣେ ବେଶ୍ ଖୁସିରେ ରହିପାରେ ।

***

କେତେଦିନ ପରେ ଭୟାନକ ବେମାରି ଯୋଗୁଁ ଡିଏଁର ଅକସ୍ମାତ୍ ଅବସର ନେଇଥିବା କଥା କେହି ମନେରଖି ନଥିଲେ । ଯଦିଓ, ଏକଥା ବି ଶୁଣିବାକୁ ମିଳିଥିଲା ଯେ ଟୋନ୍‌କୁ ଖୋଜି ଖୋଜି ଘରର ଖୋଲା ଦୁଆର ବାଟେ ଦିନେ ଜଣେ ପଡ଼ୋଶିନୀ ଘର ଭିତରକୁ ପଶି ଆସିଥିଲେ । ଯେତେବେଳେ ସେ ଟୋନ୍‌କୁ ନପାଇଲେ ତ ଡିଏଁର ପଢ଼ାଘର ଆଡ଼କୁ ଚାଲିଗଲେ, ଯେଉଁଠି ସେ ଦେଖିଲେ ଗୋଟେ ଚଷମାପିନ୍ଧା ଛେଳି ଟେବୁଲ ପାଖରେ ବସି କାଗଜରେ କ'ଣ ଲେଖୁଛି । ଛେଳି ସାମ୍ନାରେ ଥିଲା କାଗଜର ମୋଟା ଗଦାଟିଏ, ଆଉ ସବା ଉପର ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଥିଲା – ଆତ୍ମଜୀବନୀ । ବ୍ୟସ୍ତ ହୋଇ ସେ ପଡ଼ୋସାରା ବୁଲିବୁଲି ଯାହାସବୁ ଦେଖିଥିଲେ କହିଚାଲିଲେ, ଶେଷରେ ବାଡ଼ୋଙ୍ଗ ମାନସିକ ଚିକିତ୍ସାଳୟରେ ଭର୍ତ୍ତି ହେଲା ପର୍ଯ୍ୟନ୍ତ ।

ଆଉ ହୋୟର ପତ୍ନୀ, ପୁଣିଥରେ କାମରୁ ଘରକୁ ବଳକା ଖାଦ୍ୟ ଆଣିବା ଆରମ୍ଭ କରିଦେଲା, ହୋୟର ପ୍ରିୟ ଛେଳିମାଂସ ସହ । ହେଲେ ପ୍ରତିଦିନ ଖାଇବା ଆଗରୁ ହୋୟ ଅତି ସାବଧାନତାର ସହ ଖବରକାଗଜରୁ ମୃତ୍ୟୁ ସମ୍ବାଦଗୁଡ଼ିକୁ ପଢୁଥିଲା । ଯେତେବେଳେ ସେ ଏକଦମ୍ ନିଶ୍ଚିତ ହେଉଥିଲା ଯେ ଟୋନ୍ ତା ସ୍ୱାମୀର ମୃତ୍ୟୁ ଖବର ଘୋଷଣା କରିନାହିଁ ବା ଡିଏଁକୁ ବାଣ୍ଡୋକ୍ ହୋଟେଲର ସ୍ୱତନ୍ତ୍ର ଥାଳି ବିଭାଗକୁ ବିକିଦେଇ ନାହିଁ – କେବଳ ସେତିକିବେଳେ ହୋୟ ଶାନ୍ତଭାବରେ ତା ଦରସିଝା ଛେଳିମାଂସ ଖାଇ ଖୁସି ହେଉଥିଲା ।

୪

# ଗୋଟିଏ ଲୋକ–କଳାକାରର କାହାଣୀ

## ଗୁୟେଁ ଫାନ୍ ହାକ୍

*ହାନୋଇଠାରୁ ଉତ୍ତରକୁ ତିରିଶ କିଲୋମିଟର ଦୂରରେ ଡାଙ୍ଗ ହୋ ଗ୍ରାମ କାଠ ଖୋଦେଇ ଲୋକ ସ୍ଥାପତ୍ୟ ପାଇଁ ଖ୍ୟାତ । ଶତାବ୍ଦୀ ଯେତେବେଳେ କଡ଼ ଲେଉଟାଇଲା, ଏହି କୌଳିକବୃତ୍ତି ଚୀନ୍ ଓ ୟୁରୋପ ଉତ୍ପାଦିତ ଆଧୁନିକ ଖୋଦେଇ ସହ ପ୍ରତିଯୋଗିତାର ସମ୍ମୁଖୀନ ହୋଇ ଭୟାନକ ଭାବେ କ୍ଷତିଗ୍ରସ୍ତ ହେଲା ଓ ଲୁପ୍ତପ୍ରାୟ ଅବସ୍ଥାକୁ ଆସିଗଲା । ବର୍ତ୍ତମାନ ପୁନର୍ବାର ଡାଙ୍ଗ ହୋ କାଠ ଖୋଦେଇ କୁଟୀରଶିଳ୍ପର ପୁନରୁଦ୍ଧାର ପାଇଁ ଚେଷ୍ଟା ଚାଲିଛି ।*

*ସଂପାଦକ*

ସାତପୁରୁଷ ଆଗେ ମୋ ପୂର୍ବପୁରୁଷ ଥିଲେ ଜଣେ ମୂର୍ତ୍ତିଖୋଦକ । ଆଜି ଏଇ ଯେଉଁ ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଘରଟିର ଆଳଙ୍କାରିକ କାଠଖୋଦେଇ ଦେଖୁଛନ୍ତି, ତାହାକୁ ସେଇ କରିଥିଲେ । ତାଙ୍କୁ ଏଇ କାମ କରିବାକୁ ଆଦେଶ ଦେଲାବେଳେ ଗାଁ ମୁଖିଆମାନେ ତାଙ୍କୁ କହିଥିଲେ :

"ଦେଖ, ତୁମେ କାଠରେ ଯେଉଁ ଖୋଦେଇ କରିବ, ତାହା ପୌରାଣିକ ଚାରୋଟି ପ୍ରାଣୀଙ୍କୁ ନେଇ ହେବ : ଡ୍ରାଗନ୍, ଏକ ଶୃଙ୍ଗ ବିଶିଷ୍ଟ କିମ୍ବଦନ୍ତୀୟ ଅଶ୍ୱ, କଇଁଛ ଆଉ ଫୋନିକ୍ସ ପକ୍ଷୀ ।"

"ମୁଁ କେବଳ ତାହାହିଁ ଖୋଦେଇ କରେ, ଯାହା ମୋତେ ଆନନ୍ଦ ଦିଏ ।"

"ତୁମକୁ କ'ଣ ଆନନ୍ଦ ଦିଏ ?"

"ପୁରୁଷକୁ ଦେବଲୋକ ଦେଇଥିବା ସୁନ୍ଦର, ମହାର୍ଘ ବସ୍ତୁମାନ ।"

"ଠିକ୍‌ଅଛି କହି ମୁରବୀମାନେ ତାଙ୍କୁ ଦୃଢ଼ତାର ସହ ଆଶ୍ୱସ୍ତ କଲେ । ପୁଣି ସେମାନେ କହିଲେ, ପ୍ରତିଜ୍ଞା କର ତୁମ କଥା ରଖିବ ।"

"ମୁଁ ପ୍ରତିଜ୍ଞା କରୁଛି ।"

ତାପରେ ସାତପୁରୁଷର ଜେଜେବାପା ଉତ୍ସାହର ସହିତ କାମ କରିବା ଆରମ୍ଭ

କରିଦେଲେ । ସେ ସ୍ଥୂଳକାଷ୍ଠକୁ କାଟି ଆକୃତିମାନ ବନାଇଲେ, କିଶୋରୀମାନଙ୍କ ଅବଗାହନର ମୂର୍ତ୍ତି, ନିଜର ନଗ୍ନତାକୁ ଗୋଟିଏ ପଦ୍ମପତ୍ରରେ ଲୁଚାଇବା ; ବାଳକମାନଙ୍କର ସେମାନଙ୍କ ବକ୍ଷୋଜକୁ ସ୍ପର୍ଶ, ଆଉ ବାଳକବାଳିକା ପରସ୍ପରର ଉପରେ ।

ସେ ଅଳ୍ପ କେତୋଟି ସହକାରୀଙ୍କୁ ଧରି ଅତି ଗୁପ୍ତରେ କାମ କରୁଥାନ୍ତି । ଯେତେବେଳେ ଗାଁ ସଭାଘରଟି ଉଦ୍‌ଘାଟିତ ହେଲା, ଗ୍ରାମର ମୁଖ୍ୟ ଦେବଦେବୀ, ରକ୍ଷକମାନଙ୍କ ସମ୍ମାନାର୍ଥେ ଗୋଟିଏ ଉତ୍ସବର ଆୟୋଜନ ସେଦିନ କରାଯାଇଥିଲା ।

ଉତ୍ସବରେ ଯୋଗଦେବାକୁ ଗ୍ରାମର ପ୍ରଧାନମାନେ ବିଧିସମ୍ମତ ପୋଷାକ ପରିଧାନ କରି ଆସିଥିଲେ । ସେତିକିବେଳେ ସେଇଠି ସେମାନେ ଆବିଷ୍କାର କଲେ ଯେ ଛାତର ଠିକ୍ ତଳକୁ କାଛ ଉପରେ ଥିବା ଖୋଦିତ କଳାକୃତିଗୁଡ଼ିକ ଆପତ୍ତିଜନକ ଭାବରେ ଅଶ୍ଳୀଳ ।

ଚାବୁକ ପ୍ରହାରରେ ଦଣ୍ଡିତ ହେବାକୁ ଠିକ୍ ଯାଉଥିବାବେଳେ ମୋ ସାତପୁରୁଷର ଜେଜେବାପା ପ୍ରତିବାଦ କଲେ : "ଏକଥା କ'ଣ ସତ ନୁହେଁ ଯେ ମାନବ ଶରୀରର ଆକୃତି ସ୍ୱର୍ଗଲୋକ ଦ୍ୱାରା ଗଠିତ ?"

"ହଁ", ଉତ୍ସବରେ ଯୋଗଦେଇଥିବା ଯୁବକମାନେ ଗୋଟିଏ ସ୍ୱରରେ କହିଲେ ।

"ସ୍ୱର୍ଗଲୋକ ଯାହା ତିଆରି କରିଛନ୍ତି, ମୁଁ ତାର ନକଲ କେବଳ କରିଛି", କହିଲେ ମୋ ପୂର୍ବପୁରୁଷ ।

"ହଁ, ହଁ, ତାହାହିଁ ସେ କରିଛନ୍ତି", ଦର୍ଶକମଣ୍ଡଳୀ ଚିତ୍କାର କଲେ । "ଆପଣମାନେ କେମିତି କହିବାକୁ ଦୁଃସାହସ କରୁଛନ୍ତି ଯେ ସ୍ୱର୍ଗଲୋକ ଯାହା ଗଢ଼ିଛନ୍ତି ତାହା କୁତ୍ସିତ ଓ ଅଶ୍ଳୀଳ ?"

ପ୍ରସିଦ୍ଧ ବ୍ୟକ୍ତିମାନେ ବିବ୍ରତ ଚାହାଣି ବିନିମୟ କଲେ । ସେମାନଙ୍କ ଭିତରୁ କେହି ଜଣେ ବି ଦେବଲୋକ ବିରୁଦ୍ଧରେ ପାଟି ଖୋଲିବାକୁ ସାହସ କଲେ ନାହିଁ ।

ମୋ ସାତପୁରୁଷୀ ଜେଜେବାପା କହିଚାଲିଲେ, "ଏବେ ଦେଖନ୍ତୁ, ଏହି ମାନବାକୃତିର ଏହି ସଙ୍ଗମ ସ୍ୱର୍ଗଲୋକ ଦ୍ୱାରା ମଣିଷକୁ ଶିଖା ହୋଇଛି । ନହେଲେ ମଣିଷ କେମିତି ଏହା ଅନ୍ୟଭାବରେ ଜାଣିପାରିଥାନ୍ତା ? ଏତଦ୍‌ବ୍ୟତୀତ, ଏହାହିଁ ସ୍ୱର୍ଗର ସବୁଠାରୁ ବଡ଼ ଦାନ । ଆପଣମାନେ ସମସ୍ତେ କ'ଣ ବହୁତ ସନ୍ତାନସନ୍ତତି ଚାହାନ୍ତି ନାହିଁ ? ମତେ କୁହନ୍ତୁ, ଆପଣଙ୍କ ଭିତରୁ କିଏ ଈଶ୍ୱରଙ୍କ ଏ ଦାନକୁ ସ୍ୱୀକାର ନକରିବାର ସାହସ କରିବ ?"

ମୁଖ୍ୟମାନେ ନୀରବ ରହିଲେ । ଯୁବ ଗ୍ରାମବାସୀଙ୍କ ମଧ୍ୟରେ ପୁଲକିତ ଆନନ୍ଦ ଖେଳିଗଲା ।

ମୋ ପୂର୍ବପୁରୁଷଙ୍କ କାରିଗରୀ ସମସ୍ତଙ୍କ ପ୍ରଶଂସା ଓ ଧ୍ୟାନ ଆକର୍ଷଣ କରିଥିଲା ।

ତାଙ୍କ ଯଶ ଦୂରଦୂରାନ୍ତରରେ ବି ବ୍ୟାପ୍ତ ହୋଇଯାଇଥିଲା । କିନ୍ତୁ ଗୋଷ୍ଠୀ-ସଭାଗୃହର ସ୍ଥପତିଭାବରେ ସେ ତାଙ୍କର ନିଯୁକ୍ତି ହରାଇ ବସିଲେ । ଅନ୍ୟ ଗ୍ରାମର ପ୍ରବୀଣମାନେ 'ସ୍ୱର୍ଗୀୟ ସୁନ୍ଦରତାର ନକଲ' କରିବାର ସୁଯୋଗ ତାଙ୍କୁ ଦେବାକୁ ମନା କରିଦେଲେ ।

ହେଲେ ସେ ନିଜକୁ ପରାଜିତ ମନେକଲେ ନାହିଁ । ସେ ଭିନ୍ନ ବାଟରେ ସ୍ୱର୍ଗଲୋକକୁ ନକଲ କରିବା କାମ ଜାରି ରଖିଲେ । ଛୋଟ-ବଡ଼ କାଠଖଣ୍ଡମାନ କାଟି, ସେଥିରେ ଖୋଦେଇ କଲେ, ଯେଉଁଥିରୁ ଛାପା ବ୍ୟବହାର ପ୍ରଚଳିତ ହେଲା । ଏହାହିଁ ଥିଲା ଡାଙ୍ଗ ହୋରେ ତିଆରି ହେଉଥିଲା ଲୋକ-ଖୋଦନ-ଶିଳ୍ପର ପ୍ରାରମ୍ଭ । ଏଇ କାଠ ଖୋଦେଇର ନିପୁଣ ବ୍ୟବସାୟ ବହୁତ ପିଢ଼ି ଧରି ଚାଲିଲା ।

ଡୋଙ୍ଗନଦୀ, ଯେଉଁଟି ଆମ ଗାଁ ବାଟଦେଇ ବହିଯାଇଛି, ତାର ନୀଳଜଳ ବେଣୀରେ ସାରା ଦେଶରୁ ବେପାରୀମାନଙ୍କ ନୌକାର ଗହଳି ଲାଗିଲା ସେହି ଖୋଦିତ ମୂର୍ତ୍ତି କିଣି ନେବାକୁ ।

ଚନ୍ଦ୍ରଚର୍ଚ୍ଚିତ ରଜନୀରେ, ମୋ ଗାଁର ବାଳକବାଳିକାମାନେ ଗାଁର ପ୍ରବେଶ ପଥରେ ଥିବା ପଦ୍ମପୋଖରୀକୁ ଯିବାକୁ ଭଲପାଆନ୍ତି, ଭଲପାଆନ୍ତି ସମୀରଣ ହିଲ୍ଲୋଳରେ ପ୍ରସ୍ଫୁଟିତ ପଦ୍ମର ସୁଗନ୍ଧ ଆଘ୍ରାଣ କରିବାକୁ । ତାପରେ, ଯୋଡ଼ି ଯୋଡ଼ି ହୋଇ, ସେମାନେ ଜୋ ଗଛର ଛେଲିକୁ ଜୋର ଆଘାତ କରି ଛଡ଼ାନ୍ତି, ଯେଉଁ ବଳ୍କଲରୁ କାଠ ଖୋଦେଇ ପାଇଁ କାଗଜ ତିଆରି ହୁଏ । ବାଳକଟି ଗଛଗଣ୍ଡିକୁ ପିଟଣାରେ ପିଟି ଛିଦ୍ର କରି ସମୟ ଅତିବାହିତ କଲାବେଳେ ଝିଅଟିର ଅନାବୃତ କାନ୍ଧକୁ ଦୋହଲାଇ କେଶରାଶି ପବନରେ ଉଡୁଥାଏ ।

ଲୁହା ପିଟଣାର ଶବ୍ଦ ରାତ୍ରିର ନିସ୍ତବ୍ଧତା ଭେଦ କରି ଆଖପାଖ ଗାଁମାନଙ୍କରେ ବି ଶୁଣାଯାଉଥିଲା । ସାଧାରଣତଃ ପୁଅଟି ଦେହରୁ ଝାଳବୋହିବା ଆରମ୍ଭକଲାବେଳକୁ ଛାଲି ଗୁଣ୍ଡ ପ୍ରସ୍ତୁତ ହୋଇଯାଉଥିଲା । ଝିଅଟି ଝାଳର ବାସ୍ନା ବାରିପାରୁଥିଲା ଆଉ ତା ସାଙ୍ଗକୁ ସେତିକିରେ ବନ୍ଦ କରିବାକୁ କହୁଥିଲା । ପୁଅଟି କିନ୍ତୁ ଝିଅର ଝାଳବାସ୍ନା ବାରିପାରୁନଥିଲା କାରଣ ଏହା ଘାସ ଆଉ ଫୁଲର ବାସ୍ନାଠାରୁ ଅଲଗା ନଥିଲା ।

ଚରମ ସମୃଦ୍ଧି ଦିନରେ, ଡାଙ୍ଗ ହୋ ଗ୍ରାମ ଚାନ୍ଦ୍ରମାସ ଶେଷଯାଏଁ କର୍ମଚଞ୍ଚଳ ରହୁଥିଲା ।

ଛେଲିଗୁଣ୍ଡ ମିଶ୍ରିତ ଶାମୁକାର ଚକଚକିଆ ଭିତର ଆବରଣ ପୋଡ଼ିବା ପାଇଁ ଭାଟିରୁ ଧୂଆଁ ଆକାଶକୁ ଉଠିଲା । ଲମ୍ବା କାଗଜ ଉପରେ ଧଳା ଶାମୁକାଗୁଣ୍ଡ ବୋଳାହୋଇ ଖରାରେ ଶୁଖିବାକୁ ବିଛାଇ ଦିଆଯାଉଥିଲା । କାଠଖୋଦେଇ ମାଲ କିଣିବାକୁ ଆସୁଥିବା ବ୍ୟବସାୟୀମାନେ ଛୋଟ ଛୋଟ ସରାଇଖାନାରେ ଉଷ୍ମ ମଦ୍ୟପାନ କରୁଥିଲେ । ଯୁବବ୍ୟବସାୟୀମାନେ ଗାଁର ସୁନ୍ଦର ଝିଅମାନଙ୍କୁ ଆସନ୍ତାବର୍ଷକୁ ଆସିବାର ପ୍ରତିଶ୍ରୁତି ଦେଇ ବିଦାୟ ନେଉଥିଲେ ।

ଏହାସତ୍ତ୍ୱେ, ବର୍ଷ ବିତିବା ସହିତ ବେପାରୀଙ୍କ ସଂଖ୍ୟା କମିକମି ଆସିଲା । ଡାଙ୍ଗ ହୋ'ରେ ଗଛକୁ ପିଟିବା ଶବ୍ଦ କମ୍‌ରୁ କମ୍ ଶୁଣାଗଲା ।

ଆମ ପରିବାର ପାଇଁ ଦୁର୍ଭାଗ୍ୟର କଥା, ଡାଙ୍ଗ ହୋ ଉନ୍ନତ ଥିଲାବେଳେ ମୋ ବାପା କିଛି ନକରି ସମୟ କଟାଇ ଦେଉଥିଲେ । କାମର ବୋଝ ମାଆ ଉପରେ ଅଧିକ ପଡ଼ିଲା । ପିଲାହେଲେ ବି ମୋତେ ମାଆକୁ ତାର ବ୍ଲକ୍ ଛାପା କାମରେ ସାହାଯ୍ୟ କରିବାକୁ ପଡୁଥିଲା ।

ହେଲେ ମୋ ମା' ଦ୍ୱାରା କାଠ ଖୋଦେଇ ଛାପା ବେପାରୀମାନଙ୍କର ବିଶେଷ ପସନ୍ଦ ହେଉନଥିଲା, ସେମାନେ ଅନ୍ୟ ଗ୍ରାମରେ ତିଆରି କାମକୁ କିଣିବାକୁ ଅଧିକ ଆଗ୍ରହ ଦେଖାଉଥିଲେ । ସେମାନେ କହୁଥିଲେ, ଏ ଡିଜାଇନ୍ ଅତି ପୁରୁଣା ଆଉ ରଙ୍ଗ ବିଶେଷ ଉଜ୍ଜ୍ୱଳ ନୁହେଁ ।

ଅତୀତରେ ମୋ ବାପା ଅତି ଚମତ୍କାର ଛବି କାଠରେ ଖୋଦେଇ କରିଥିଲେ । କିନ୍ତୁ ବେପାରୀମାନଙ୍କ ଦରକଷାକଷିରେ ଧୀରେ ନିଜ କାମରୁ ଆଗ୍ରହ ତାଙ୍କର କମିଗଲା ଆଉ ସେ ମଦ ପିଇବା ଆରମ୍ଭ କରିଦେଲେ ।

ବର୍ଷେ, ପୂଜାଉତ୍ସବ ପାଖେଇ ଆସୁଥାଏ, ଆମ ପରିବାର ଅତି ଅସୁବିଧା ଭିତରେ ଗତି କରୁଥାଏ । ମୋ ମାଆ ଛବି-ଛାପା କାମ ଛାଡ଼ି ଛୋଟ ଛୋଟ ଘରକରଣା ଜିନିଷ ଧରି ବୁଲାବିକାଳି କାମ କରୁଥାନ୍ତି, ଆଉ ବାପା ନିଜକୁ ପାରା ପୋଷିବାରେ ଲଗେଇ ଦେଇଥାନ୍ତି କାରଣ ଦୁଇମାସ ପରେ ପାରା-ଉଡ଼ାଣ ପ୍ରତିଯୋଗିତା ହେବାର ଥାଏ । ପ୍ରତିଦିନ ସେ ପଞ୍ଜୁରିଭର୍ତ୍ତି ପାରାନେଇ ପାଖ ଗାଁକୁ ଯାଆନ୍ତି । ସେଇଠି ସେ ପିଞ୍ଜରା ଖୋଲି ପାରାମାନଙ୍କୁ ଉଡ଼ାଇଦେଇ ଘରକୁ ଫେରିଆସନ୍ତି ଦେଖିବାକୁ କେମିତି ସୁନ୍ଦର ଦଳବଦ୍ଧ ହୋଇ ପକ୍ଷୀମାନେ ଫେରିଆସିବେ । ଦିନେ ସେ ଫେରିଆସିଲାବେଳକୁ ମୁଁ ଗୋଟେ ପୂରା ଗାଙ୍ଗୁଲାଏ ଛେଲିଗୁଣ୍ଡବୋଳା ଶାମୁକା ଫୋପାଡ଼ି ଦେଉଥିଲାବେଳେ ସେ ମୋତେ ଦେଖିପକାଇଲେ ।

ରାଗରେ ପଚାରିଲେ, "ତୁ ଏ କ'ଣ କରୁଛୁ ?"

"ମାଆ କାଠବ୍ଲକଗୁଡ଼ା ଫିଙ୍ଗି ଦେଇଛି ।"

"କାହିଁକି ?" ସେ ଆଶ୍ଚର୍ଯ୍ୟ ହୋଇଗଲେ ।

"ଆମ ଛବି ଆଉ ବିକ୍ରି ହେଉନାହିଁ ।"

ବାପା ଥକ୍କା ହୋଇ ଠିଆହୋଇ ରହିଲେ, ତାଙ୍କ ଆଖି କ୍ଲାନ୍ତ ଓ ଉଦାସ ହୋଇ ଝୁଲିପଡ଼ିଥିଲା । ପାରାଦଳ ତାଙ୍କ ଚାରିପଟେ ଅବତରଣ କରିବାର ଦୃଶ୍ୟ ପ୍ରତି ତାଙ୍କର ନିଘା ନଥିଲା ।

ତାପରେ ଅଚାନକ ପରଦିନ ସକାଳେ ମୁଁ ଦେଖିଲି, ବାପା ଗୋଟେ ପଟାଖଟ

ଉପରେ ବସିଛନ୍ତି, ତାଙ୍କ ଚାରିପଟେ କଟାକାଗଜର ଗଦା, ରଙ୍ଗତୂଳୀ ଆଉ ରଙ୍ଗଡ଼ବା । ସକାଳଓଳିସାରା ସେ ସେଇଠି ବସିରହିଲେ, ମଝିରେ ମଝିରେ ଗୋଟେ ବୋତଲରୁ ଚାଉଳି ମଦପିଇ, କେଉଁ ଛବି ଆଙ୍କିବେ ସେଇ ଚିନ୍ତାରେ ମଗ୍ନ ଥାଆନ୍ତି ।

ଖରାବେଳକୁ, ମାଆ ଯେତେବେଳେ ବଜାରରୁ ଫେରିଲା ଦେଖିଲା ବାପା ଗୋଟେ କାଗଜ ଉପରେ ନଇଁପଡ଼ିଛନ୍ତି । କାଗଜଟି ପଟାଖଟ ଉପରେ ବିଛା ହୋଇଛି, ଆଉ ବାପା ତା ଉପରେ ଗୋଟେ ଚିତ୍ରର ଡ୍ରଇଁ ଆଙ୍କିବାରେ ମଗ୍ନ ।

ମାଆକୁ ଦେଖିପକେଇ ବାପା ଅସାଧାରଣ କୋମଳସ୍ୱରରେ ପଚାରିଲେ, "ଦେଖିଲ, ଏ ଚିତ୍ରଟି ତୁମକୁ କେମିତି ଲାଗୁଛି ?"

"ଅତି ସୁନ୍ଦର !" ମାଆ ଉତ୍ତର ଦେଲା । ସେ ଜାଣିପାରିଲା ଯେ ଏବର୍ଷସାରା ଗାଁରେ ଆମରି ପରିବାର ହିଁ ସବୁଠାରୁ ସୁନ୍ଦର ଖୋଦେଇ ତିଆରି କରିବ ।

ସେ ତରବର ହୋଇ ଘର ଭିତରୁ ଅଧିକା କାଗଜ, କାଠଖଣ୍ଡ, ଗୋଟେ ଦାଢୁଆଛୁରୀ ଆଉ ଗୋଟେ ମଦବୋତଲ ବି ବାପାଙ୍କ ପାଖରେ ଆଣି ଥୋଇଦେଲା ।

ବାପା କୁଶଳତାର ସହ ନିଜ କାମ କରିବାରେ ଲାଗିପଡ଼ିଲେ । ଅତିବେଶୀରେ ଦୁଇଦିନ ନପୂରୁଣୁ ମୋ ମାଆ ହାତରେ ଥିଲା ଗୋଟେ ନୂଆବ୍ଲକ, ଯେଉଁଥିରୁ ସେ ଛବି ଛାପାକାମ କରିପାରିବ । ଏ ଛବିର ଚିତ୍ରିତ ବିଷୟ ଥିଲା : 'ପ୍ରଥମ ଡାକ୍ତର'ର ଉଲ୍ଲସିତ ପ୍ରତ୍ୟାବର୍ତ୍ତନ–ଗୋଟିଏ ମୂଷା ଦ୍ୱାରା ପ୍ରତିନିଧିତ୍ୱ–ତା ନିଜ ପୁରୁଣା ଗାଁକୁ । ଆନୁଷ୍ଠାନିକ ପୋଷାକ ପରିହିତ, ନୂଆ ସ୍ନାତକ ଡିଗ୍ରୀଧାରୀ ଗୋଟିଏ ଘୋଡ଼ା ଉପରେ, ପଛରେ ଆସୁଛି ତାର ପତ୍ନୀ ଗୋଟିଏ ପାଲିଙ୍କିରେ । ହରି ହେ, ବିଲେଇଟିଏ ତାକୁ ଅପେକ୍ଷା କରିଛି ଗଳିମୁଣ୍ଡରେ !

ଅନ୍ୟ ଉତ୍ପାଦନକାରୀଙ୍କ କୌତୂହଳରୁ ବଞ୍ଚାଇ କାଠ ଖୋଦେଇଗୁଡ଼ିକୁ ଗୋଟିଏ କୋଠରିରେ ଥାକ ଥାକ କରି ରଖିଦିଆଗଲା । ଏପରିକି ବେପାରୀମାନେ, ଯେଉଁମାନଙ୍କୁ ନମୂନା ଦିଆଯାଉଥିଲା, ସେମାନେ ବି ପରସ୍ପରଠାରୁ ଏହାକୁ ଗୋପନ ରଖିଥିଲେ ।

ମାଆ ମୁହଁରେ ସନ୍ତୋଷର ଝଲକ ଦେଖି ବାପା ଉତ୍ସାହିତ ହୋଇଉଠିଲେ । ସେ ଆହୁରି କଠିନ ପରିଶ୍ରମ କଲେ : ତାଙ୍କର ଏହାପର ଖୋଦେଇ ବିଷୟ ଥିଲା, କ୍ଷୁଦ୍ର ବାଳକଟି ଗୋଟେ ଶିଶୁ ମଇଁଷ ଉପରେ ବସିଛି ଆଉ ମଇଁଷି ଶିଶୁଟି ବାଳକ ବଜାଉଥିବା ବାଉଁଶର ବଇଁଶୀ ସ୍ୱରରେ ମୋହିତ ହେଉଛି । ବାଳକଟିର ମଥାଟି ସୂର୍ଯ୍ୟକିରଣ ନପଡ଼ିବା ପାଇଁ ଗୋଟିଏ ପଦ୍ମପତ୍ର ଆଢୁଆଳରେ ରହିଛି । ଏହି ଛବିଟିର ଶୀର୍ଷକ : "ଗୋଟିଏ ସବୁଜ ପଦ୍ମପତ୍ର ଗୋଟେ ଭଲ ଛତା ।"

ବ୍ୟବସାୟୀମାନେ ନୂଆ କାଠ ଖୋଦେଇ ଦେଖି ବହୁତ ଖୁସି ହୋଇଗଲେ । ଯେତେବେଳେ ସେମାନେ ଜାଣିଲେ ଯେ ମୋ ବାପା ସେସବୁର ସୃଜନଶିଳ୍ପୀ ଆହୁରି

ଆଶ୍ଚର୍ଯ୍ୟ ହେଲେ । ଦଳଦଳ ହୋଇ ସେମାନେ ଆସି ବାପାଙ୍କୁ ଘରେ ଅଗ୍ରୀମ ଅର୍ଡ଼ର ଦେଇଗଲେ ।

ବହୁବର୍ଷଯାଏଁ ଆମର ଖୁବ୍ ସଫଳ ବ୍ୟବସାୟ ଚାଲିଲା । ଆମ ପରିବାର ଅନ୍ୟମାନଙ୍କ ତୁଳନାରେ ଅଧିକ ଆରାମରେ ରହିଲେ ଆଉ ନିଜର ନ୍ୟାଯ୍ୟ ପ୍ରତିଷ୍ଠା ଭୋଗ କଲେ । କିନ୍ତୁ ତାପରେ ଆସିଲା ଦୁର୍ଭାଗ୍ୟ କାରଖାନା ଉତ୍ପାଦିତ ଫ୍ରେଞ୍ଚ କାଗଜ ଉପରେ ଅଙ୍କିତ ଚିତ୍ର ଆଉ ରସାୟନଯୁକ୍ତ ରଙ୍ଗର ପ୍ରତିଯୋଗିତା ରୂପରେ । ସେସବୁ ସହଜରେ ତିଆରି ହୋଇପାରୁଥିଲା ଆଉ ଆମ ଲୋକଚଳଣିରେ ହାତତିଆରି କାଗଜ ଓ ଉଦ୍ଭିଦ-ଅଣୁ ପ୍ରସ୍ତୁତ ରଙ୍ଗ ଉପରେ କାଠ ଖୋଦେଇ ଚିତ୍ର ଛାପାଠାରୁ ବହୁତ ଶସ୍ତା ବି ଥିଲା । ହେଲେ ସେଗୁଡ଼ା ଅସୁନ୍ଦର ଦିଶୁଥିଲା । ସେ କାଗଜରେ ଗଛଛାଲି ଗୁଣ୍ଡଗୋଳା ଶାମୁକା ଆସ୍ତରଣବୋଳା କାଗଜର ସିଲ୍‌କୀ ଚମକ ନଥିଲା ଆଉ ରଙ୍ଗସବୁ ଥିଲା ରୁଚିହୀନ ଭାବରେ ଚକମକ । ସେଥିରୁ ଗୋଟାଏ ଆଖିରେ ପଡ଼ିଗଲେ ବାପା ନିଜ କ୍ରୋଧ ସମ୍ଭାଳି ପାରୁନଥିଲେ । ଯେଉଁ ଗ୍ରାମବାସୀମାନେ ସେଭଳି ଉତ୍ପାଦନରେ ମଜ୍ଜି ଯାଇଥିଲେ, ବାପା ସେମାନଙ୍କ ଉପରେ ଗାଳି ବର୍ଷିଯାଉଥିଲେ । ହେଲେ ତାଙ୍କ ରାଗକୁ କେହି ଗୁରୁତ୍ୱ ଦେଉନଥିଲେ । 'ଫ୍ରେଞ୍ଚ କାଗଜ' ଉପରେ ଚିତ୍ରଗୁଡ଼ିକୁ ଶସ୍ତାରେ, ସହଜରେ ପିଲାମାନଙ୍କୁ ବିକ୍ରି କରାଯାଇପାରୁଥିଲା । ହେଲେ ସେଗୁଡ଼ାକ ଏତେ ଅଶାଳୀନ ଥିଲା ଯେ ଖୁବ୍ ଶୀଘ୍ର ବୟସ୍କମାନଙ୍କୁ ଅସନ୍ତୁଷ୍ଟ କଲା । ବୟସ୍କମାନେ ଅତି ଚଞ୍ଚଳ ପିଲାମାନଙ୍କୁ ସେଗୁଡ଼ା କିଣିବାକୁ ବାରଣ କଲେ । ଠିକ୍ ଏତିକିବେଳେ ଆଉ ଗୋଟିଏ ନୂଆ ପ୍ରତିଯୋଗୀ ଆସି ପହଞ୍ଚିଗଲା ।

ବହୁତ ଦିନର ଅନୁପସ୍ଥିତି ପରେ ସେହି ଛବି ବେପାରିଟି ଗାଁକୁ ଆସିଥିଲା । ସେ ଡଙ୍ଗାରେ ଆସିନଥିଲା, ଆସିଥିଲା ଗୋଟେ ଘୋଡ଼ାଗାଡ଼ିରେ । ଘୋଡ଼ାକୁ ବାନ୍ଧିଦେଲା ପରେ ସେ ସିଧା ଆସି ଆମ ଘରେ ପହଞ୍ଚିଲା । ମୋ ମାଆ ତାକୁ ଦେଖି ଚକିତ ହୋଇଗଲା, "କି ଅପୂର୍ବ, ଗଲାଥର ତମ ଆସିବା ପରଠାରୁ କେତେ ବର୍ଷ ବିତିଗଲାଣି । ମୁଁ ତୁମପାଇଁ ନୂଆ ଛବିଗୁଡ଼ିଏ ରଖିଛି ।

"ତୁମ କାଠ ଖୋଦେଇର ଦର ଭାରି ଚଢ଼ା ।"

ମାଆ ପଚାରିଲା, "ତୁମେ କ'ଣ ଫ୍ରେଞ୍ଚ କାଗଜରେ ଅଙ୍କା ସେଇସବୁ ଛବି ଖୋଜୁଛ କି ?"

"ଛେଃ ! କି ବାଜେ ଜିନିଷ !" ବେପାରୀଟି ତୁରନ୍ତ ପ୍ରତିବାଦ କଲା । ତାପରେ ଧୀରେ ଚୋବେଇ ଚୋବେଇ କହିଲା, "ମୁଁ ବିକିବାକୁ ଆସିଛି, କିଣିବାକୁ ନୁହେଁ !" ଏତିକି କହି, ସେ ମୋ ବାପାଙ୍କୁ ତା' ଘୋଡ଼ାଗାଡ଼ି ପାଖକୁ ଡାକିନେଇଗଲା, ଆଉ ଗାଡ଼ି ଭିତରୁ ଛବିର ବିଡ଼ାମାନ ବାହାରକଲା ।

ଏସବୁ ଥିଲା ବହୁତ ବଡ଼ ଆକାରର ମେସିନ୍ ଦ୍ୱାରା ଛାପା ହୋଇଥିବା ଛବି ।

ଏହାର ବିଷୟ ଚୀନ୍‌ଦେଶର କାହାଣୀକୁ ଅଣା ହୋଇଥିଲା ଓ ଛବିରେ ଚୀନ୍‌ର ଯୋଦ୍ଧା, ରାଜକୁମାରୀ ଓ ପରୀଙ୍କ ଚିତ୍ର ଥିଲା ।

ଛବି ଦେଖାଇବା ସହ ବେପାରିଟି କହିଚାଲିଥିଲା, "ଏସବୁ ସାଙ୍ଘାଇରେ ଛପା ହୋଇଛି । ସୁନ୍ଦର ହୋଇନି ? ଏଗୁଡ଼ାକ ବହୁତ ଶସ୍ତା ବି । ତୁମ ଲୋକ-କଳାର ଗୋଟେ କୁକୁଡ଼ା କି ଗୋଟେ ଘୁଷୁରି ଦାମ ସହିତ ଏ ପରୀର ଦାମ ସମାନ ହେବ ।"

ମୋ ବାପା ସ୍ତବ୍ଧ ହୋଇ ଛବିକୁ ଅନେଇ ଥାଆନ୍ତି । ତାଙ୍କ ପାଟିରୁ ଗୋଟେ ଶବ୍ଦ ବି ବାହାରି ପାରୁନଥାଏ ।

ଶେଷରେ ସେ କହିଲେ, "ମୁଁ ଛବି ନିର୍ମାଣ କରେ, ବେପାର କରେନି ।"

"ମୂର୍ଖଙ୍କ ପରି କହନି, ଶେଷକୁ ଖାଇବାକୁ ପାଇବ ନାହିଁ", କହିବା ସହିତ ବେପାରୀଟି ଉପହାସାତ୍ମକ ହସ ହସିଲା । "ଜଣେ ଲୋକ-ଚିତ୍ରକର ଭାବରେ ତୁମ ପ୍ରତିଭା ବର୍ତ୍ତମାନ ତୁମର କେଉଁ କାମରେ ଲାଗିବ ନାହିଁ । ଯଦି ଭଲଗତି ଅଛି ମୋଠାରୁ ଏଗୁଡ଼ିକ କିଣିନିଅ ଆଉ ତୁମର ଲାଭ ରଖି ପୁଣି ବିକି ଦିଅ ।"

"ତୁମେ ନିଜେ କାହିଁକି ଏଗୁଡ଼ିକୁ ବିକୁ ନାହଁ ? ମୋର ସାହାଯ୍ୟ ତୁମର ଦରକାର କ'ଣ ?"

"କାରଣ ତୁମେ ମୋ ସାଥିରେ ମିଶି ଏକାମ କରବୋଲି ମୁଁ ଚାହୁଁଛି ।" ଏଥର ବେପାରୀଟି ଅଧିକ ଅନ୍ତରଙ୍ଗ ହସ ହସି ଉତ୍ତରଦେଲା, "ମୁଁ ତୁମର ସହଯୋଗ ଦରକାର କରେ । ତୁମେ ଜଣେ ଯଶସ୍ୱୀ କଳାକାର । ତୁମ ଛବି ସବୁଠି ସମ୍ମାନ, ଉଚ୍ଚ ପ୍ରଶଂସା ପାଇଛି, ତୁମ ନାମ ବି ସମସ୍ତେ ଜାଣନ୍ତି, ତୁମକୁ ଆଦର କରନ୍ତି । ତୁମ ସହଯୋଗ ପାଇଲେ ମୋ ଛବି ଆହୁରି ଅଧିକ ବିକ୍ରି ହେବ ।"

"ନା, ତୁମର ଏ ଦ୍ରବ୍ୟ ସହିତ ମୋର କିଛି କରିବାର ନାହିଁ ।" ମୋ ବାପା ପଛକୁ ବୁଲିପଡ଼ି ଫେରିଆସିଲେ ।

ବେପାରୀଟି ତାଙ୍କ ପଛରେ ଗୋଡ଼େଇ ଗୋଡ଼େଇ ବାରମ୍ବାର କହୁଥାଏ, "ତୁମକୁ କେତେଗୁଡ଼ିଏ ନମୂନା ଦେଇଯିବାକୁ ମୋତେ ଅନୁମତି ଦିଅ, ପ୍ଲିଜ୍ । ସେଗୁଡ଼ିକ ତୁମ କାନ୍ଥରେ ଚିପକେଇ ଦିଅ, ଆଉ କେହି ଦେଖିବାକୁ ଆସିଲେ ସେମାନଙ୍କୁ ଏହା ବେପାରୀ ଡା'ର ଛବି ବୋଲି କହିବ । ଏତିକି ସାହାଯ୍ୟ ତୁମଠାରୁ ମୁଁ ଚାହୁଁଛି ।"

ସେ ବାପାଙ୍କ ହାତରେ ବିଡ଼ାଏ ଛବି ·ଗୁଞ୍ଜିଦେଲା । ମୁଁ ସେଗୁଡ଼ିକ ଦେଖି ଖୁସି ହୋଇଗଲି ଆଉ ସାଙ୍ଗେ ସାଙ୍ଗେ କାନ୍ଥରେ ଲଗାଇଦେଲି । ବାପା କେତେ ପିଆଲା ଚାଉଳି ପିଇଗଲେ, ତାପରେ ଦୁଇ ପାପୁଲିରେ ମୁହଁକୁ ଲୁଚାଇ କଇଁ କଇଁ ହୋଇ କାନ୍ଦିଲେ । ମୋ ମାଆ ଏତେ ଡରିଯାଇଥିଲା ଯେ କାନ୍ଥ ଉପରୁ ଛବିଗୁଡ଼ାକ ଟାଣିଆଣି ଚିରିଦେବାକୁ ତରତର ହେଉଥିଲା ।

ସେଇ ଚାଇନା ତିଆରି ଛବିଗୁଡ଼ିକ ତାଙ୍କ ହୋ କାଠ ଖୋଦେଇ ଶିଳ୍ପକୁ ବଜାରରୁ ପୂରା ତଡ଼ିଦେଲା । ଜୋ ଛେଲି ଉପରେ ଲୁହା ପିଟଣାର ଧପ୍‌ଧପ୍ ଶବ୍ଦ ଆଉ ଶୁଣାଯାଉନାହିଁ । ଖରାରେ ଆଉ ଖଣ୍ଡେ ବି ଶାମୁକା ଗୁଣ୍ଡବୋଳା କାଗଜ ଶୁଖୁନାହିଁ । ଗ୍ରାମବାସୀ କାନ୍ଦୁଛନ୍ତି ସେଇ ସୁନେଲି ଦିନଗୁଡ଼ିକୁ ମନେପକେଇ, ଯାହା ଆଉ କେବେ ଫେରିବାର ନାହିଁ ।

ତାପରେ ଦିନେ ରାତିରେ, ସେମାନେ ପିଟଣାର ଧପ୍‌ଧପ୍ ଶବ୍ଦରେ ଉଠିପଡ଼ିଲେ । ସେମାନେ କ'ଣ ସ୍ୱପ୍ନ ଦେଖୁଥିଲେ କି ? ନା, ପବନରେ ଭାସିଆସୁଥିବା ଧ୍ୱନି ଥିଲା ସମ୍ପୂର୍ଣ୍ଣ ବାସ୍ତବ । ମୁଁ ନିଦରୁ ଉଠିପଡ଼ିଲି ଆଉ ଅଗଣାକୁ ଧାଇଁଲି । ଦେଖିଲି, ମୋ ବାପା ଆଉ ମାଆ ଗୋଟେ ଛୋଟ କମାଣ ଆକୃତିର ଲୁହା ଦସ୍ତା ଧରି ଜୋ ଗଛର ଛେଲିକୁ ପିଟୁଛନ୍ତି । ଦୁହେଁ ଦୁଇଟି କିଶୋର କିଶୋରୀ ପରି ଆବେଗରେ ଉତ୍ତେଜିତ ହୋଇ ଛେଲିଗୁଣ୍ଡ କାମରେ ଲାଗିଥାଆନ୍ତି । ପରଦିନ ସକାଳୁ ମୋ ମାଆ ନୂଆକରି ତିଆରି କରିଥିବା ବିଶୁଦ୍ଧ ପତଳା କାଗଜ ଖଣ୍ଡମାନ ଚଉତରାରେ ବିଛାଇ ଦେଇଥିଲା ଶୁଖିବାକୁ ।

ମୁଁ ପଚାରିଲି, "ଆମର ତ ବିକ୍ରି ନହୋଇ ଅନେକ ଚିତ୍ର ଅଛି, ଆଉ ଅଧିକା କାଗଜ କାହିଁକି ବନେଇଲୁ ?"

"ଏଥିରେ ତୋର ମୁଣ୍ଡ ଖେଳାଇବା ଦରକାର ନାହିଁ", ବାପା ଗାଳିଦେଲେ । ତାପରେ ସେ ଶାମୁକାର ଚକଚକିଆ ଭିତର ଆବରଣରେ ଜୋ ଗୁଣ୍ଡ ଗୋଳାଇ ପୋଡ଼ିବାକୁ ଭାଟିରେ ନିଆଁ ଜଳାଇଲେ । ଉତ୍ତରାପବନରେ ଧୂଆଁ ଉପରକୁ ଉଠିଗଲା ଆଉ ଶାମୁକା ପୋଡ଼ାର ବାସ୍ନା ଆଖପାଖ ଲୋକଙ୍କୁ ଚମକାଇଦେଲା ।

ବାପା ପ୍ରଫୁଲ୍ଲ ଦେଖାଗଲେ । ତାଙ୍କ ଖଟଣି ତାଙ୍କୁ ସାରାଦିନ ବ୍ୟସ୍ତ ରଖିଲା । ହେଲେ ସେ ଯେପରି କିଛି ଅଦ୍ଭୁତ ପରୀକ୍ଷା କରିବାକୁ ଆଗ୍ରହୀ ଥିଲେ । ଯେମିତି କାଗଜଖଣ୍ଡମାନ ଶୁଖିଗଲା ମାତ୍ରେ, ସେ ତା ପରେ ପାଣି ଛିଞ୍ଚି ଦେଉଥିବେ, ପୁଣିଥରେ ନେଇ ଖରାରେ ଶୁଖାଇ ଦେଉଥିବେ ।

ମୁଁ ତାଙ୍କୁ ଏପରି କରିବାର କାରଣ ପଚାରିଥିଲି, ହେଲେ ସେ ତ କେବେ କିଛି କହନ୍ତି ନାହିଁ ।

ଏହିପରି କାଗଜ ଓଦା ହୁଏ ପୁଣି ଶୁଖାହୁଏ ବାରମ୍ବାର । ମୁଁ ଆବିଷ୍କାର କଲି ଯେ ଏହା ପଡ଼ୋଶୀଙ୍କୁ ଏଇ ଧାରଣା ଦେବାକୁ ଉଦ୍ଦିଷ୍ଟ ଥିଲା ଯେ ମୋ ପରିବାର ଛେକ ପରେ ଛେକ କାଗଜ ତିଆରି କରୁଛନ୍ତି ।

ମୋ ବାପା ଉତ୍ସାହର ସହିତ ଚିତ୍ରାଙ୍କନ, ଖୋଦେଇ କାମ କରୁଥିଲେ । ତାଙ୍କ ଚାରିପଟେ କାଠର ଛାଞ୍ଚ ଗଦାହୋଇ ରହିଥିଲା, ଆଉ ଛବିର ନମୂନା । ତାଙ୍କ ହୋର ସବୁଠାରୁ ସମୃଦ୍ଧ କାଳଠାରୁ ବି ଏବେ ସେ ଅଧିକ କାର୍ଯ୍ୟବ୍ୟସ୍ତ ରହୁଥିଲେ ।

ହେଲେ ମୋ ବାପା ଚିତ୍ର ଖୋଦେଇ କରୁଥିଲେ କେବଳ ଚିତ୍ର ତ ଖୋଦେଇ ନିମନ୍ତେ । ସେ କୌଣସି ଛାପା ଉତ୍ପାଦନ କରୁନଥିଲେ କାରଣ ଘରେ କୌଣସି କାଗଜ ନଥିଲା ।

ମାସରେ ଥରେ, ମୋ ମାଆବାପା ନିଶ୍ଚୟ ଢୋ ଛେଲି ପିଟିବା କାମରେ ସାରା ସଂଧ୍ୟାଟି କଟାଇ ଦେଉଥିଲେ । ହେଲେ ସେମାନଙ୍କ ପିଟଣା କେବଳ ଲୁହା ଦସ୍ତାର ଫମ୍ପା ଧ୍ୱନି ଥିଲା । ଏହା ପିଟଣା ଧ୍ୱନିକୁ ଅଧିକ ଗମ୍ଭୀର କରୁଥିଲା ରାତ୍ରିର ନିସ୍ତବ୍ଧତା ଭିତରେ ମାଆ ଯେତେବେଳେ କ୍ଳାନ୍ତ ହୋଇଯାଉଥିଲା ମୋ ବାପା ତାକୁ ବାଧ କରୁଥିଲେ ... ।

ପ୍ରଥମେ ପ୍ରଥମେ ଗାଁ ଲୋକେ ଆଶ୍ଚର୍ଯ୍ୟ ହେଉଥିଲେ ।

ସେମାନେ ପରସ୍ପରକୁ ପଚରାପଚରି ହେଉଥିଲେ : "କେଉଁଠି ସେ ତାର ଏତେ ଛବିକୁ ବିକୁଥିବ ? "

"ସେ ଦୂର ଜାଗାରେ ସେଗୁଡ଼ିକୁ ବିକେ । ମୁଁ ତ ନିଜ ଆଖିରେ ଦେଖିଛି ଗାଁରୁ ବଡ଼ ବଡ଼ ବଣ୍ଡଲ୍ ନେଇଯିବାର ।"

"ହଁ, ତା ଛବି ଭଲ ବିକ୍ରି ହେଲା ପରି ଲାଗୁଛି ।"

"ଏ ତ ଆମ କଳା–କାରିଗରୀ ପାଇଁ ସୌଭାଗ୍ୟର କଥା । ଅନ୍ତତଃ ଗୋଟାଏ ତ ପରିବାର ଅଛି ଯିଏ ଏହାକୁ ବଞ୍ଚାଇ ରଖିଛି ।"

ଯାହାହେଲେ ବି ଶୀଘ୍ର ଲୋକେ ସନ୍ଦେହ କରିବାକୁ ଲାଗିଲେ ଆଉ ପ୍ରଶ୍ନ ପଚାରିବା ଆରମ୍ଭ କରିଦେଲେ ।

"ଯଦି ସେ ଏତେ ଭଲ ବେପାର କରୁଛି, ତାହେଲେ ଦିନକୁ ଦିନ ଗରିବ ହୋଇଯାଉଛି କାହିଁକି ?"

"ସେ ଏତେ ବେଶୀ ମଦ କାହିଁକି ପିଉଛି ?"

"ଦିନସାରା ସେ ଘରେ ରହୁଛି କାହିଁକି ?"

"କେଉଁଠାରୁ ସେ ଏତେବେଶୀ ପରିମାଣର ଶାମୁକାଗୁଣ୍ଡ ପାଉଛି ?"

"ମତେ ତ ଲାଗୁଛି ଯେମିତି ଲୁହା ଦସ୍ତାଟା ଫମ୍ପା ।"

ହଁ, ମୋ ବାପା ନିୟମିତ ବଜାରକୁ ଯାଉଥିଲେ । ପ୍ରତିଥର, ସେ ଦୁଇଟା ବ୍ୟାଗ୍ ଭର୍ତ୍ତିକରି ଛବି ନେଉଥିଲେ । ତିନିଦିନ ପରେ ସେ ଘରକୁ ଫେରୁଥିଲେ ସତ, ହେଲେ ଅଧରାତି ବେଳକୁ : ସେ ଚାହୁଁନଥିଲେ କେହି ଜାଣୁ ଯେ ତାଙ୍କ ଦ୍ରବ୍ୟଗୁଡ଼ିକ ବିକ୍ରି ହୋଇନାହିଁ । ଆଉ ରହିଲା ମୋ କଥା, ମୁଁ ଜାଣିଥିଲି ଯେ ସେ ଗୋଟେ ବି ଛବି ବିକି ପାରିନାହାନ୍ତି । ସେ କେବଳ ତାଙ୍କର ଗୋଟେ ସାଙ୍ଗ ଘରେ କେତେ ଦିନ ରହି ଘରକୁ ଫେରି ଆସୁଥିଲେ ଗାଁ ଲୋକଙ୍କୁ ଧାରଣା ଦେବାକୁ ଯେ ସେ ଛବି ବିକୁଥିଲେ, ଆଉ ଭଲରକମ ବିକି ଚାଲିଥିଲେ ।

ଦୁର୍ଭାଗ୍ୟକୁ ଥରେ, ଘାଟରେ ଡଙ୍ଗା ନପାଇବା ଯୋଗୁଁ ମୋ ବାପା ଘରେ ପହଞ୍ଚିଲାବେଳକୁ ସକାଳ ହୋଇଯାଇଥିଲା ।

ଗାଁ ଭିତରକୁ ଠିକ୍ ପଶିଲାବେଳକୁ କେତେଜଣ ଗ୍ରାମବାସୀ ତାଙ୍କୁ ଦେଖିଦେଲେ । ସେମାନଙ୍କ ଭିତରେ ଜଣେ ଯୁବକ ଥିଲା ଯିଏ ବିଶେଷଭାବରେ ମୋ ବାପାଙ୍କ ଖ୍ୟାତି ପ୍ରତି ଅସହିଷ୍ଣୁ ଥିଲା । ସେ ମୋ ବାପାଙ୍କ ହାତରୁ ଗୋଟେ ବଣ୍ଡଲ ଛଡ଼ାଇନେଲା ଆଉ ତୁରନ୍ତ ଖୋଲି ପକାଇବାକୁ ଚେଷ୍ଟାକଲା । ଏଇ ଧସ୍ତାଧସ୍ତିର ପରିଣତି ହେଲା ଛବିଯାକ ଖେଳେଇ ହୋଇ ମାଟିରେ ପଡ଼ିବା । ସେସବୁ ଦେଖି, ଯୁବକଟି ଅଟ୍ଟହାସ୍ୟ କରି ଅଞ୍ଚଳ କମ୍ପାଇଦେଲା । କ୍ରୋଧରେ ପାଗଳ ହୋଇ, ମୋ ବାପା ଯୁବକର ମୁହଁରେ ଜୋର୍ ଗୋଟେ ଚାପୁଡ଼ା ପକାଇଲେ ଆଉ ତତଲା ଲୁହ ଗଡ଼ାଇ କାନ୍ଦି ପକାଇଲେ ।

ପବନରେ ଭିନ୍ନ ଭିନ୍ନ ଦିଗକୁ ଉଡ଼ିଯାଉଥିବା ଛବିଗୁଡ଼ିକୁ ଲୋକେ ଡାଟକା ହୋଇ ଅନାଇଥିଲେ । ଯୁବକଟିର ହସ ହଠାତ୍ ବନ୍ଦ ହୋଇଗଲା । ତାପରେ ତା' ଆଖିରୁ ବି ଲୁହ ବୋହିଚାଲିଲା ।

ସେଇ ରାତିରେ, ଗାଁର ଲୋକମାନେ ନିଜ ନିଜ ପିଟଣା ବାହାର କରିଆଣିଲେ, ଆଉ ଫମ୍ପା କମାଣ ଉପରେ ପିଟି ଲାଗିଲେ ।

ଲୌହଦସ୍ତାର ପିଟାଧ୍ୱନି ଶାନ୍ତରାତିର ବକ୍ଷ ଭେଦି ଚାରିଆଡ଼େ ପ୍ରତିଧ୍ୱନିତ ହେଲା । ସତେ ଯେପରି ଏହା ସହିତ ସମୃଦ୍ଧ ଅତୀତ ଫେରିଆସିଥିଲା, ହେଲେ ସମସ୍ତେ ଜାଣିଥିଲେ ଯେ ଏହା ସତ୍ୟ ନଥିଲା ।

ଦିନେ ବେପାରୀ ତା' ଶଗଡ଼ରେ ଶଗଡ଼େ ହେବ ଛବି ଧରି ଗାଁରେ ପହଞ୍ଚିଲା । ସେ ଆସି ଗୋଟେ ପାନ୍ଥଶାଳାରେ ଅଟକିଲା । ସରାଇଖାନାଟି ଗୋଟେ ବିଧବା ଯୁବତୀ ଚଳାଉଥିଲା । ଅଧରାତିରେ କିଛି ଅସ୍ୱାଭାବିକ ବିପଦର ସମ୍ଭାବନାରେ ତା' ନିଦ ଭାଙ୍ଗିଗଲା ଆଉ ତା ପ୍ରେମିକାର ମୁଣ୍ଡତଳୁ ବାହୁ ଟାଣିଆଣି ସେ ବାହାରକୁ ଦୌଡ଼ିଆସିଲା । ତା' ଶଗଡ଼, ଯେଉଁଥିରେ ଚୀନ୍ ତିଆରି ଛବି ଥିଲା, ନିଆଁଲାଗି ଜୋର୍ ଜଳୁଥିଲା । ଚିତ୍କାର କରି ସେ ଶଗଡ଼ ଆଡ଼କୁ ଧାଇଁଲା ଆଉ ନିଆଁ ଲିଭାଇବାକୁ ଚେଷ୍ଟାକଲା । ଜୋର୍ ପବନ ଦ୍ୱାରା ଅଗ୍ନିଦେବ ଖୁବ୍ ଶୀଘ୍ର ଶଗଡ଼ ଓ ତହିଁରେ ଥିବା ସମସ୍ତ ବସ୍ତୁକୁ, ମୁହୂର୍ତ୍ତକରେ ଗଦାଏ ପାଉଁଶରେ ପରିଣତ କରିଦେଲେ ... ।

୬

# ମୃତ ଆତ୍ମାର ଗହ୍ୱର

## ଡୋଙ୍ଗ୍ ଥୁ ହୋଙ୍ଗ୍

ଦୁଇ ପାହାଡ଼ ମଝିରେ ଥିବା ସେଇ ସଂକୀର୍ଣ୍ଣ ଖାଇ ଭିତରୁ ମୃତ ଆତ୍ମାମାନଙ୍କର ହାଉହାଉ ହୋଇ ବହିଆସୁଥିବା ପବନର ଅଟ୍ଟହାସ୍ୟ ରାତିସାରା ମୁଁ ଶୁଣୁଥିଲି । ଅନ୍ତହୀନ, ବିଳମ୍ବିତ କାନ୍ଦଣା ମଝିରେ ମଝିରେ ବାଧାପ୍ରାପ୍ତ ହେଉଥିଲା ଦୀର୍ଘଶ୍ୱାସ ଓ କୋହଦ୍ୱାରା । ବେଳକୁବେଳ ଏହା ଏକ ଉତ୍ତେଜିତ, ଉତ୍ତପ୍ତ ଘୋଟକୀର କ୍ଷୀଣ କରୁଣ କ୍ରନ୍ଦନ ପରି, ମୋ ଘର ଛାତର ଭଙ୍ଗା ବାଉଁଶ ପୋଲ ବାଟଦେଇ ହୁଇସିଲ ମାରିବା ଶବ୍ଦ କରୁଥିଲା, ଆଉ ସାରା ଅଞ୍ଚଳକୁ ବିକଟାଳ ଧ୍ୱନି ସମନ୍ୱିତ ସଙ୍ଗୀତରେ ମଛି ଦେଉଥିଲା ।

ଆମ କିରୋସିନି ଲ୍ୟାମ୍ପର ଶିଖା ଥରଥର ହୋଇ କମ୍ପିଉଠିଲା । ଚାଦରତଳୁ ମୁଣ୍ଡଟି କାଢ଼ି, ମୁଁ ଲ୍ୟାମ୍ପଟିକୁ ଲିଭାଇଦେଲି, କାମନା କରୁଥିଲି ରାତ୍ରିର ଅନ୍ଧକାର ଭିତରେ ମୋ ଦେହ, ଆତ୍ମା ସମେତ ପାତାଳଗାମୀ ହୋଇଯାଆନ୍ତା କି ! କାନ୍ଥ ଉପରେ, ଗୋଟେ ଶୁଖିଲା ଡାଳ ଛିଣ୍ଡିପଡ଼ି ଧପ୍‌କିନା ଶବ୍ଦ ହେଲା । ଶୋଇବା ଅସମ୍ଭବ ଥିଲା ଏ ସ୍ଥିତିରେ, ଏଣୁ ମୁଁ ଜପ କରିବା ଆରମ୍ଭ କରିଦେଲି ।

"ପ୍ରିୟ ଭଉଣୀମାନେ, ତୁମେ ଯେଉଁମାନେ ମାନବରୂପରେ ଏଇଠି ଖେଳିଛ, ଏଇଠି ମୃତ୍ୟୁବରଣ କରି ଆମଠାରୁ ବିଚ୍ଛିନ୍ନ ହୋଇଯାଇଛ, ଆଉ ଭୂତପ୍ରେତରେ ଆମକୁ ଡରାଅ ନାହିଁ । ଆମକୁ ରକ୍ଷାକର, ଆମ ଶରୀରକୁ ସୁରକ୍ଷିତ ରଖ, ଆମ ଆତ୍ମାମାନଙ୍କର ପଥକୁ ଆଲୋକିତ କର ଯେପରି ପ୍ରତିଟି ସଂଗ୍ରାମରେ ଆମେ ବିଜୟ ଲାଭ କରିବୁ । ଯେତେବେଳେ ସମୃଦ୍ଧି ଓ ପ୍ରଶାନ୍ତି ଆମ ଦେଶକୁ ଆସିବ, ଆମେ ତୁମକୁ ବୋହି ନେଇ ତୁମ ପୂର୍ବପୁରୁଷଙ୍କ ଭୂମିରେ ଛାଡ଼ିଦେଇ ଆସିବୁ ।"

ପବନର ଗତିରୋଧ କରିବାକୁ ମୁଁ କମ୍ବଳଟିକୁ ମୁହଁ ଉପରକୁ ଟାଣିଆଣିଲି । ହେଲେ ପବନର ଗତି ବଢୁଥିଲା ସିନା କମିବାର ନାମ ନେଉନଥିଲା । ମୃତ ଆତ୍ମାର ଗହ୍ୱର ଭିତରୁ ଉଠିଆସୁଥିଲା ସୁ ସୁ ଶବ୍ଦ ।

ଦୁଇ ସପ୍ତାହ ଆଗରୁ ଆମେ ଛଅଟି ଝିଅଙ୍କୁ ସେଠି ପୋତିଥିଲୁ । ସକାଳୁ ସକାଳୁ ମୁଁ

ଆଉ ଲାହ୍ନାର ଦଳ ମିଶି ବାଉଁଶ ଗଜା ସଂଗ୍ରହ କରିବାକୁ ଯାଇଥିଲୁ । ଖରାବେଳ ଠିକ୍ ଗଡ଼ିଆସିଲାବେଳକୁ ଆମେ ଅଭିଶପ୍ତ ଆତ୍ମାର ଖାଇରେ ପହଞ୍ଚିସାରିଥିଲୁ । ଦଳଦଳ ଶାଗୁଣା ଆମ ଉପରେ ଉଡ଼ିଲାଗିଥିଲେ, କେତେବେଳେ ଭୂଇଁଆଡ଼କୁ ତଳମୁହାଁ ହୋଇ ଖସିଆସୁଥିଲେ ତ ପୁଣି ଏକାସାଥିରେ ଉପରକୁ ଆକାଶ ଆଡ଼କୁ ଉଡ଼ିଯାଉଥିଲେ । ସେଗୁଡ଼ାଙ୍କ ଚିତ୍କାର ଅଞ୍ଚଳର ନୀରବତା ଭାଙ୍ଗିଦେଉଥିଲା । ଲାହ୍ନା ହଠାତ୍ ଅଟକିଯାଇ କ'ଣ ଶୁଙ୍ଘିଲାପରି ନାକ ଉଠେଇଲା । ଆଖପାଖରେ ନିଶ୍ଚୟ ଗୋଟେ ମଡ଼ା କେଉଁଠି ପଡ଼ିଛି ! ଇସ୍, କି ଦୁର୍ଗନ୍ଧ !

ପ୍ରକୃତରେ ଗନ୍ଧ ହେଉଥିଲା । ଆମେ ଯେତେଯେତେ ଆଗକୁ ଚାଲିଲୁ, ଦୁର୍ଗନ୍ଧ ସେତେ ବଢ଼ିଚାଲିଲା । କେହି ଜଣେ ପ୍ରସ୍ତାବ ଦେଲା, ଚାଲ ଫେରିଯିବା । ହେଲେ ଲାହ୍ନା ଆମ ଉପରେ ଚାପପକାଇଲା, "ନା, ହୁଏତ ପୁରୁଷଟିଏ ହୋଇଥିବ, କିଏ ଜାଣେ ? ଆମ ଭିତରୁ କେହି ଜଣେ ଆମ ନିଜର ବି ହୋଇପାରେ ।"

"ଚାଲ ଦେଖିଆସିବା", ମୁଁ କହିଲି ।

ଆମେ ଜଙ୍ଗଲର ସେଇଆଡ଼କୁ ଆଗେଇ ଚାଲିଲୁ ଯେଉଁଠାରୁ ଏଭଳି ଭୟାନକ ଦୁର୍ଗନ୍ଧ ବାହାରୁଥିଲା । ସେଠାରେ ଛଅଟି ଉଲଗ୍ନ ମୃତଦେହ ଆମେ ଦେଖିଲୁ । ସମସ୍ତେ ନାରୀ । ସେମାନଙ୍କ ସ୍ତନ ଓ ଜନନେନ୍ଦ୍ରିୟ କଟା ହୋଇଥିଲା ଆଉ ମୃତଦେହ ଚାରିପଟେ ବିକ୍ଷିପ୍ତ ହୋଇ ପଡ଼ିଥିଲା । ସେମାନେ ଥିଲେ ଉତ୍ତରାଞ୍ଚଳର କନ୍ୟା ; ପାରାଚୁଟ କପଡ଼ାରୁ ତିଆରି ସେମାନଙ୍କ ଉତ୍ତରୀୟ ଆଉ ସେମାନଙ୍କ ବ୍ଲାଉଜର ପଦ୍ମପାଖୁଡ଼ା ପରି କଲାର ଦେଖି ଆମେ ଜାଣିପାରିଥିଲୁ ସେମାନେ କେଉଁଠାର । ସେମାନେ ନିଶ୍ଚୟ କେଉଁ ସମାଜସେବୀ ଦଳର ବା ଭ୍ରାମ୍ୟମାଣ ଗୋଷ୍ଠୀର ଅନ୍ତର୍ଭୁକ୍ତ ହୋଇଥିବେ, ଯେଉଁମାନେ ବାଟ ଭୁଲିଯାଇଥିଲେ । ଅଥବା ଆମରି ପରି ସେମାନେ ଏଠାକୁ ବାଉଁଶ ଗଜା ବା ମାଟି କନ୍ଦା ଅନ୍ୱେଷଣରେ ଆସିଥିଲେ ।

ଶତ୍ରୁମାନେ ସେମାନଙ୍କୁ ମାରିଦେବା ପୂର୍ବରୁ ଧର୍ଷଣ କରିଥିଲେ । ମୃତ ଶରୀରଗୁଡ଼ିକ ନୀଳକ୍ଷତରେ ପୂର୍ଣ୍ଣ ଥିଲା । ଏହିପରି ଏକଦା ଆକର୍ଷଣୀୟ, ତାରୁଣ୍ୟଭରା ଦେହଗୁଡ଼ିକ ପଚିସଢ଼ି, ଫୁଲିଯାଇ ଦେଖାଯାଉଥିଲା ବୟସ୍କ ମୃତବେଙ୍ଗ ପରି । ସେମାନଙ୍କ କ୍ଷତରେ, ମୁହଁରେ, ପାଟିରେ ଆଖିରେ ପୋକ ସାଲୁବାଲୁ ହେଉଥିଲେ । ମୋଟା ଧଳା ଲାଙ୍ଗୁଡ଼ା ପୋକ ଓ କୃମି ମେଞ୍ଚା ମେଞ୍ଚା ହୋଇ ମଢ଼ ଉପରେ ଚାଲୁଥିଲେ, କ୍ଷତଗର୍ଭରେ ପଶୁଥିଲେ ଆଉ ବାହାରୁଥିଲେ ଆସକ୍ତ ହୋଇ ଏକପ୍ରକାର ମଦ୍ୟପାନରେ ମତ୍ତ ହେଲା ପରି ।

ଲାହ୍ନାଦଳର ଜଣେ ସୈନ୍ୟ ତା ନାକ ଚିପି ଧରିଲା । "ଏ ଅପରିଚ୍ଛନ୍ନ ପୋକଦଳ, ସେଗୁଡ଼ା ସବୁଠି ଥାଆନ୍ତି ।"

"ଚାଲ, ଏ ଝିଅମାନଙ୍କୁ ସମାଧି ଦେଇଦେବା", ମୁଁ କହିଲି ।

ମୁଣ୍ଡ ଉପରେ ଶାଗୁଣାମାନଙ୍କର ଚକ୍ରାକାରରେ ଚକ୍କର କାଟିବା ସହିତ ଚିତ୍କାର ଲାଗି ରହିଥିଲା । ଆମ ମୁହଁ ଉପରେ ଝାଳବିନ୍ଦୁ ଜମି ଆସିଲା । ପଚାମାଂସର ଦୁର୍ଗନ୍ଧ ତ ସହଜେ ପବନରେ ଜମାଟ ବାନ୍ଧିଥିଲା । ଆମେ ମଡ଼ାଗୁଡ଼ିକୁ ଏକାଠି କଲୁ, ତା ସହିତ ଖଣ୍ଡ ଖଣ୍ଡ ମାଂସ ଏକାଠି କରିବା ପାଇଁ ଆମକୁ ଶାଗୁଣା ଆଉ କୃମି ପୋକଙ୍କ ସହ ଯୁଦ୍ଧ କରିବାକୁ ପଡ଼ିଥିଲା । ସେମାନଙ୍କୁ ଆମେ ପୋତିଦେଲୁ । ଝିଅମାନଙ୍କ ପକେଟ ଖାଲିଥିଲା ; ଟୁକୁରାଏ କାଗଜ ବି କେଉଁଠି ନଥିଲା, କେବଳ କେତେ ଖଣ୍ଡ ନାଲିନେଳି ଉଲ ଆଉ କେତେ ଖଣ୍ଡ ଗୁଆ । ଉଲ୍ ସେମାନଙ୍କ ଚୁଟି ବାନ୍ଧିବାକୁ, ଆଉ ଗୁଆ ଚୋବେଇବାକୁ । ସେମାନଙ୍କ ମନରେ ନିଶ୍ଚୟ ବିଶ୍ୱାସ ଥିଲା ଯେ ପୁଣିଥରେ ଖୁବ୍ ଶୀଘ୍ର ସେମାନେ ନିଜ ପୁରୁଷଙ୍କୁ ଭେଟିବେ ।

ମାଟି ଏଠି ଅଳ୍ପ ଖାଲ ଥିଲା, ଶବଗୁଡ଼ିକ ତେଣୁ ଛୋଟ ବୃତ୍ତାକାରରେ ଆମକୁ ପୋତିଦେବାକୁ ହେଲା । ଆମ କାମ ସରିଲାବେଳକୁ, ଗଣଗଣିଆ ମାଛି ଆଉ ପୋକ ମିଶି ଗୋଟେ ବହଳ ମନ୍ଦା ବନେଇ ସାରିଥିଲେ । ଲାମ୍ବା ଗୋଛାଏ ଶୁଖିଲା ପତ୍ର ତା ଉପରେ ଗଦେଇଦେଲା ଆଉ ନିଆଁ ଲଗେଇଦେଲା । କୀଟଙ୍କର ମଡ଼ମଡ଼ ଫୁଟିବା ଶବ୍ଦ ଶୁଣାଗଲା । ଆମେ ସେଇ ଶିଖା ଚାରିପଟେ ଠିଆ ହୋଇଥିଲୁ, କ୍ଲାନ୍ତ, ଶ୍ରାନ୍ତ ଆଉ ଝାଳରେ ଗାଧୋଇ ।

ବାଉଁଶଗଜା ଯାହା ସଂଗ୍ରହ କରିଥିଲୁ ସେଇଠି ଫିଙ୍ଗିଦେଲୁ ଆଉ କ୍ୟାମ୍ପ୍‌କୁ ଫେରିଆସିଲୁ । ଗୋଟେ ବି ପରିବା ନାହିଁ । କେବଳ କେତେ ମୁଠା ଭାତ, ଲୁଣ, ଶୁଖିଲା ଲଙ୍କା ଆଉ ଶୁଖିଲା ଲେମ୍ବୁ । ଏହାହିଁ ଥିଲା ଆମ ଜୀବନ, ସୈନିକର ଜୀବନ ଆମର । ଦିନେ, କିଛି ବି ବଳକା ନଥିବ ସେଠାରେ ।

"କ୍ୱାନ୍, ହେ କ୍ୱାନ୍", ଲଏର ସ୍ୱର କୁଣ୍ଢେଇଲା ପରି ଶୁଭୁଥିଲା । ମୁଁ ଚଳିଲି ନାହିଁ । ସେ ଡାକି ଚାଲିଥିଲା, "ହେ କ୍ୱାନ୍, କ୍ୱାନ୍, ଶୋଇପଡ଼ିଛ କି ?"

ଶୋଇପଡ଼ିଥିବାର ଛଳନା କରି, ମୁଁ ପାଟି ଖୋଲିଲି ନାହିଁ । ଏଇମିତି ଛଳନା କରୁକରୁ ମୁଁ ସତରେ ଗାଢ଼ ନିଦରେ ଶୋଇପଡ଼ିଲି । ଗୋଟେ ଅଦ୍ଭୁତ ନିଦ୍ରା-ଧାରଣା ଉପରେ ଡେଇଁ ଡେଇଁ ଯାଉଥିବା ରେଳଗାଡ଼ି ପରି, ଯେକୌଣସି ମୁହୂର୍ତ୍ତରେ ଲାଇନ୍‌ଚ୍ୟୁତ ହେବାକୁ ତିଆର । ବିନା ଯାତ୍ରୀର ଗୋଟେ ଟ୍ରେନ୍, ବଗିମାନଙ୍କରେ ଭର୍ତ୍ତି ହୋଇଛି ଯୌବନର ସ୍ୱପ୍ନ, ବଡ଼ ବଡ଼ ଅକ୍ଷର ଖୋଦିତ ହୋଇଛି ନୀଳ-ବାଇଗଣୀ କାଳିରେ, ଲାଲ ଉତ୍ତରୀୟମାନ ବିକ୍ଷିପ୍ତ ହୋଇ ପଡ଼ିଛି ବଗି ଚଟାଣରେ । କେତେ ଖଣ୍ଡ ଭଙ୍ଗା ଚକ୍‌ଖଡ଼ି । ଗୋଟେ ମୁଣ୍ଡା ପେନ୍‌ସିଲ୍ । ଟ୍ରେନ୍ ଗଡ଼ିଚାଲେ, ମୂକ ଓ ବଧୀର ପରି । ରେଳଧାରଣାର ଉଭୟ ପାର୍ଶ୍ୱରେ, ଆଖି ପାଇଲାଯାଏଁ ଲମ୍ବିଯାଇଥାଏ ପରିତ୍ୟକ୍ତ ଖୋଲା ଜମି । ମୁଁ ପାଟିକରି କଣ୍ଡକ୍ଟରକୁ ଡାକିବାକୁ ଚାହେଁ, ଆଲାର୍ମ ଚେନ୍ ଟାଣିବାକୁ ଚାହେଁ ;

ଚାହେଁ ଚିଲ୍ଲେଇବାକୁ, ହେଲେ ମୁଁ ସ୍ଥାଣୁ ହୋଇଯାଏ, ଅଦୃଶ୍ୟ, ଅକୃତିହୀନ, ପ୍ରତ୍ୟଙ୍ଗ ବିହୀନ । ମୁଁ ଅନୁଭବ କରେ ମୋ ମୁହଁ ମିଳେଇ ଯିବାର, ସ୍ୱର ପବନରେ ମିଶିଯିବାର ... ।

"କ୍ୱାନ୍, ହେ କ୍ୱାନ୍ ।"

ମୋ ପିଠିରେ ବାଜିଲା ଗୋଟାଏ ବିଧା । ପାଣିତଳୁ ଉଠିଲା ପରି ମୁଁ ବହୁ ଗଭୀରତା ଭିତରୁ ଉଠିଆସିଲି । ଚକ୍‌ଚକ୍ ତରଙ୍ଗମାଳା ମୋ ଦେହରେ କୁଲୁକୁଲୁ ବାଜୁଥାଏ, ଧୀରେ ମାଠିମୁଠି ମୋ ମୁହଁ ବନାଉଥାଏ । ମତେ ଲାଗିଲା ଯେପରି ମୁଁ ଖୁସିରେ ମରିଯିବି । ପୁଣିଥରେ ମୋର ଗୋଟେ ମୁହଁ ଥିଲା ... ।

"କ୍ୱାନ୍, ଭାଇ, ଉଠ !"

ମୋର ଗୋଟେ ବାହୁ ବଧିରା ଲାଗିଲା ; ମରିଯାଇଥିଲା ବିଚାରା । ମୋର କମ୍ବଳ କାଢ଼ିଦେବାକୁ ମୁଁ ଏକଡ଼ ସେକଡ଼ ହେଉଥାଏ । "କ'ଣ ହେଲା ?"

"ଟଞ୍ଚଳ, ଆଗ ଉଠିପଡ଼, ମୁଁ ଏବେ ଗୋଟେ ଓରାଙ୍ଗଉଟାଂ (ବୃହତ୍, ଲମ୍ବବାହୁ ବାନର) ଦେଖିଲି ।"

ନିଜକୁ ମୁଁ ଏଥର ଆହୁରି ଜୋର କମ୍ବଳରେ ଆବୃତ୍ତ କରିନେଲି । ମୁଁ ଆଉ ଗଭୀରଜଳରେ ମିଳେଇଯିବାର ବସ୍ତୁ ହୋଇନଥିଲି ; ମୁଁ ଥିଲି ସ୍ୱଷ୍ଟଭାବରେ ମୋ ଦେହରେ ପ୍ରକାଶିତ, ହେଲେ ହଲିବାକୁ ସାହସ କରିପାରିଲି ନାହିଁ । ଏଇ ସୁଖରେ ମଜ୍ଜି ରହିବାକୁ ମୁଁ ଚାହୁଁଥିଲି, ଏଇ କମ୍ବଳମାନଙ୍କର ଉଷ୍ମତା, ମୁଁ ତଥାପି ବଞ୍ଚିଗଲି, ତଥାପି ମୁଁ ନିରାପଦ ଆଉ ସୁସ୍ଥ, ମୋ ଶରୀର ସହ, ସାରା ବିତିଶଟି ଦାନ୍ତ, ମୋ ଝାଲୁଆ ଓଦା ପାଦ ମୋଜା ଭିତରେ, ଅଣ୍ଟା ଚାରିପଟେ ମୋ ବେଲ୍‌ଟ ...

"ଉଠ, ବଡ଼ଭାଇ । ଆମ ହାତରେ ଢେର୍ ସମୟ ଅଛି ଶୋଇବାକୁ । ବିରାଟ ଗୋଟେ ଓରାଙ୍ଗଉଟାଂ । ଅତିକମ୍‌ରେ ଅଶୀ କିଲୋ ହେବ । ଉଠ ଶୀଘ୍ର !"

ମୁଁ ଚଳିଲି ନାହିଁ । ଲଏ ଲାଗିଥାଏ ମୋ ସାଙ୍ଗରେ । "ଉଠ, ପ୍ଲିଜ୍ । କେତେଦିନ ହେଲାଣି ଆମେ ତଟକା ମାଂସ ଖାଇନେ । ଆମ ଆଣ୍ଠୁ ଥରିବା ଆରମ୍ଭ କଲାଣି ଏ ଦୌଡ଼ାଦୌଡ଼ିରେ ।"

ତଥାପି ମୁଁ ହଲିଲି ନାହିଁ । ଲଏ ମତେ ଝିଙ୍କି ପକେଇଲା । "ଉଠ, ବଡ଼ଭାଇ । ସେନାଦଳ ଶେଷରେ ଖାଇବାକୁ ପାଇବେ ।"

କମ୍ବଳଟାକୁ ମୁହଁରୁ କାଢ଼ିପକାଇଲି ଶେଷରେ । "ତୁ ନିଜେ ଏକୁଟିଆ ଚାଲିଯାଉନୁ କାହିଁକି ?"

ଲଏ ମୁହଁ ବିଚିକିଟା କଲା । "ନା, ମୁଁ ଏକୁଟିଆ ଯିବି ନାହିଁ । ମତେ ଡର ମାଡୁଛି । ମୋ ସାଥିରେ ଆସ । ମୁଁ ଗୁଳି ଚଳେଇବି । ମୋ ଲକ୍ଷ୍ୟ କେବେ ଭ୍ରଷ୍ଟ ହୁଏ ନାହିଁ ।"

ମୁଁ ସିଧାହୋଇ ବସିଗଲି । "ତୁ ମାଇଚିଆ । ଏତେ ସକାଳୁ ତୁ ଏଠି କ'ଣ କରୁଛୁ ?"

"ମତେ ଭୋକ ଲାଗୁଛି । ପେଟ କଟକଟ ଡାକୁଛି, ଆସ ଆଉ ଜଲ୍‌ଦି ଜୋତା ପିନ୍ଧି ପକାଅ, ବଡ଼ଭାଇ । ଡେରି ହେଲେ ଆଉ ତାକୁ ପାଇବା ନାହିଁ । କି ଲଜ୍ଜାର କଥା ହେବ !"

ବିରକ୍ତ ହୋଇ ମୁଁ ଦୀର୍ଘଶ୍ୱାସ ପକାଇଲି : ଲଏ ସବୁବେଳେ ମତେ 'ବଡ଼ଭାଇ' ଡାକେ ଯେତେବେଳେ ତାର ମୋ ଠାରୁ କିଛି ଫାଇଦା ନେବାର ଥାଏ । ହେଲେ ମୁଁ ଜୋତା ଆଉ ଜାକେଟ୍ ଗଳେଇ ତା' ପଛରେ ଚାଲିଲି । ଜଙ୍ଗଲ ଭରପୂର ଥିଲା ମୋଟା କୁହୁଡ଼ିରେ, ଆଉ ଆମେ ଚାଲିଲାବେଳକୁ ଆମ ମୁହଁରେ ଶୀତଳ, ସିକ୍ତ ପତ୍ର ଘଷି ହେଉଥିଲା । ମୁଁ ତ ପୂରା କାଲୁଆ ହୋଇଯାଇଥିଲି । ଆମେ ଆଗେଇଚାଲିଥିଲୁ ରହସ୍ୟମୟ ଭାବରେ ଠିଆହୋଇଥିବା ଗଛ ଗହଳି ଭିତରଦେଇ । ଦୂରରେ ଗିବନମର୍କଟମାନଙ୍କ ଚିତ୍କାର ପ୍ରତିଧ୍ୱନିତ ହେଉଥିଲା ।

ମୁଁ ପଚାରିଲି, "ଏ ଅନ୍ଧାରରେ ତୁ କେମିତି ଗୋଟେ ମାଙ୍କଡ଼କୁ ଦେଖିପାରିଲୁ ?"

ଲଏ ହସିଲା । "ଚିଫ୍, ତୁମେ ଭୁଲିଯାଉଛ ଯେ ସାରା ସୈନ୍ୟଦଳ ଭିତରେ ମୋ ଦୃଷ୍ଟିଶକ୍ତି ସବୁଠାରୁ ତୀକ୍ଷ୍ଣ । ତୁମର ମନେଅଛି, ଯେତେବେଳେ ମୁଁ ପାହାଡ଼ ଉପରେ ସେ ଦି'ଟା ଚଢ଼େଇଙ୍କୁ ଗୋଟେ ଗୁଳିରେ ମାରିଦେଇଥିଲି ? ଆଉ କାରାମ୍ବୋଲା ପାହାଡ଼ ଉପରେ ବଣୁଆ ଛେଳି ଶୀକାରବେଳର କଥା ? ମନେଅଛି ତ ! ଯାହାହେଲେ ବି ଏଇଟା ମୋ ବନ୍ଧୁକ ।"

ମୁଁ ଗୁଁ ଗୁଁ ହୋଇ ସମ୍ମତି ଜଣାଇଲି ।

ଲଏ କହିଚାଲିଥିଲା, "କ'ଣ ତୁମ ସ୍ମୃତିଶକ୍ତି ଏତେ ଦୁର୍ବଳ ! ଏଇ କାରାମ୍ବୋଲା ପାହାଡ଼ ଉପରେ ହିଁ ତ ତୁମେ ପ୍ରଥମକରି ଓରାଙ୍ଗଉଟାଂ ମାଂସ ଚାଖିଥିଲ !"

ମୁଁ ଥରଥର କମ୍ପିଗଲି । ଭୁଲିନଥିଲି ମୁଁ, କେବଳ ମନେପକାଇବାକୁ ଚାହୁଁନଥିଲି । ହେଲେ ଲଏ ଏତେ ସହଜରେ ଛାଡ଼ିବା ଜନ୍ତୁ ନୁହେଁ । ସେ ଦାନ୍ତ ନିକୁଟେଇ, ମତେ ଅନେଇ ଆଖିମାରିଲା, "ମୋର ସ୍ମରଣଶକ୍ତି କିନ୍ତୁ ବହୁତ ଭଲ, କ'ଣ କହୁଛ, ଠିକ୍ ନା ନାହିଁ ?"

ମୁଁ କିଛି କହିଲି ନାହିଁ, କେବଳ ନଇଁପଡ଼ିଲି ମୋ ବାଁ ଗୋଡ଼ ଜୋତାରୁ ଜୋକଟାକୁ ଟାଣି ଫିଙ୍ଗିଦେବାକୁ । ତଥାପି ଅନ୍ଧାର ଥିଲା, ହେଲେ ମୋ ଅଙ୍ଗୁଳି ଟିପରେ ରକ୍ତ ଲାଗିଥିବା ମୁଁ ଠିକ୍ ଦେଖିପାରୁଥିଲି । ରକ୍ତର ବାସ୍ନା ସେଇ ଶୀତଳ କୁହୁଡ଼ି ଭିତରେ ଖେଳେଇ ହୋଇଗଲା, ଏହା ଥିଲା ପାହାଡ଼ିଲୋକେ ବ୍ୟବହାର କରୁଥିବା ନାସ ବା ନିଶାଦ୍ରବ୍ୟର ମିଠାଳିଆ ତଥା ବାନ୍ତି ଲାଗିଲା ପରି ବାସ୍ନା । ଲଏ କହିଚାଲିଥିଲା, "ବାଟ ଏଠି ଅତି ସରୁ । ମୁଁ ବାଟ ଦେଖାଇ ଆଗରେ ଚାଲୁଛି । ଆଜି ବଢ଼ିଆ ସୁପ୍ ମିଳିବ ଦିବାଭୋଜନରେ ।"

ସେ ଡଗଡଗ ହୋଇ ଆଗେଇଲା । କାରାଘୋଲା ପାହାଡ଼ର ପାଦଦେଶରେ ଆମେ ଖାଇଥିବା ଗରମ ସୁପ୍‌ର ଫୁଟୁଥିବା ବାଷ୍ପ ମୋ ନାକରେ ବାଜିଲା । ସୈନ୍ୟମାନେ ବୃତ୍ତାକାରରେ ବସି, ନିଜ ନିଜ ମେସ୍ ଟିଣ ଉପରେ ଚାମଚ ପିଟି ଚାଲିଥିଲେ, ଆଉ ସେମାନଙ୍କ ଆଖି ବାରମ୍ବାର ବାମ୍ପ ବାହାରୁଥିବା ସୁପ୍ ହାଣ୍ଡି ଉପରକୁ ଫେରିଆସୁଥିଲା । ମଝିରେ ମଝିରେ ରାନ୍ଧୁଣିଆ ସେଇ ସ୍ୱଚ୍ଛ ସୁପ୍‌କୁ ଘାଣ୍ଟୁଥିଲା, ସେଥିରେ ଭାସୁଥିଲା ଗନ୍ଧାଭାତ ... ଆଉ ଛୋଟ ଛୋଟ ଓରାଙ୍ଗଉଟାଂ ଆଙ୍ଗୁଳି, ପାପୁଲି ... କୁନିକୁନି ଶିଶୁଙ୍କ ହାତ ପରି ।

"ଚମତ୍କାର ! ବଢ଼ିଆ ଦିଶୁଛି ଇଏ ।"

"ଆଉ ମାତ୍ର ଦଶମିନିଟ୍ ଅପେକ୍ଷା କର, ଖାଇବା ପ୍ରସ୍ତୁତ । ଏହା ତ ବିଖ୍ୟାତ ଚାତକ-ବସା ସୁପ୍ ଠାରୁ ବି ଅଧିକ ସ୍ୱାଦିଷ୍ଟ ଲାଗିବ ।"

ପ୍ରତ୍ୟେକ ପରସ୍ପରକୁ ଅଭିନନ୍ଦନ ଜଣାଇଥିଲେ । ମୁଁ ସୁପ୍ ଉପରେ ଗୋଲାକାରରେ ଘୂରୁଥିବା ଛୋଟ ଛୋଟ ହାତଗୁଡ଼ିକୁ କେବଳ ଅନେଇ ରହିଥିଲି । ମାଙ୍କଡ଼ରୁ ଯେ ଆମ୍ଭର ବିବର୍ତ୍ତନ ହୋଇଛି - ଏହାରି ଆତଙ୍କ ।

ବହୁତ ଦିନତଳେ, ଉତ୍ତରରେ ହାଟଦିନମାନଙ୍କରେ, ମୁଁ କେତେପ୍ରକାରର ଭୟଙ୍କର ସୁପ୍ ଦେଖିଥିଲି । ଜଳନ୍ତା କୋଇଲା ଶଯ୍ୟାର ତିନିପଟେ ତିନୋଟି କଳାକଳା ପଥର, ଆଉ ତା ଉପରେ ବିରାଟ ଗୋଟେ ଲୁହାକଡ଼େଇ ବସୁଥିଲା । ସୁପ୍ ଉପରେ ପଙ୍କୁଆ ଆବର୍ଜନା ପରି ଜମିରହୁଥିଲା ମଇଁଷିଖଣ୍ଡ, ଘୁଷୁରିଖଣ୍ଡ, ପୂରା କଲିଜା, ପ୍ଲିହା ଆଉ ଘୋଡ଼ା ଖୁରା, ଯାହା ଫୁଟି ଫୁଟି ଉପରେ ଭାସୁଥିଲା ।

ସୁପ୍ ବିକାଳିଟି ଥିଲା ଗୋଟେ କଳା-ମୋଟା ଲୋକ ଆଉ ତା' ଦେହରୁ ଲହୁଣି ବୋହିପଡୁଥିଲା ଯେମିତି । ତା' ଟିକି ଟିକି ଆଖି ଦୁଇଟି ସରୁ ରେଖାପରି କପାଳ ଆଡ଼କୁ କୋଣେଇ ଯାଇଥିଲା । ତା' ଲଣ୍ଡାମୁଣ୍ଡଟି ଚକ୍‌ଚକ୍ କରୁଥିଲା । ସେ ବାଉଁଶର ଗୋଟେ ଲମ୍ବା ମୂନିଆ ବାଡ଼ିରେ ଫୋଡ଼ି ବଡ଼ବଡ଼ ମାଂସ ଖଣ୍ଡ ଛାଣି ଆଣୁଥିଲା ଆଉ ଗୋଟେ କାଠପଟା ଉପରେ ସେଗୁଡ଼ିକ ରଖୁଥିଲା, ଯେଉଁଠି ତାହାକୁ ସେ ଖଣ୍ଡ ଖଣ୍ଡ କରି କାଟିପକାଉଥିଲା ଗୋଟେ ଓଜନଦାର ଛୁରୀରେ । ସେହି ଛୁରୀ ଥିଲା ସେହିପରି ଯେଉଁଥିରେ ପ୍ରାଚୀନ ଏନମ୍ ରାଜ୍ୟର ଆଇନାନୁଯାୟୀ ସବୁଠାରୁ ମୋଟାବେକକୁ କଟାଯାଉଥିଲା ।

ମୁଁ ଆତଙ୍କ ଆଉ ଘୃଣାମିଶା ଚାହାଣିରେ ଲୁଚେଇ ଲୁଚେଇ ଏଇ ତରଳ ପଦାର୍ଥକୁ ଦେଖୁଥିଲି । ମୁଁ ଏକ ଭିନ୍ନ ସଂସ୍କୃତିରେ ବଢ଼ିଥିଲି, ଅତି ଅନାହାରକ୍ଲିଷ୍ଟ, ଦାରିଦ୍ର୍ୟ ପୀଡ଼ିତ ଲାଲ୍‌ନଦୀର ତ୍ରିକୋଣଭୂମିରେ । ଆମେ ମାଂସ ଖାଉଥିଲୁ କେବଳ ଶ୍ରାଦ୍ଧୋତ୍ସବରେ କିମ୍ବା ନୂଆବର୍ଷ ତିଥିରେ । ଏଇସବୁ ଆତ୍ମୀୟ ମୃତଆତ୍ମାମାନଙ୍କର ଛାୟାରେ ଆମେ ଯେ ବଞ୍ଚିରହିଥିଲୁ, ତାହାର ସାମାନ୍ୟ ମଜା ନେଉଥିଲୁ । ଏପରିକି ମାଂସ ବଢ଼ାହେବା ଉପରକୁ

ବି ଆମର ମିଛ ଲମ୍ବି ଯାଉଥିଲା । ଆମେ ସେମାନଙ୍କୁ ପ୍ରଶଂସା କରୁଥିଲୁ ଯେଉଁମାନେ ଜାଣିଥିଲେ ମାଂସକୁ ଅତି ଛୋଟ ଛୋଟ ଖଣ୍ଡ କରି ବେଶୀ ଲୋକଙ୍କୁ କିପରି ଖୁଆଇପାରିବେ, ସେମାନଙ୍କୁ ଅଭିବାଦନ ଜଣାଉଥିଲୁ ଯେଉଁମାନେ ସାଧାରଣ ଖାଦ୍ୟ ଉପାଦାନରୁ ବିଳାସପୂର୍ଣ୍ଣ ଦେଖାଯାଉଥିବା ଥାଳି ପ୍ରସ୍ତୁତ କରିପାରୁଥିଲେ । ମୋ ପାଇଁ ଏ ପାହାଡ଼ି ସୁପ୍ ଥିଲା ଘନଜଙ୍ଗଲ ଭିତରୁ ଆସିଥିବା ଅସୁରମାନଙ୍କ ଖାଦ୍ୟ ପରି, ଏକ ଆଦିମ, ଆଟୋପଭରା ଖାଦ୍ୟ । ଏହା ମୋତେ ମନେପକାଇଦେଉଥିଲା ପୁରୁଣା ପ୍ରବାଦର ସେଇ ପାନ୍ଥଶାଳାର କଥା ଯେଉଁଠାକୁ ରାଜପଥ-ଡାକୁମାନେ ଆସୁଥିଲେ ଚାଇନିଜ୍ ଭାଓଲିନ୍‌ର ତାଳେ ତାଳେ ଝୁମିବାକୁ ... ।

ଏହି ଆତଙ୍କ ମୋ ସ୍ମୃତିରେ ବିଶାଳଭାବରେ ପ୍ରତୀୟମାନ ହେଉଥିଲା । ଠିକ୍ ଓରାଂଗଉଟାଂ ସୁପ୍‌ର ଭୟାବହ ଚିତ୍ର ପରି । ଓରାଂଗଉଟାଂମାନେ ବିଶାଳକାୟ ମାଙ୍କଡ଼, ଆଉ ସେମାନଙ୍କର ମଣିଷ ସହିତ ରହିଛି ଅଲୌକିକ ସାମଞ୍ଜସ୍ୟ । ସେମାନଙ୍କ ଆଖି ହସିପାରେ, ବିଦ୍ୱେଷପରାୟଣ ଭାବରେ କିମ୍ବା ଘୃଣା, ଯନ୍ତ୍ରଣା, ତିକ୍ତତାରେ ଜଳିଉଠିପାରେ । ସବୁଠାରୁ ବଡ଼କଥା ହେଲା, ସେମାନଙ୍କ ହାତଦୁଇଟି ଭାରି ଚିକ୍କଣ ଆଉ ଧଳା, ଠିକ୍ ଦୁଇବର୍ଷର ମଣିଷ ପିଲାର ହାତ ପରି ।

ମୋ ଦଳରେ କେତେଜଣ ପ୍ରକୃତ ଦକ୍ଷ ବନ୍ଧୁକ ଚାଳକ ଥିଲେ । ଆମେ ଅନେକ ସମୟରେ ଶିକାର କରିବାକୁ ଯାଉଥିଲୁ ଆଉ ବହୁତ ଶିକାର ଧରି ଫେରୁଥିଲୁ ମଧ । ଚଢ଼େଇ, ବତକ, ବାର୍‌ହା, ବଣବିରାଡ଼ି, ପରଯୁକ୍ତ ପାଦଥିବା ବଡ଼ ପକ୍ଷୀ ମାରିଆଣିବା ସାଧାରଣ କଥା ଥିଲା । ହେଲେ ବେଳେବେଳେ ଆମେ ପରିତ୍ୟକ୍ତଅଞ୍ଚଳ ଟପି ଚାଲିଯାଉଥିଲୁ ସେଇସବୁ ଜାଗାକୁ ଯେଉଁଠାରେ ବୋମାମାଡ଼ ସମସ୍ତ ପ୍ରାଣୀଙ୍କୁ ଡରେଇ ଘଉଡ଼େଇ ଦେଇଥିଲା । ଫଳରେ ମାସ ମାସ ଧରି ଆମେ ଭୁଲିଯାଉଥିଲୁ ମାଂସ କେମିତି ଲାଗେ । କାରାମ୍ବୋଲା ପାହାଡ଼ ପାଦଦେଶରେ ଆମେ ଦୁଇଟି ବଣ୍ୟଛାଗଳ ମାରିଥିଲୁ । ତାପରେ ବହୁଦିନ ଧରି ଆଉ କିଛି ନଥିଲା ଆମ ପାଇଁ । ଆଠସପ୍ତାହ ଧରି ଆମେ ସମସ୍ତେ ଖାଇଥିଲୁ ଭାତ, ଲୁଣ, ଶୁଖିଲାଲଙ୍କା ଆଉ ଚେରମୂଳି ଝୋଳ । ଏହିପରି ଭାବରେ ଆମ ଲୋକଙ୍କର ଆରମ୍ଭ ହୋଇଥିଲା ମାଙ୍କଡ଼ ଶିକାର ।

ସେଦିନ ପ୍ରଥମ କରି ବାହାରି ସେମାନେ ଗୋଟେ ଓରାଂଗଉଟାଂ ମାରିଥିଲେ । ସେତେବେଳେ କେବଳ ପାଞ୍ଚଜଣ ଶିକାରୀ ଆଉ ରୋଷେୟା ସାହସ କରିଥିଲେ ସେହି ମାଂସ ଝୋଳ ଚାଖିବାକୁ । ହେଲେ ତା ପର ଥରକୁ, ଖାଇବାଲୋକଙ୍କ ସଂଖ୍ୟା ଦୁଇଗୁଣ ହୋଇଥିଲା, ଆଉ ତାପର ଥରକୁ ସେନାଦଳର ଅଧା ସେ ଭୋଜିରେ ଯୋଗଦେଇଥିଲେ । ଧୀରେ ଧୀରେ ସମସ୍ତେ ଖାଇଲେ କେବଳ ମୋତେ ଛାଡ଼ି । ଆସ୍ତେ ଆସ୍ତେ ପୂରାଦଳ ବାହାରିପଡୁଥିଲା ଓରାଂଗଉଟାଂ ଶିକାର କରିବାକୁ ।

ଖୁବ୍ ଶୀଘ୍ର ସେମାନେ କେବଳ ଝୋଳ ବା ସୁପ୍‌ରେ ଆଉ ସନ୍ତୁଷ୍ଟ ହେଲେ ନାହିଁ । ସେମାନେ ବିବିଧପ୍ରକାର ସୁସ୍ୱାଦୁଖାଦ୍ୟ ପ୍ରକ୍ରିୟା ମନରୁ କାଢ଼ିଲେ ; ଯଥା - ସାଲାଡ୍, ଛେଚା ମାଂସତରକାରି, ପୋଡ଼ା ... ସେମାନଙ୍କ ରନ୍ଧା ଚାଖିବାକୁ ସେମାନେ ଆମନ୍ତ୍ରଣରେ ପୋତିପକାଇଲେ ମୋତେ ।

"ଚିଫ୍, ଖାଲି ଯଦି ଟିକିଏ ଜାଣନ୍ତ ! ଏହାକୁ ଥରେ ତୁମେ ଚାଖି ଦେଖନା, ଆଉ ସବୁକିଛି, ଏପରିକି ହରିଣମାଂସ, ଜଙ୍ଗଲିକୁକୁଡ଼ା ଝୋଳ ବି ଏହା ଆଗରେ ଗେଣ୍ଡା ସୁପ୍ ପରି ପାଣିଚିଆ ଲାଗିବ । ଓରାଂଗଉଟାଂ ତ ପୂରା ମଣିଷ ପରି । ପୃଥିବୀରେ ଏହାଠାରୁ ଅଧିକ ସ୍ୱାଦଯୁକ୍ତ ମାଂସ ନାହିଁ ।"

"ଓ୍ୱାଉ ! ତୁମ ମନର ବାରଣ ସବୁ ଭୁଲିଯାଅ ଚିଫ୍ । ଥରେ ଏହାକୁ ଖାଅ । ଉରାଂଗଉଟାଂ ସୁପ୍‌ରୁ କଂସାଟିଏ ନିଶ୍ଚୟ ଅଧକିଲେ ମାଙ୍କଡ଼ ଚର୍ବିଠାରୁ ଅଧିକ ସ୍ୱାସ୍ଥ୍ୟକର ହୋଇଥିବ !"

ଆମେ ଗୋଟିଏ ଦଳ ହୋଇ ରହୁଥିଲୁ । ଯିଏ ଦଳରୁ ଅଲଗା ହୋଇଯାଉଥିଲା ସାଙ୍ଗେ ସାଙ୍ଗେ ଜଣାପଡ଼ିଯାଉଥିଲା । ଏଠି ସମସ୍ତେ ଭୀରୁ ଆଉ ସାହସୀ, ପ୍ରତିଶୋଧପରାୟଣ ଆଉ ସହିଷ୍ଣୁ , ଚାହୁଁଥିଲେ ଏହା କାର୍ଯ୍ୟକାରୀ ହେଉ । ସେମାନେ ଚାହୁଁଥିଲେ ମୁଁ ଦଳର ଇଚ୍ଛାପାଖରେ ଆତ୍ମସମର୍ପଣ କରେ, ହେଉପଛେ କେବଳ ସେମାନଙ୍କ ଶକ୍ତି କେତେ ଦେଖାଇବାକୁ ।

ସେହି ରାତିରେ ଲଏ ଗୋଟେ ଓରାଂଗଉଟାଂ ମାରି ଆଣିଲା ଯାହାର ଓଜନ ଥିଲା ପ୍ରାୟ ପଇଁଚାଳିଶ ପାଉଣ୍ଡ । ରୋଷେୟାମାନେ ପତଳା ମାଂସକୁ କାଟି ଲଙ୍କା, ଲେମ୍ବୁ ଘାସ ଆଉ କେତେ ଜଙ୍ଗଲି ଚେରମୂଳି ସହିତ ମିଶାଇ ଗୋଳେଇ ଗୋଟେ ସାଲାଡ୍ ବନାଇଦେଲେ । କେବଳ ହାଡ଼ଗୁଡ଼ିକୁ ଏକାଠିକରି ସେମାନେ ସୁପ୍ କରିଥିଲେ । ମୋର ମନେଅଛି, ବାହାରେ ଜଗୁଆଳି କାମ କରିବାକୁ ମୁଁ ଉଠିଆସିଥିଲି । ବାହାରେ ବେଶ୍ ଥଣ୍ଡା ଥିଲା, ଆଉ ସୁପ୍‌ରୁ ଉଠୁଥିଲା ସୁବାସିତ ଧଳା ଧଳା ମେଘ-ବାଷ୍ପ ।

ସୈନିକମାନେ ଗୋଟେ ମାଟିତଳ ଗୁମ୍ଫାରେ ଏକାଠି ହୋଇଥିଲେ । ସେମାନେ ବିରାଟ ଲୁହାକଡ଼େଇ ଚାରିପଟେ ଆଣ୍ଠୁଟେକି ବସିଥିଲେ । ସେମାନଙ୍କ ଆଖି ଭୋକରେ ଚକ୍‌ଚକ୍ କରୁଥିଲା । ତିଏଁହାଇରୁ ଆସିଥିବା ପ୍ରାଇଭେଟ ସୈନିକ ଚିଉ ମୋ ସାର୍ଟର ତଳ ଟାଣି କହିଲା,

"ଚିଫ୍, ଆମ ସାଥିରେ ମିଶି କଂସେ ସୁପ୍ ପିଇବ କି ?"

ମୁଁ ମନାକଲି ।

ଚିଉ ବାଧକଲା, "ବହୁତ ସୁସ୍ୱାଦୁ, ହରିଣ ମାଂସଠୁ କେତେଗୁଣ ଭଲ ।"

"ମତେ ଭୋକ ନାହିଁ ।"

"ଓଃ, ଆସ, ଆସ, ଭୋକର ଅଭାବ ତୁମର ନାହିଁ, ଅଭାବ ସାହସର, କ'ଣ ଠିକ୍ କହିଲି ତ ?"

ତିଉ ବସି ସୁପ୍ ଘାଣ୍ଟୁଥିଲା ଗୋଟେ ଡଙ୍କିରେ, ଆଉ କଡ଼େଇ ଭିତରୁ ଡଙ୍କିରେ କାଢ଼ିଆଣିଲା ହାତଟିଏ : "ଗୋଟେ ଛୋଟ ପିଲାର ହାତ ପରି ନା ? ଦେଖିରେ ଡର ମାଡୁଛି । ହେଲେ କହିଦେଉଛି, ଥରେ ଯାକୁ ଚାଖିଲେନା ଆଉ ଛାଡ଼ିପାରିବ ନାହିଁ ।" ଅନ୍ୟ ସୈନ୍ୟମାନେ ତା ସାଙ୍ଗେ ଯୋଗଦେଇ ଦାନ୍ତନିକୁଟି ହସିଲେ :

"ଆସ ଚିଫ୍, ବଡ଼ମଣିଷ ପରି ହୁଅ । ଆସ, ଚାଖ, ଥରେ ଚାଖିକି ଦେଖ !"

"ଠିକ୍ ଅଛି ପିଲାମାନେ, ଏଥର ଆମେ ଚିଫ୍‌କୁ ଛାଡ଼ିବାନି । ସେ ଆମ ଓରାଂଗଉଟାଂ ସୁପ୍ ଚାଖିବାକୁ ବାଧ ।"

ମୋ ଗାଲ ଜଳିଗଲା ପରି ଲାଗିଲା । ଡଙ୍କିରୁ ମୁଁ ହାତଟି ଉଠେଇ ନେଇ ତା' ଉପରେ ଦାନ୍ତ ବସେଇଦେଲି । ପାଟିରୁ ଥୁ ଥୁ କରି ପାଟିଏ ହେବ ସାନସାନ ଗଣ୍ଡି, ହାଡ଼ ବାନ୍ତି କରିଦେଲି ବାହାରକୁ ।

"ବ୍ରାଭୋ ! ବ୍ରାଭୋ ! ଚିଫ୍ !"

ଖୁସିରେ ଉନ୍ମତ୍ତ ହୋଇ ସେମାନେ ନିଜ ନିଜ କଂସା, ମେସ୍ ଟିଣ ଧରି ବାଜା ବଜେଇ ଲାଗିଲେ । ମତେ ଲାଗିଲା ଯେପରି ମୋ ବେକ ପିଠି ଜଳିଯାଉଛି, ସେମାନଙ୍କୁ ଗାରଡ଼େଇ ଅନେଇ ରୁମ୍ପା ଭିତରୁ ମୁଁ ବାହାରି ଆସିଲି, ରାତି ଥିଲା ପିଚୁ ପରି କଳା । ଅଣ୍ଡାଳି ଅଣ୍ଡାଳି କୌଣସି ପ୍ରକାରେ ମୁଁ ପାଖ ଝରଣା ଆଡ଼କୁ ଆଗେଇଲି । କେତେଥର ଆଗ ପାଟି ଧୋଇ କୁଲୁକୁଞ୍ଚା କରିପକେଇଲି । ତାପରେ ତଣ୍ଟିରେ ଆଙ୍ଗୁଠି ପୂରେଇ ହାତଟାକୁ ବାନ୍ତି କରିଦେବାକୁ ଚେଷ୍ଟାକଲି । ହେଲେ କିଛି ବାହାରିଲା ନାହିଁ । ଏହା ଘଟିସାରିଥିଲା । ମୁଁ ଏହାକୁ ଖାଇଥିଲି ; ଆଉ କିଛି କରିବାର ନଥିଲା । ଏକଥା ଭାବି ଭୟରେ ମୁଁ କମ୍ପିବାକୁ ଲାଗିଲି, ପାଟିରେ ମୋର ମଣିଷ ମାଂସର ସ୍ୱାଦ ! ଚଟ୍‌କିନା ଗୋଟେ ସିଗାରେଟ୍‌ରେ ନିଆଁ ଲଗେଇ ପକେଇଲି । କ୍ଷଣକ ପାଇଁ ଏହାର ଅଗ୍ନିଶିଖା ଅନ୍ଧାରକୁ ଆଲୋକିତ କରିଦେଲା । ମୋ ଛାତି ଉଷୁମ ହୋଇ ଆସିଲା । ଧୂମକୁଣ୍ଡଳୀ ମୋ ମୁହଁକୁ ଆଉଁସି ଚାଲିଲା । ଧୀରେ, ଖୁବ୍ ଧୀରେ ମୋ ମନ ଶାନ୍ତ ହୋଇ ଆସିଲା ।

***

ମୁଁ ଥିଲି ପାଞ୍ଚବର୍ଷର ।

ପିଲାଦିନର ଯେତିକି ସ୍ମୃତି ମୋ ମନରେ ଅଛି, ସେତକ ହେଲା ଗୋଟିଏ ଦୂର ପାହାଡ଼, ଘନଚିକ୍କଣ ଆଉ ସବୁଜ ରଙ୍ଗରେ ଭରା । ଗୋଟେ ଭଙ୍ଗା ପାଗୋଡ଼ା ଉପରେ

ନଇଁପଡ଼ିଥାଏ ପଣସ ଓ ଲିଚୁଗଛ ; ପତ୍ରଗହଳି ଭିତରୁ ବାହାରକୁ ଦିଶୁଥାଏ ଗୋଟେ ଜୀର୍ଣ୍ଣ ଛାତ । ପାହାଡ଼ତଳ କାସାଭା ଲତା ଭିତରଦେଇ ଝଲିଉଠେ ଦକ୍‌ଦକ୍ ହୋଇ ଉଷ୍ମ ଆଲୋକ ରଶ୍ମି ।

ପାଗୋଡ଼ା ଆଡ଼କୁ ପାହାଡ଼ ଚଢ଼ିଲାବେଳକୁ ମା' ମୋ ହାତ ଧରିଥାଏ । ତା' ପେଟରେ ପିଲା ଥାଏ, ଆଉ ତା' ବିରାଟ ପେଟ ଭିଏତନାମୀ ସ୍ତ୍ରୀଲୋକଙ୍କ ଲମ୍ବା ଆଓଦାଇ ତଳେ ଦୋହଲୁଥାଏ । ଆଓଦାଇଟି ମାଙ୍ଗ୍ରୋଭ୍‌ର ବାଦାମୀ ରଙ୍ଗରେ ରଙ୍ଗୀନ । ଚାଲିଲାବେଳକୁ ସେ ଗୋଟାଏ ହାତରେ ଆଓଦାଇ ସହ ପେଟକୁ ଧରି, ମୁହଁକୁ ଏମିତି ବିଚିକିଚିଆ କରି ଚାଲୁଥାଏ ଯେ ତା' ମୁହଁ ପୂରା ଧଳା ହୋଇ ଝାଳ ସରସର ହୋଇଯାଇଥାଏ ।

"ଅଖାର ତଳକୁ ଜୋର୍ ଧରିଥା, ନହେଲେ ଲୁଗାପଟା, କମ୍ବଳ ସବୁ ବାହାରି ତଳେ ପଡ଼ିବ ।

"ହଁ ମାମା", ମୁଁ ବଡ଼ପାଟିରେ କହେ, ମୋ ଭୟକୁ ବଡ଼ପାଟି ଭିତରେ ଲୁଚାଇବାକୁ । ମୋ ମାଆର ମୁହଁ ଏପରି ହେବାର କେବେ ମୁଁ ଦେଖିନାହିଁ ... ମୋ ପାଇଁ ସେ ସବୁବେଳେ ଯୁବତୀ ଆଉ ସୁନ୍ଦରୀ ଥିଲା । ସେ ମୋତେ ଜାଲିଦୋଳିରେ ଶୁଆଇ ପବନରେ ଝୁଲାଉଥିଲା । ତା' ହସ ଥିଲା ସଙ୍ଗୀତ ପରି । ଏବେ ବି ଆମେ ପଇଡ଼ରୁ ଢାଳୁଥିବା ମିଠାପାଣିର ସ୍ମୃତି ସହିତ ସେ ମିଶିକି ରହିଛି । ସେ ମୋତେ ଭଲ ପାଉଥିଲା, ମୁଁ ତାକୁ ପୂଜା କରୁଥିଲି । ତା' ବେକ ଚାରିପଟେ ହାତ ଗୁଡ଼େଇଦେଲେ, ମତେ ଆଉ କିଛି ଡରାଇପାରୁ ନଥିଲା, ଏପରିକି ଛାଇ, କାନ୍ଦ ବା ବନ୍ଧୁକର ଗୁଳି ଆବାଜ ବି ନୁହେଁ । ହେଲେ ଏବେ ତା' ମୁହଁ ଗୋଟେ ବୁଡ଼ିଯାଉଥିବା ଲୋକର ମୁହଁ ପରି ଇଷତ୍ ନୀଳ ଧୂସରବର୍ଣ୍ଣର ... ତା' ପେଟ ଗୋଟେ ବେଙ୍ଗ ପରି ଫୁଲି ଅତି ଅସୁନ୍ଦର ଦିଶୁଥିଲା ମତେ । ଚାଲିଲାବେଳକୁ ତା' ଅଣ୍ଟା ପଛପାଖ କେମିତି ଅବାଗିଆ ହୋଇ ବଙ୍କେଇ ଯାଉଥିଲା । ତା' ପଛେ ପଛେ ମୁଁ ଦୌଡ଼ିଲି ଅଣନିଃଶ୍ୱାସୀ, ଝାଳ ସରସର ହୋଇ ।

"କ୍ୱାନ୍, ଜଲ୍‌ଦି ଆସ, ଜଲ୍‌ଦି !" ସେ ହଠାତ୍ ପାଟିକଲା, ମୁଁ ଏକଦମ ଅଚଳ ହୋଇଗଲି । ସେ ତା ହାତ ଜଙ୍ଘ ଉପରେ ରଖି, ଝାଳ ସରସର ମୁହଁକୁ ଆକାଶ ଆଡ଼କୁ ଉଠାଇ ପାଟିକଲା : "ହେ ଈଶ୍ୱର, ହେ ଈଶ୍ୱର !"

ହଠାତ୍ ସେଇ ରାସ୍ତା ଉପରେ ସେ ପଡ଼ିଗଲା, ମୁହଁକୁ ବାଲିଗୋଡ଼ିରେ ପୋତି । ମୁଁ ସଙ୍କେଇ ସଙ୍କେଇ କାନ୍ଦିଲି ତା' ଫର୍ଚ୍ଚା ହୋଇ ପଡ଼ିଥିବା ଲୁଗାକୁ ଧରି । ତା ଆଓଦାଇର ପଛ ଝାଳରେ ବୁଢ଼ବୁଢ଼ୁ । ବାଳ ତା' ବେକରେ ଲାଖିଯାଇଥାଏ, ଆଉ ସେ ମାଟିକୁ ମୁଠା ମୁଠା କରୁଥାଏ ଆଙ୍ଗୁଠିରେ, ଛୋଟ ଛୋଟ ଘାସ ଉପାଡ଼ି ପକାଉଥାଏ । ମୁଁ ଥରୁଥାଏ, ନିଜକୁ ଭୁଲିଯାଉଥାଏ ।

"ମାମା, ମାମା ।"

ସେ ଆଉ ଥରେ ଚିତ୍କାରକଲା, "ଓଃ, ଯେ ମତେ ମାରିଦେବ । ମୁଁ ମରିବାକୁ ଯାଉଛି ।"

ମୁଁ ତା' ଝାଳ ବୁଢୁବୁଢୁ ପିଠିକୁ କୁଣ୍ଢେଇ ଧରିଲି । ହଠାତ୍, ଜାଣେନି କାହିଁକି ତାକୁ ଅତି ନୀଚ୍ଚା ସ୍ୱରରେ ମୁଁ ଫୁସ୍‌ଫୁସ୍ କରି କହିଲି, "ମାମା ପ୍ଲିଜ୍, ଦୟାକରି ଯାଅନି, ମତେ ଏକୁଟିଆ ଛାଡ଼ି ଯାଅନାହିଁ ।"

ମାଆ ନିଜକୁ ଟିକେ ଉଠାଇଲା, ତା' ଆଖିରେ ଅବିଶ୍ୱାସର ଅଦ୍ଭୁତ ଚାହାଣି । ତା' ଓଠ ବଙ୍କା, ଯେମିତି ହସିବାକୁ ଚାହୁଁଛି : "ମୋ ପୁଅ ।"

ତା' ସ୍ୱର ଶୁଭେ କେବଳ ଗୋଟେ ଫୁସ୍‌ଫୁସ୍ ପରି । ତା' ଲୋଚାକୋଚା ମୁହଁରେ ଏପଟୁ ସେପଟ ହସଟିଏ ଚହଟି ଲିଭିଯାଏ । ସେ ତା' ମୁଣ୍ଡ ତଳକୁ ନୁଆଁଏ ଆଉ ପେଟେଇ ପେଟେଇ ଉପର ଆଡ଼କୁ ଘୁଷୁରି ଘୁଷୁରି ଯାଏ, ମୁଁ ତା' ପଛେ ପଛେ, ତା' ଲୁଗା ଗଣ୍ଠିଲି ଯାବୁଡ଼ି ଧରି ଚାଲେ ।

ମୋର ମନେ ନାହିଁ, କେମିତି ଆମେ ପାଗୋଡ଼ାକୁ ଯାଇଥିବା ତିନୋଟି ଦୁଆର ଟପିଲୁ । ମୋର ମନେଅଛି କେବଳ ପାହାଚଗୁଡ଼ିକ, ସେଇ ଅତି ଉଚ୍ଚାପଥର । ଏତେ ଖସଡ଼ା ।

ନନ୍ ଆମକୁ ବଗିଚା ପଛରେ ଥିବା ଗୋଟେ ପରିତ୍ୟକ୍ତ କୁଡ଼ିଆ ଘରକୁ ନେଇଗଲେ । ପଥର ପାହାଚଗୁଡ଼ିକ ଘାସ, ଲଟା, କୁଟାରେ ଘୋଡ଼େଇ ହୋଇଥିଲା । ଘର ଚଟାଣସାରା ଧୂଳିଭର୍ତ୍ତି, ଝର୍କା ଆଉ କାଠବେଦୀ ଉଭୟ ଭୂଇଁରୁ ସମାନ ଉଚ୍ଚତାରେ ଥାଏ । ଘରସାରା ବଡ଼ ବଡ଼ ବୁଢ଼ିଆଣୀ, କିମ୍ବଦନ୍ତୀର ଅସୁର ପରି ।

ମାଆ ଶୁଏ କଦଳୀ ପତ୍ର ଆଉ ପୁରୁଣା ଛିଣ୍ଡାଲୁଗା ପଡ଼ିଥିବା ଗୋଟେ ସପ ଉପରେ । ତା' ଦୁଇଜଙ୍ଘ ମଝିରୁ ବାହାରିଆସେ ରକ୍ତସ୍ରୋତ, ଉତ୍ସବରେ ଆମେ ବଳିପକାଉଥିବା ମଇଁଷିର ରକ୍ତପରି ବାଇଗଣୀରଙ୍ଗର ରକ୍ତ । ମୁଁ ଗୋଟେ ପିଲାର କାନ୍ଦ ଶୁଣେ । ମୁଁ ଦେଖେ ଛୋଟ ଛୋଟ ଦୁଇଟି ହାତ, ଆଉ ତା ଉପରେ, ପବନକୁ ଗୋଇଠା ମାରି ଛୋଟ ଦୁଇଟି ଲାଲ ପାଦ ।

"ତୋ ମା' ତତେ ଗୋଟିଏ ସାନଭାଇ ଦେଇଛି । ଯାଆ, ଆଉ ତାକୁ ଅଭିନନ୍ଦନ ଜଣା । ଏଠି ଠିଆହୋଇ ଏମିତି ହରଡ଼ଚଡ଼େଇ ପରି କମ୍ପିବା ବନ୍ଦକର ।" ନନ୍‌ଙ୍କ ସ୍ୱର ଘଣ୍ଟ ପରି ବାଜେ ମୋ କାନରେ ।

ଆଉ ଗୋଟିଏ ସ୍ୱର ଶୁଭେ : "ବୁଦ୍ଧଙ୍କର ଜୟ ହେଉ, କେତେ ଶାନ୍ତ ସେ ! ପିଲାଟାକୁ ଡରାଅ ନାହିଁ । ଆସ, ପୁଅ, ଆସ, ଦେଖ ତୁମ ସାନଭାଇକୁ, ଦେଖ ।"

ସେ ଗୋଟେ ନାଲିଆ ଜୀବକୁ ମୋ ନାକତଳେ ପେଲି ଦିଅନ୍ତି । ଯାର ମୁହଁ,

ଅଠାଳିଆ ଆଉ କୁଞ୍ଚୁକୁଞ୍ଚୁଆ, ଗୋଟେ ବୁଢ଼ାଲୋକର ଚମ ପରି ଲୋଚାକୋଚା, ମତେ ଡରମାଡ଼େ । ୟା' ମୁଣ୍ଡରେ ଅଳ୍ପ ବାଳ କପାଳରେ ଲାଖିଯାଇଥାଏ । ୟାର ପାଦ ପବନକୁ ମାରୁଥାଏ, ମୋ ମୁହଁକୁ ମାରୁଥାଏ । ମାମା ବୁଲିପଡ଼େ ମୋ ଆଡ଼କୁ । "ଡରନା ପୁଅ, ସେ ତୋ ସାନଭାଇ ।"

ନନ୍ ଆଉ ନର୍ସ ହସିଚାଲନ୍ତି । ମାମା ବି ହସେ । ତା' ଦାନ୍ତ ମୁକ୍ତା ପରି ଝଲସି ଉଠେ । ମୁଁ ସବୁବେଳେ ମାଆର ହସକୁ ଭଲପାଇ ଆସିଛି । ଖୁସିରେ ମୁଁ କାନ୍ଦି ପକାଏ, "ମୋର ଗୋଟିଏ ସାନଭାଇ ହୋଇଛି ।"

ମୋ ଭାଇ ବି ବଡ଼ପାଟିରେ କାନ୍ଦିବାକୁ ଆରମ୍ଭ କରେ, ମୁଁ ତା ପାଦ ଛାଡ଼ିଦିଏ, ନର୍ସଟି ତାକୁ ନେଇ ଗୋଟେ ମାଟିକୁଣ୍ଡରେ ଗାଧୋଇ ଦିଏ, ଆଉ ସେ ଚିତ୍କାର କରେ, ଛଟପଟ ହୁଏ, ପାଣି ତା ଚାରିପଟେ ଉଚ୍ଛୁଳି ଉଠେ ।

ମୋ ସିଗାରେଟ୍ ଅଧା ସରିଗଲାଣି । ସିଗାରେଟ୍‌ର ଜଳନ୍ତା ଅଗ ଆରପଟେ ଠିକ୍ ଠିଆ ହୋଇଥାନ୍ତି ଲଗାଲଗି ଗଛମାନେ । ଏଣ୍ଟୁଅଟିଏ କେଉଁଠାରୁ ଛାଟିପିଟି ହୋଇ ବାହାରି ଆସିଲା, ଗୋଟେ ଆଲୋକ, ଜ୍ୱଳନ ଶକ୍ତିହୀନ । ଆଉଥରେ, ମତେ ବାନ୍ତି ମାଡ଼ିଲା, ଓରାଂଗଉଟାଂର ହାତ ବାନ୍ତି କରି ପକେଇବାର ଇଚ୍ଛା । ମୁଁ ସିଗାରେଟ୍‌ରୁ ଫୁଙ୍କାଏ ଟାଣିନେଲି ଆଉ ନିଜ ସାଥିରେ ତର୍କ କରିବାକୁ ଚେଷ୍ଟାକଲି : "ଏହାର ତା ସହିତ କିଛି କରିବାର ନାହିଁ ... କିଛି ନାହିଁ କରିବାର ।"

"ହେଲେ ପୁଣିଥରେ ମୁଁ ଦେଖିଲି ମୋ ଭାଇର ଛୋଟ ଛୋଟ ପାଦ ଦୁଇଟି ଶୂନ୍ୟକୁ ଲାତ ମାରିବାର । ଲକ୍ଷ୍ୟକଲି ଗୋଟେ ଧୂମକୁଣ୍ଡଳୀ ଅନ୍ତର୍ହିତ ହୋଇଯିବାର, ମୁଁ ସିଗାରେଟ୍ ମୁଣ୍ଡିଟି ଝରଣାପାଣିକୁ ଫିଙ୍ଗିଦେଲି । ପାଟିରେ ମୋର ତିକ୍ତ ସ୍ୱାଦ । କିଛି ଗୋଟାଏ କେଉଁଠି ଯେମିତି ହଜିଯାଇଛି, ଦୂର ଦିଗ୍‌ବଳୟ ଆରପଟେ ।"

"କ'ଣ ଭାବୁଛ ବଡ଼ଭାଇ ?" ଲକ୍ଷ୍ୟକଲି ଲଏ ପୁଣିଥରେ ସେଇ ସମାନ, ପରିଚିତ ଶବ୍ଦ 'ବଡ଼ଭାଇ' ବ୍ୟବହାର କରିବା ଆରମ୍ଭ କରିଥିଲା ମୋ ସାଥିରେ । ତା' କହୁଣିରେ ମୋ କଙ୍କାଳକୁ ଖେଞ୍ଚୁଥିଲା ।

ଅତ୍ୟନ୍ତ ବିରକ୍ତ ହୋଇ ମୁଁ କହିଲି : "କିଛି ନାହିଁ ।"

"ତାହେଲେ ଆସ କଥାହେବା । ଆମେ ଦୁଇଟି ବାଟଭୁଲା ଭାଲୁପରି ଉଦ୍ଦେଶ୍ୟହୀନ ଭାବରେ କେତେବେଳ ହେଲାଣି ଘୂରି ବୁଲୁଚେ, ଏ ତ ଆତଙ୍କଜନକ ।"

"ତୁ ମତେ ସବୁବେଳେ ବଡ଼ଭାଇ 'ଡାକୁନୁ' କାହିଁକି ? ବେଳେବେଳେ ମତେ 'ଚିଫ୍' ଡାକୁଛୁ, ଆଉ କେତେବେଳେ କମାଣ୍ଡର ।"

ଲଏ ଉଦ୍ଧତ ହସ ହସିଲା । "ମୁଁ ଯେତେବେଳେ ଖୋସାମତ କରିବା ଦରକାର କରେ, ମୋ ଜିଭ ଆପେ ଆପେ ଚିଫ୍ ଆଉ କମାଣ୍ଡର ଶବ୍ଦ ପାଖରେ ପହଞ୍ଚିଯାଏ ।"

"ତାହେଲେ କଥାଟା ଏଠି ଅଛି । ଚିଫ୍, କମାଣ୍ଡର ... କେଉଁଠି ଗୋଟେ ଶିକାର କରି ତୋର କ୍ଷୁଦ୍ର ସୁନିପୁଣ ବନ୍ଧୁକ ଚାଳକର ଆଖ୍ୟା ମୋ ଦ୍ୱାରା ପ୍ରାପ୍ତ ହେବା ଉଦ୍ଦେଶ୍ୟରେ ମୋତେ ବିଛଣାରୁ ଘୋଷାଡ଼ି ଉଠେଇ ଆଣିବା ତୋର ଠିକ୍ ହୋଇଛି ? ତୁ ... ବଦମାସ ... ସୈତାନ ।"

"ରାଗ ନାହିଁ । ଯା'ହେଲେ ବି ମୁଁ କେବଳ ଛୋଟିଆ କାମଟିଏ ପାଇଁ ତୁମକୁ ଫସାଇଛି । ସାବଧାନ, ସେମାନେ ସେ ବୁଦାଗହଳିରେ ବୋମା ବିଛାଇଛନ୍ତି ।"

ସିନ୍ଦୂରା ଫାଟି ଆସୁଥିଲା । ଲଏ ମୋ ଆଗେ ଆଗେ ଦୂରକୁ, ଆହୁରି ଦୂରକୁ ଚାଲିଯାଉଥିଲା । ତା ଚଉଡ଼ା କାନ୍ଧ ଭିତର ଆଡ଼କୁ ବଙ୍କେଇ ବାଦୁଡ଼ିର ଡେଣା ପରି ଦିଶୁଥିଲା ; ସେ ଥିଲା ବେଶ୍ ଡେଙ୍ଗା, ପ୍ରାୟ ଛଅଫୁଟ ହେବ । ତାର ବିଶାଳ ଦେହ ଦରକାର କରୁଥିଲା ତଟକା ମାଂସ । ଦୀର୍ଘଦିନ ହେଲା ଆମେ କେବଳ ଚିଙ୍ଗୁଡ଼ି ଶୁଖୁଆ, ବଣୁଆ କନ୍ଦ ଆଉ ପଥର ଉପରେ ଜମିଥିବା ଶିଉଳି ସହିତ ସିଝା ହୋଇଥିବା ଝୋଳ ଖାଇ ବଞ୍ଚିଥିଲୁ । ଲଏର ତ୍ୱଚା ଥିଲା ଈଷତ୍ ଶାଗୁଆ । ଆମେ ଖାଇଲାବେଳେ ତଳେ ପଡ଼ିଯାଉଥିବା ଭାତ ସେ ଗୋଟାଇ ଖାଇଦିଏ । ଏପରିକି, ଭାତହାଣ୍ଡିତଳେ ଲାଖିଥିବା ପୋଡ଼ା, କଳାଭାତକୁ ଆମ୍ପୁଡ଼ା ଆମ୍ପୁଡ଼ି କରି ଚରିଯାଏ ।

"ଆଃ, ଥରେ ଯଦି ମୁଁ ପେଟପୂରା ଖାଇବାକୁ ପାଆନ୍ତି । ଗୋଟେ ବଡ଼ କଂସାରେ ଗରମ ବାମ୍ଫ ବାହାରୁଥିବା ମୋଟା ଚାଉଳର ଭାତ ଆଉ ଖଣ୍ଡେ ବଡ଼ ମାଂସ, ଝୋଳ ଥିବ । ବଡ଼ଥାଳିରେ ଥାଳିଏ ଭାତ ଆଉ ଲେମ୍ବୁ-ଚିଙ୍ଗୁଡ଼ି ଚଟଣି । ଆହା, ହେ କ୍ୱାନ୍, ଦେଖିଲ, ସେ ଚିନିଡ଼ବାରେ କିଛି ଅଛି କି ?"

ତାର ସବୁବେଳେ ସେଇ ପୁରୁଣା କଥା । ବିରକ୍ତ ହୋଇ ମୁଁ ଭର୍ତ୍ସନା କରେ : "ତତେ ଲାଜ ଲାଗୁନି, ତୋ ଆକୃତିର ଗୋଟେ ମଣିଷ ? ତୁ ସେ ଡବାଟାକୁ ବହୁ ଆଗରୁ ଚାଟିଚୁଟି ସଫା କରିଦେଇଛୁ ।"

"ନା, ସବୁ ନୁହେଁ ... ସେଦିନ ତ ଡବାରେ ଯେତିକି ଲାଗିଥିଲା କେବଳ ସେତିକି ଆମ୍ପୁଡ଼ି ଖାଇଦେଇଥିଲି ।"

ଠିକ୍ ଅଛି, ଯା' ତାହେଲେ, ନିଜେ ଯାଆ । ସେଇଠି ଥାକରେ ଅଛି ।"

ସେ ଚିନି ଡବାଟି କାଢ଼ି ଗୋଟେ ଚାମଚରେ ଆମ୍ପୁଡ଼ିବା ଆରମ୍ଭ କରିଦେଲା, ତାପରେ ଚାମଚଟିକୁ ଚାଟିବାରେ ଲାଗିଲା । ଶେଷରେ, ସେଥିରେ ଝରଣା ପାଣି ପୂରାଇ ଡବାଟା ହଲେଇଦେଲା ଆଉ ଗୋଟେ ଢୋକରେ ସବୁ ପିଇଗଲା । ଲଏ ସାଥିରେ ସବୁବେଳେ ସେହିପରି ହେଉଥିଲା । ପରଆଡ଼କୁ, ସେ ଜାଣିପାରୁନଥିଲା ନିଜ ଭୋକକୁ ଶାନ୍ତ କରିବାକୁ ସେ କ'ଣ କରିବ । ରାତିରେ ସେ ଯେଉଁ ଖାଦ୍ୟ ଖାଇବାକୁ ଚାହୁଁଥିଲା, ସେସବୁକୁ ସ୍ୱପ୍ନରେ ଦେଖୁଥିଲା ଆଉ ସକାଳେ ଝାଳସରସର ହୋଇ ଉଠୁଥିଲା ସମ୍ପୂର୍ଣ୍ଣ ନିରାଶ ହୋଇ ।

ଗୋଟିଏ ପୁଅ ହୋଇଥିବାରୁ, ଗେହ୍ଲାହୋଇ ଲଏ ବିଲକୁଲ ନଷ୍ଟ ହୋଇଯାଇଥିଲା । ତା ମାଆ ଧାନଜମି ଦେଖାଶୁଣା କରି ନିଜର ସାମାନ୍ୟ ବେପାରଟି ଚଳାଇ ରଖିଥିଲେ, ତାଙ୍କର କିଛି ସଞ୍ଚିତ ଅର୍ଥ ଥିଲା, ଆଉ ଲଏ ଖାଇବାବେଳେ ସହଜରେ ଆଠ–ନଅ ଟାଟିଆ ଭାତ ଗିଳି ପକାଉଥିଲା ।

"ସାବଧାନ, ଭାଇ କ୍ୱାନ୍, ଆମେ ଏବେ ପାହାଡ଼ ଗଡ଼ାଣିରେ ଆଗଉଛେ ।"

ଆମେ ଗଛର ଡାଳ–ଓହଳ ଧରି, ମୁଣ୍ଡ ନୁଆଁଇ ଶୀର୍ଷରୁ ତଳକୁ ଆସୁଥିଲୁ । ଅଭିଶପ୍ତ ଆତ୍ମାର ଗହ୍ୱର ଅପେକ୍ଷା ଏ ଗହ୍ୱର ଥିଲା ଅଧିକ ପ୍ରଶସ୍ତ ଆଉ ଅଗଭୀର । ପୁରୁଣା ବଡ଼ଗଛ ଗଣ୍ଡିରେ, ଭାଇନ ଲତା ବାଇଗଣୀ ରଙ୍ଗର କାହାଳୀ ଆକାରର ଫୁଲରେ ଭର୍ତ୍ତିହୋଇ ବେଢ଼େଇ ଯାଇଥିଲା । ପ୍ରତିଟି ଫୁଲର କେଶର ପୁଷ୍ପରେଣୁରେ ପୂର୍ଣ୍ଣ ହୋଇ ଫୁଲି ରହିଥିଲା, ଅକ୍ଟୋପସ୍‌ର ପତଳା ଆଙ୍କୁଡ଼ି ଗୋଡ଼ପରି । ସେସବୁ ଥିଲା ଅର୍ଦ୍ଧସ୍ୱଚ୍ଛ, ଫୁଲ ଉପରେ ହଳଦିଆ କାକରବିନ୍ଦୁ ଜମି ଗୋଟେ ପ୍ରକାର ଓଜନିଆ, ଅତି ମିଠା ବାସ୍ନା ବାହାରୁଥିଲା ଯେପରି ପାଣି ଶିଉଳି ଆଉ ରକ୍ତର ମିଶାମିଶି ବାସ୍ନା ।

"ଆମେ ପହଞ୍ଚିଗଲେ, ମୋ ପାଇଁ ଅପେକ୍ଷା କର । ତୁମେ କିଛି ସମୟ ବସି ଏ ଦୃଶ୍ୟ ଉପଭୋଗ କରୁନ କାହିଁକି ? ଓରାଂଗଉଟାଂ ଆଜି ଏଠୁ ଜୀବନ ନେଇ ଫେରିବ ନାହିଁ । ମୁଁ ତାକୁ ଲକ୍ଷ୍ୟ କରୁଛି । ସେଇ ଗଭୀର ଫାଙ୍କା ଜାଗାରେ ପୂରା ତଳେ ଗଛ ଗହଳିରେ ସେ ବୁଲୁଛି । ସେ ନିଶ୍ଚୟ ଭୋକିଲା ଥିବ । ତୁମେ ବସିଯାଅ, ମୁଁ ବାକି ସବୁର ତଦାରଖ କରିବି ।"

ମୁଁ ବସିପଡ଼ିଲି । ସେଇଠି କାନ୍ଧକୁ ନୁଆଁଇଦେଲି ଉଷୁମ ପାଇବାକୁ । କୁହୁଡ଼ି ଭେଦକରି ସକାଳ ଚକ୍‌ଚକ୍ କରୁଥିଲା ତୁଷାର–ରୂପେଲି ଆଲୋକର କିରଣ ବିଛେଇ । ଝରଣାଟିର ଗତିପଥକୁ ମୁଁ ନିରୀକ୍ଷଣ କଲି । ଦେଖିପାରିଲି ଗୁମ୍ଫାଟିଏ ଯାହାର ମୁହଁ ଆବୃତ୍ତ ଥିଲା ନାନା ଅନାବନା ଗୁଳ୍ମ ଆଉ ଛୋଟଛୋଟ ଗଛରେ, ଗଛର ଡାଳଗୁଡ଼ିକରେ ପତ୍ର ନଥିଲା । ଗଛର ଗଣ୍ଡି ମଝିରେ ମଝିରେ ଫୁଲିଗଲାପରି ଦିଶୁଥିଲା, ଯେମିତି ବିକଳାଙ୍ଗ ଦେହ । ଓରାଂଗଉଟାଂ କିନ୍ତୁ ଏଠାକୁ କାହିଁକି ଆସିବ ଖାଦ୍ୟ ଖୋଜିବାକୁ ?

ଉଦ୍‌ବେଗ ବୃକ୍ଷରେ ଅତି ଛୋଟ, ଅତି ନରମ ଲତପତ, ହଳଦିଆ ଫଳ ଧରେ – ହଳଦୀବସନ୍ତର ଛୋଟ ହଳଦିଆ ପର ଆକୃତିର । ଏ ଗଛରେ ବେଶୀ ଫଳ କେବେ ଧରେନାହିଁ, ହେଲେ ଶରତ ଋତୁରେ ଏଥିରେ ପାଉଁଶ ରଙ୍ଗର ଫୁଲ ଭର୍ତ୍ତି ହୋଇଯାଏ ଆଉ ଶୀତଦିନ ସାରା ଫୁଟିଚାଲେ, ଧରିତ୍ରୀକୁ ନିଜର ପାଉଁଶିଆ ରଙ୍ଗରେ ଘୋଡ଼େଇ ଆଉ ସେମାନଙ୍କୁ ବାନ୍ତି ଲାଗିଲାପରି ଉତ୍କଟ ମହକ ପ୍ରବାହରେ ପ୍ଳାବିତ କରି । ଏପର୍ଯ୍ୟନ୍ତ କେହି ଜଣେ ହେଲେ ଗୋଟିଏ ଅମଳ ଋତୁରେ ତିନୋଟି ଉଦ୍‌ବେଗ ଫଳ ଖୋଜି ପାଇବାରେ ସଫଳ ହୋଇପାରିନାହିଁ । ସବୁଠାରୁ ଭଲ ଗଛଚଢ଼ାଳି ଅତିବେଶୀରେ

ଦୁଇଟି ବେଳେବେଳେ ପାଇଥାଆନ୍ତି । ପ୍ରତିଟି ଲୋକ ତା ଜୀବଦ୍ଦଶାରେ ଅନ୍ତତଃ ଥରଟିଏ ଉଦ୍‌ବେଗ ବୃକ୍ଷର ଫଳ ଚାଖିବାକୁ ଚାହିଁଥାଏ, ଆଉ ଏ ଚାହିଁବା କେବଳ ଫଳର ନରମ, ଚିକ୍କଣ, ମିଠାଳିଆ ବାସ୍ନାପାଇଁ ନୁହେଁ, ବରଂ ଏଥିରେ ଥାଏ କୌତୂହଳ ଅଧିକ । ଏହା ଆଗ ପାଟିକୁ ସୁଆଦ ଲାଗେ, ହେଲେ ପରେପରେ ଗୋଟେ ଅଦ୍ଭୁତ, ମାତାଲ ଇନ୍ଦ୍ରିୟାନୁଭୂତି ତୁମ ସାରାଦେହକୁ ଆଚ୍ଛନ୍ନ କରିପକାଇବ, ହୃତ୍‌ସ୍ପନ୍ଦନ ହଠାତ ଦ୍ରୁତରୁ ଦ୍ରୁତତର ହୋଇ ତାପରେ ବିଚିତ୍ର ଭାବରେ ଅନିୟମିତ ଆଉ କ୍ଷୀଣତର ହୋଇଆସିବ । ଲୋକଟିକୁ ଗୋଟେ କିମ୍ଭୁତ ସ୍ୱପ୍ନ ଭିତରେ ବୁଡ଼ାଇ ଦେଲାପରି ଅଚେତ ଅନୁଭବ ଆଣିଦେବ, ଆଉ ହଠାତ୍ ତୁମେ ସଚେତନ ହେବ ଜୀବନର ଭଙ୍ଗୁରତା ବିଷୟରେ, ସ୍ପଷ୍ଟହେବ ଆଖିଆଗରେ ଜୀବନର ଅନିଶ୍ଚିତତା, ଯେପରି ଗୋଟେ ଆନନ୍ଦଦାୟକ, ସୁବାସିତ ଆଶା ଭିତରେ ତୁମେ ଘୂରିବୁଲୁଛ ; ତାପରେ ମୃତ୍ୟୁପାଇଁ ଦୁର୍ବାର କାମନା । ଏମିତି ବି କ'ଣ ହୋଇପାରେ ଯେ, ମାଙ୍କଡ଼ମାନେ ବି ଏଠାକୁ ଆସନ୍ତି ଏଇ ବିରଳ ନିଶାର ଅନ୍ୱେଷଣରେ, ମୃତ୍ୟୁପାଇଁ ଉଦ୍‌ବେଗ କାମନାରେ ?

ଲଏ ହଠାତ୍ ଗୋଟେ ପଥର ଖଣ୍ଡ ଉପରେ ଦେଖାଦେଲା, ଠିଆହୋଇପଡ଼ି ମତେ ହାତ ହଲେଇଲା । ସେ ଯେଉଁ ଆଡ଼କୁ ଇଙ୍ଗିତ କରୁଥିଲା ମୁଁ ସେପଟକୁ ଅନାଇଲି । ଉଦ୍‌ବେଗ ବୃକ୍ଷର ଡାଳ ଗହଳିରେ ମୁଁ ଦେଖିପାରିଲି ଗୋଟେ ଛାୟା । ଛାୟାଟି ଲାଗୁଥିଲା ଭାଲୁଚେ ପରି, ଯିଏ ମହୁ ଖୋଜିବାକୁ ଆସି ଏପଟସେପଟ ହେଉଥିଲା । ମୁଁ ନହଲିବାକୁ ଲଏ ମତେ ଇଙ୍ଗିତ ଦେଲା, ଦେହକୁ ପୂରା ନୁଆଁଇ, ଦ୍ରୁତ ଗତିରେ ଠିକ୍ ଆଗକୁ ଦୌଡ଼ିଗଲା । ଛାୟାଟି ଭାରାକ୍ରାନ୍ତ ହେଲାପରି ଉଦ୍‌ବେଗ ବୃକ୍ଷର ଏ ଡାଳରୁ ସେ ଡାଳକୁ ଆଗପଛ ହେଉଥିଲା । ଡାଳରୁ ଡାଳ ଧରି ସେ ଉପରକୁ ଉଠିଗଲା ଆଉ ଗଛ ଅଗରେ ଠିଆ ହେଲା ।

ଗୁଳି ଚାଲିବାର ଶବ୍ଦ ଧ୍ୱନିତ ହେଲା । ଗୋଟାଏ ଚିତ୍କାର ପ୍ରତିଧ୍ୱନିତ ହେଲା ପାଷାଣ ମୁଖରେ । ମୋ ମେରୁଦଣ୍ଡ ହାଡ଼ ଦେଇ ରୋମାଞ୍ଚିତ କମ୍ପନ ଉଠି ଆସିଲା ଉପରକୁ, କିଏ ଯେପରି ଚାବୁକରେ ପାହାର କସିଦେଲା ମତେ, ମୁଁ ଡେଇଁପଡ଼ିଲି । ହେଲେ, ଏହା ନଥିଲା କେଉଁ ଜନ୍ତୁର ଚିତ୍କାର, ଏ ଚିତ୍କାର ପାଷାଣ କାନ୍ଥରେ ପ୍ରତିଧ୍ୱନିତ ହୋଇ, ପାହାଡ଼ ତଳ ଗହ୍ୱର ଓ ଗୁମ୍ଫା ଫାଙ୍କ ଜାଗାମାନଙ୍କରେ ଅଧିକ ଶକ୍ତିଶାଳୀ ହୋଇ, ଗୋଟେ ଗୁପେଲି ବାଉଁଶ ବର୍ଚ୍ଛା ଜୀବନ୍ତ ମାଂସରେ ଗଳିଗଲା ପରି ଶୂନ୍ୟକୁ ଭେଦ କରିଗଲା ।

ଲଏ ମୋ ଆଡ଼କୁ ଧାଇଁ ଆସିଲା । ତା ମୁହଁ ପୂରା ଧଳା । "କ୍ୱାନ୍, କ୍ୱାନ୍ ।"

ମୁଁ ତା ଆଖିକୁ ଚାହିଁ ପାରିଲି ନାହିଁ । ମୁଁ ବି ଥରୁଥିଲି । "କ'ଣ ଘଟଣା କ'ଣ ?"

"ଜାଣେନି ... ଓରାଂଗଉଟାଂ ... ସେ ମଣିଷପରି ଚିତ୍କାର କଲା । ମତେ ଡର ଲାଗୁଛି ... ମୋ ସାଙ୍ଗେ ଆସ ।" ଲଏ ପଡ଼ିଗଲା । ତଳେ ପଡ଼ିଗଲା, ତା ବନ୍ଧୁକର ନଳୀ

ତଳକୁ କରି । ଆମେ ଧୀରେ ପାହାଡ଼ ତଳ ଗହ୍ବର ଭିତରକୁ ଚାଲିଲୁ ଯେଉଁଠି ଉଦ୍‌ବେଗ ବୃକ୍ଷର ଜଙ୍ଗଲ ଥିଲା । ଖସଡ଼ା ପଥର ଉପରେ ମୋ ଗୋଡ଼ ଖସିଗଲା । ମୁଁ ଟଳମଳ ହୋଇଗଲି ; ଅନୁଭବ କଲି ପିଠି ମୋର ଝାଳରେ ଓଦା ହୋଇଚାଲିଛି ।

ଆମ ମୁଣ୍ଡ ଉପରେ ଜଙ୍ଗଲ ସାରା ମୋଟା କୁହେଳି ଜମି ଲାଗିଥିଲା, ଏତେ ଶୀତଳ ଆଉ ଅସ୍ୱଚ୍ଛ ଯେମିତି ମାର୍ବଲ । ଗୋଟେ ଥୁଣ୍ଟା ଗଛ ଗଣ୍ଡିରେ ଝୁଣ୍ଟିପଡ଼ିଲି ଜୋର୍‌ରେ । ହଠାତ୍ ଗଛ ଗହଳି ଭେଦକଲା ଗୋଟେ କୁନ୍ଥା କାନ୍ଦଣା ।

"ଚିଫ୍, ଚିଫ୍ ..." ଲଏ ମୋ ଡେଣାଟାକୁ ଝିଙ୍କି ପକେଇଲା, ଆମେ ଦୌଡ଼ିଲୁ କୁହୁଡ଼ି ଭିତରକୁ । ଦେଖିଲୁ ଗଛ ଡାଳରୁ ଝୁଲୁଛି ଦୁଇଟି ଦୁର୍ବଳ ଗୋଡ଼, ପାଦରେ ଚିରା, ପୁରୁଣା ଆର୍ମି ଜୋତା । ଗୋଟାକରେ ମୋଜା ଅଛି, ଅନ୍ୟଟି ଫୁଙ୍ଗୁଳା । ମୋ ଛାତି ଧଡ଼ଧଡ଼ ହେଲା, ଲଏକୁ ଗୋଟିଏ ହାତରେ ଘୋଷାରି ମୁଁ ଦୌଡ଼ିଗଲି । ଆହତ ଲୋକଟି ତା ପେଟକୁ ଚାପି ଧରିଥାଏ । ତା କାଖତଳେ ରୋଟାଏ ରକ୍ତ ବୁଡ଼ୁବୁଡ଼ୁ ପାରାଚୁଟ କପଡ଼ା, ସେଇ ପ୍ରକାର ଯେମିତି ଆମେ ଯୁଦ୍ଧବତୀ ପକାଇବାବେଳେ ବ୍ୟବହାର କରୁ । ତା ପେଟ, ତା ପ୍ୟାଣ୍ଟ ପକେଟ, ତା ବୋତାମ, ସବୁ ରକ୍ତରେ ଲାଲ । ମୁଁ ତାକୁ ଚିହ୍ନିପାରିଲି : ସେ ଥିଲା ଫିଏନ୍, ମୋର ସବୁ ସୈନିକଙ୍କ ଭିତରେ ସବୁଠାରୁ ଲାଜକୁଳା । ସେ ଆମକୁ ଦେଖିଲା କ୍ଷଣି ମୁଣ୍ଡ ଟେକିଲା । "ଭାଇ ଲଏ, ତୁମେ ମୋତେ ଗୁଳି ମାରିଦେଲ । ଭୁଲରେ ।"

ସେ ହସିଲା । ତା ଥରିଲା ଓଠଧାରରେ ତା ବଙ୍କା ଦାନ୍ତ ମାଡ଼ିକ ଚକ୍‌ଚକ୍ କଲା । ମୋତେ ସେ ଚାହିଁଲା, ତା ନିଃଶ୍ୱାସ ଉଠୁଥାଏ ପଡୁଥାଏ । "ଚିଫ୍, ମୋତେ ଶାସ୍ତି ଦିଅନାହିଁ ... ମୁଁ ସଂଗ୍ରହ କରୁଥିଲି ... କିଛିଟା ପାରାଚୁଟ ... ଦେବାକୁ ..."

ତା ସ୍ୱର ଅଟକିଗଲା, ମୁଣ୍ଡ ଗୋଟେ ପଟକୁ ଢଳିଗଲା ନଡ଼ବଡ଼ ହୋଇ ।

ମୁଁ ତା ଛାତି ଉପରେ ହାତ ଥୋଇଲି । ନିଃଶ୍ୱାସ ବନ୍ଦ ହୋଇଯାଇଥିଲା । ତା ମୁଣ୍ଡରୁ ଗୋଟିଏ ବାଳ ଝିଙ୍କି ଆଣି ତା ନାକପୁଡ଼ା ତଳେ ଧରିଲି । ମୁଁ ହଲଚଲ ହେଲି ନାହିଁ । ଲଏ ଗୋଟେ ଚିତ୍କାର କରି କାନ୍ଦି ଉଠିଲା, ତା ମୁଣ୍ଡ ଫିଏନର ଛାତି ଉପରେ ଲାଖିଥାଏ, ତା ବିରାଟ ଦେହ କମ୍ପୁଥାଏ କୋହରେ, "ହେ ଭଗବାନ, ହେ ଭଗବାନ ।"

ଫିଏନ୍‌ର ଆଖି ଦୁଇଟି ରହିଥିଲା ଖୋଲା, ଅସଂପୃକ୍ତ, ସୁଖ ଅବା ଦୁଃଖର ଶେଷ କିରଣରୁ ମୁକ୍ତ । ଅତିବେଶୀରେ ମିନିଟିଏ ଆଗରୁ, ସେ ମୋତେ ଧୈର୍ଯ୍ୟର ସହ ଚାହିଁଥିଲା, ବିନତି କରୁଥିଲା ତାକୁ ଦଣ୍ଡିତ ନକରିବାକୁ । ସେ ନିଶ୍ଚୟ ବହୁତ ସକାଳୁ ଉଠିଥିବ, ନହେଲେ ଏତେଦୂର ଆସିଲା କେମିତି ? କାହାପାଇଁ ସେ ପାରାଚୁଟ କପଡ଼ା ଏକାଠି କରୁଥିଲା, ମୁଁ କିପରି ଏ ବିଷୟରେ କିଛି ଜାଣିପାରି ନାହିଁ ? ମୋ ଡିଭିଜନର ସୈନିକ ତାଲିକା ଉପରେ ମୁଁ ଆଖି ବୁଲେଇଲି । ସେ ଥିଲା ଏକଦମ ଶେଷରେ :

ନ୍ଗୁଯେଁ ଭାନ୍ ଫିଏନ୍

ବୟସ : ୧୯

ଗ୍ରାମ : ନିଓ, ଜିଆଭିଏନ୍ କମ୍ୟୁନ୍, ନିନ୍ ବିନ୍ ପ୍ରଦେଶ ।

ଉଚ୍ଚତା : ପାଞ୍ଚ ଫୁଟ

ବିଶେଷ ସଂକେତ : ବସନ୍ତ ଦାଗଥିବା ମୁହଁ, ବଡ଼ ଦାନ୍ତ ।

ଚରିତ୍ର : ଧୈର୍ଯ୍ୟଶୀଳ, ଭଦ୍ର ।

ଫିଏନକୁ ତୁମେ ସବୁବେଳେ ସବୁଠାରୁ ଖରାପ ସ୍ଥାନରେ ଭେଟିବ, ଆଉ ସବୁଠାରୁ ଖରାପକାମ ସେ କରୁଥିବ । ଆମେ ଜଙ୍ଗଲ ମଝିରେ ଥାଉ କି ଗାଁ ବାହାରେ କ୍ୟାମ୍ପରେ, ସେ ହିଁ ଏକମାତ୍ର ଯିଏ ଜାଳେଣି କାଠ ଯୋଗାଡ଼ କରେ, ଯିଏ ଖୋଜି ବୁଲେ ପରିବା, ଫଳମୂଳ । ଫିଏନ୍ ପ୍ରତିଦିନ ଏକାଠି କରୁଥିଲା କାଠ, ଅଙ୍ଗାର, ସଫା କରୁଥିଲା ନଳା, ଏପରିକି କ୍ୟାମ୍ପ ପରିସରରେ ଝାଡୁ ମାରୁଥିଲା । ନୂଆ ନୂଆ ସୈନ୍ୟ ବିଭାଗରେ ଭର୍ତ୍ତି ହୋଇଥିବା, ବଡ଼ବଡ଼ କଥା କହୁଥିବା ଟୋକାମାନେ ଗାଁର ସୁନ୍ଦର ଟୋକକିମାନଙ୍କ ପଛରେ ଗୋଡ଼େଇବା ପ୍ରତିଯୋଗିତାରେ ଲାଗିପଡୁଥିଲେ । ଆଉ ଯଦି କିଛି ଭୁଲ ହୋଇଯାଉଥିଲା ତ ଫିଏନ୍‌କୁ ହିଁ ସେମାନେ ପଠାଉଥିଲେ ଶାନ୍ତି ରକ୍ଷା କରିବାକୁ । ସେ ଥିଲା ଆଜନ୍ମ ସହିଦ । ତା ଉପରେ ଯିଏ ଥରେ ଆଖି ପକାଇଲା ତ ତାର କ୍ଷତି କରିବା କଥା ଚିନ୍ତା କରିପାରିବ ନାହିଁ ।

ଆମ ଡିଭିଜନ୍ ତମ୍ବୁ ଟଙ୍ଗାକାମ ସାରିଦେବାପରେ, ଫିଏନ୍ ତା ଦୁଇତାରବାଲା ଗିଟାରଟି ଧରି ଚାରିପଟେ ଘୂରିବୁଲେ । ମୁହୂର୍ତ୍ତେ ବିଶ୍ରାମ ସମୟ ପାଇଲେ ସେ କେଉଁ ଗଛତଳେ ବସି ଗିଟାରରେ ସ୍ୱର ତୋଳେ :"ଓ ଓ ମୁଁ ଯେ ଉଡ଼ଇ ନଭ ମଣ୍ଡଳେ

ମୁଁ ଚଢ଼େ ଯେ ପାହାଡ଼ ଶିଖରେ

ଦେଖ, ବସିଛି ମୁଁ ବରଗଛ ତଳେ ।"

ଲଏ ତଥାପି କଇଁ କଇଁ ହୋଇ କାନ୍ଦୁଥିଲା । ମୁଁ ଚିତ୍କାର କରି କହିଲି, "ଉଠ୍ ।" ସେ ମୋତେ ଏମିତି ଚାହିଁଲା, ଯେମିତି ଏକବାରେ ଭାଙ୍ଗି ପଡ଼ିଥିଲା, ତା ମୁହଁସାରା ବୋଳା ହୋଇଥିଲା ରକ୍ତ ଆଉ ଲୁହ । ହଠାତ୍ କ୍ରୋଧରେ ମୁଁ ଉତ୍ତେଜିତ ହୋଇଉଠିଲି । ଆଉ କାନ୍ଦି ଲାଭ କ'ଣ ? ଏବେ ତୁ ଗୋଟେ ମିଲିଟାରି କୋର୍ଟକୁ ଯିବୁ ଆଉ ସେମାନେ ତୋ କପାଳରେ ସିଧା ଗୁଳି ଲାଛି ଦେବେ ।"

ଲଏ ପଥରଟେ ପରି ଅଚଳ ହୋଇପଡ଼ିଥାଏ । ରକ୍ତ ଲାଲ ଦୁଇଧାର ଲୁହ ତା ସାର୍ଟକଲର ଉପରେ ପଡ଼ିଲା ।

ମୁଁହ ପୋଛିଦେ । କଚେରିରେ ଯଦିବା ତୁ ଜୀବନ ଶେଷ କରିବାକୁ ଯାଉଛୁ, ତଥାପି ତୋତେ ମୁଁ ଏପରି ରୂପରେ ଯିବାକୁ ଦେବି ନାହିଁ ।"

ଲଏ ତା ପକେଟ ଅଣ୍ଡାଳି କୌଣସି ପ୍ରକାରେ ଖଣ୍ଡେ ମଇଳା ଲୋଚାକୋଚା ପାରାଚୁଟ କପଡ଼ା ବାହାରକଲା । ହାତରେ ସେଇଟା ସାଉଁଳେଇ ଯନ୍ତ୍ରବତ ନିଜ ମୁହଁକୁ ପୋଛିଲାଗିଲା ।

"ତାହେଲେ କ'ଣ ସ୍ଥିର କଲୁ ?"

ସେ ନୀରବ ଥିଲା ।

"ଯାହାହେଲେ ବି ତୋର ଅନ୍ତ ଗୋଳାବର୍ଷୀ କ୍ଷୁଦ୍ର ସେନାଦଳ ସମ୍ମୁଖରେ ହେବା ସୁନିଶ୍ଚିତ । ହୋଇପାରେ, ଏଇଠି ତୋ ମୁଣ୍ଡକୁ ସିଧାସଳଖ ଗୁଳିଟିଏ ମୁଁ ମାରିଦେବା ଉଚିତ ।"

ସେ ମୁଣ୍ଡ ଟୁଙ୍ଗାରି ଠିଆ ହୋଇପଡ଼ିଲା । ଚାଲିଚାଲି ଆସିଲା ମୋ ମୁହାଁମୁହିଁ ହୋଇ ଠିଆହେଲାଯାଏଁ । "ମାର, ଗୁଳିମାର, ସୁଟ୍ ବଡ଼ଭାଇ । ଯା'ହେଲେ ବି ଅନ୍ତ ଏହିପ୍ରକାର ହିଁ ତ ହେବ ନା ! ଚଳାଅ ଗୁଳି !" କି କୁତ୍ସିତ, ପ୍ରତାରକ ଏ ଜୀବନ : ବଞ୍ଚିଥିବା ଲୋକ ଆଖିବୁଜି ଗୁଳିକୁ ଅପେକ୍ଷା କରିଛି ଯେତେବେଳେ ମୃତ ଲୋକଟି ବଡ଼ ବଡ଼ ଆଖିରେ ଶୂନ୍ୟକୁ ଦେଖୁଛି ।

"ଆଗେଇ ଆସ, ସୁଟ୍ । ଏ ବାଟଟି ସହଜ ମୋ ପାଇଁ ।"

ତା ଆଖି ତଥାପି ବନ୍ଦ ଥିଲା । ଏବେ ପୂରା ସକାଳ ହୋଇସାରିଥିଲା, ଆଉ ମୁଁ ସ୍ପଷ୍ଟ ଦେଖିପାରୁଥିଲି ତା' ମୁହଁକୁ । ତା' ଆଖି ଚାରିପଟେ ଆଉ ଗାଲ ଉପରେ ଚମ ଲୋଚାକୋଚା ହୋଇ ଭାଙ୍ଗ ଭାଙ୍ଗ କୁଞ୍ଚ ପଡ଼ିଯାଇଥିଲା । ଏ ମୁହଁ ଥିଲା ଗୋଟେ ବୁଢ଼ାଲୋକର । ବୋଧେ ମୋ ବୟସ ବି ବଢ଼ିଯାଇଛି । ଯାହାହେଲେ ବି ନିଜ ମୁହଁ ତ କେହି କେବେ ଦେଖିପାରେ ନାହିଁ । ଏଇସବୁ ଚିନ୍ତାରେ ବ୍ୟସ୍ତ ହେବାକୁ ମୁଁ କେବେ ନିଜକୁ ଅନୁମତି ଦେଇନାହିଁ । ମୋର ସମୟ ନଥିଲା । ମତେ ଲାଗିଲା ଯେପରି ମୋ ବାହୁ ଦୁଇଟି ଅଚଳ ହୋଇଆସୁଛି, ମୋ ଦେହ ଏକବାରେ ଢିଲା ।

"ଆଖି ଖୋଲ", ମୁଁ କହିଲି ।

ସେ ଆଖି ମେଲେଇ ମତେ ସିଧା ଅନେଇଲା ।

"ତୁ ସତରେ ବିଶ୍ୱାସ କରୁଥିଲୁ ଯେ ମୁଁ ମୋ ରିଭଲଭର୍‌ରୁ ତୋତେ ଲକ୍ଷ୍ୟକରି ଗୁଳି ଚଳେଇପାରିବି ?"

ସେ କିଛି କହିଲା ନାହିଁ । ଗଛମାନଙ୍କର ସବୁଜ ରଙ୍ଗ ପ୍ରତିଫଳିତ ହେଉଥିଲା ତା' ଆଖିରେ ।

"ତୁ ସତରେ ସେ କଥା ବିଶ୍ୱାସ କରୁଥିଲୁ ? ବଦମାସ ।"

ତା ଆଖିରେ ଲୁହ ଟଳମଳ ହେଲା ; ତାପରେ ବୋହି ଆସିଲା ଗାଲ ଉପର ଦେଇ ।

"କେବଳ ଆମେ ଦୁଇଜଣ ଏକଥା ଜାଣିଚେ । ଏବେ ଏହା ଘଟିସାରିଛି । ଆଉ ତ କିଛି କରି ହେବ ନାହିଁ ଏ ବାବଦରେ । ତତେ ଗୁଳିକରି ମାରିଦେଲେ ବା ତତେ ଆଜୀବନ ଜେଲ୍‌ରେ ଠୁଙ୍କିଦେଲେ କି ଫାଇଦା ମିଳିବ ? ... ତା ଛଡ଼ା ତୋ ଘରେ ମାଆ ବି ଅଛି ।"

ଲଏ ଛାତିରୁ ଉଠିଆସିଲା କୋହ । ତା ବିଧବା ମାଆ ଘରେ ଅଛି ଯିଏ ବଞ୍ଚୁଛି, ନିଃଶ୍ୱାସ ନେଉଛି କେବଳ ପୁଅ ପାଇଁ । ପୁଅ ଯଦି ଯୁଦ୍ଧରେ ମରିଯାଏ ତ ସେ ବି ମରିଯିବ । ପୁଅ ଯଦି ଦୋଷୀ ସାବ୍ୟସ୍ତ ହୁଏ, ତ ସେ ଗଳାରେ ଦଉଡ଼ି ଲଗାଇଦେବ ନହେଲେ ନଦୀରେ ବୁଡ଼ିଯିବ ।

ମୁଁ ଥରଟିଏ ତାଙ୍କୁ ଭେଟିଛି, ଆମ ସମବେତ ସୈନ୍ୟସଂଗ୍ରହ ଉତ୍ସବ ଦିନ । ସେଦିନ ଲଏର ଗାଲ ଥିଲା ଗୋଟାଏ ଝିଅର ଗାଲ ପରି ଗୋଲାପି । ସେ ଛନ୍ଦଣିମନ୍ଦଣି ହୋଇ ଚାଲୁଥିଲା ଜଣେ ପୃଥୁଳା ରମଣୀଙ୍କ ପଛରେ, ଯାହାଙ୍କ ଶରୀର ଏକ ହଳଦିଆ ଫୁଲପକା ଆଓଦାଇ ଭିତରେ ଥୁକୁଲ ଥୁକୁଲ ଦୋହଲୁଥିଲା । ସେ ଥିଲେ ତାର ମାଆ, ତାର ଦେବୋପମ ଅଭିଭାବକ, ତା' ଚାକରାଣୀ, ତାର ସର୍ବଶ୍ରେଷ୍ଠ ବନ୍ଧୁ । ଅସୁନ୍ଦର, ନିସଙ୍ଗ, ଛୋଟ ହାତୀଟି ପରି ମାଇପିଟିଏ । ଲଏ ତାଙ୍କର ଏକମାତ୍ର ଗର୍ବ, ତାଙ୍କ ଜୀଇଁ ରହିବାର ଏକମାତ୍ର କାରଣ ।

ମୁଁ ତା' ଆଡ଼କୁ ଏବେ ବୁଲିପଡ଼ିଲି ଅଧୈର୍ଯ୍ୟ ହୋଇ : "ତାହେଲେ ?" ଲୟ ତଥାପି କାନ୍ଦୁଥିଲା । ରାଗରେ ମୁଁ ଫାଟି ପଡ଼ିଲି । "ବନ୍ଦକର ! ମୁଁ ସ୍ପଷ୍ଟ ଦେଖିପାରୁଛି : ତୁ ମରିବୁ ଆଉ ତୋ ମାଆ ଆତ୍ମହତ୍ୟା କରିବେ । ନା, ଏ ଘଟଣା ବିଷୟରେ ମୁଁ ଆଉ ପଦେ ବି ଶୁଣିବାକୁ ଚାହେଁ ନାହିଁ । ଆମେ କ୍ୟାମ୍ପକୁ ଫେରିଯିବା । କିଛି ଯେପରି ଘଟିନାହିଁ ସେହିପରି ଅଭିନୟ କରିବା । ଖରାବେଳେ, ଖାଇବା ଆଗରୁ, ଖିଏମକୁ ମୁଁ କହିଦେବି ରୋଲ ଡାକିବାକୁ । ତାପରେ ଆମେ ତଦନ୍ତ କରିବା । ସେମାନେ ଫିଏନ୍‌କୁ ସେଇମିତି ପାଇବେ ଯେମିତି ଆମେ ସେ ଝିଅମାନଙ୍କୁ ମୃତ-ଆତ୍ମା ଗହ୍ୱରରେ ପାଇଥିଲେ । ବୁଝିଲୁ ?"

"ବୁଝିଲି", ଲଏ କୁଣ୍ଢେଇକି କହିଲା । "ହେଲେ ଭଲହେବ ତୁମେ ମତେ ଏଇଲେ, ଏଇଠାରେ ଗୁଳି କରିଦେଲେ । ଏ ଘଟଣା ପରେ ମୁଁ କିମିତି ଜୀଇଁ ପାରିବି ?"

ମୁଁ ତା କାନ୍ଧର ଦୁଇପାଖ ଧରି ଜୋରରେ ଝାଙ୍କିଦେଲି । "ନିଜକୁ ସଂଯତ କର । ଏକଥା ବାହାରକୁ ଫିଟିଗଲେ ଆମେ ଦିହେଁ ହଇରାଣରେ ପଡ଼ିବା । ସେଥିରୁ କ'ଣ ଲାଭ ମିଳିବ ? ଆମେ ତ ଦେଶଦ୍ରୋହୀ ନୁହଁ । ଆମେ ତ ତାକୁ ମାରିବାକୁ ଚାହୁଁନଥିଲେ । ତୁ ଏକମାତ୍ର ବ୍ୟକ୍ତି ନୁହଁ ଯାହାପାଇଁ ମୁଁ ଏପରି କାହାଣୀ ଉଦ୍ଭାବନ କରୁଛି । ତୁ କ'ଣ ଭାବୁଛୁ ସେମାନେ ତତେ ଗୁଳିରେ ଉଡ଼େଇଦେବେ ବୋଲି ମୁଁ ଚିନ୍ତିତ ? ତାହା ତ ତୋପାଇଁ ବହୁତ ସହଜ ବାଟ ହେବ । ହେଲେ ତୋ ମାଆ କଥା ଆମକୁ ଭାବିବାକୁ

ହେବ । କେବଳ ତାଙ୍କରି ପାଇଁ ମୁଁ ଏସବୁ କରୁଛି, ତୋ ପାଇଁ ନୁହେଁ । ଚୁପକର ଆଉ କାନ୍ଦ ବନ୍ଦକର । ମୁହଁ ପୋଛିପକା । ତୁ ଦେଖାଯାଉଛୁ ଗୋଟେ ଭୂତ ପରି । ହଁ ।"

ଖରାବେଳେ, ମୁଁ ଖ୍ୱିଏମକୁ ରୋଲ ନମ୍ବର ଡାକିବାକୁ କହିଲି ।

ସମସ୍ତେ ଫୁସଫାସ ହେଉଥିଲେ : "ଫିଏନ୍ କୁଆଡ଼େ ଯାଇଛି ।"

"ସେ କ୍ୟାମ୍ପ ଛାଡ଼ି ପଳାଇଛି ନିଶ୍ଚୟ, ମୁଁ ଜିଦିମାରି କହିପାରେ ।"

"ସେ କୁକୁଡ଼ା କଲିଜାଟା ? ଅସମ୍ଭବ ।"

"କାହିଁକି ନୁହେଁ ? ସବୁବେଳେ ଏଇଭଳି ଲୋକମାନେ ତ ଗୁଜବ ସୃଷ୍ଟି କରିଥାଆନ୍ତି ।"

ଫିଏନ୍ ବ୍ୟାଗରେ ସେମାନେ ପାଇଲେ ଗୋଟେ ବେଶ ଲମ୍ବା ପାରାଚୁଟ କପଡ଼ା ଆଉ ଆଠଟି ଛୋଟ କପଡ଼ା, କମାଣ ବାହିନୀର ସଂକେତରୂପେ ଯାହା ବ୍ୟବହାର ହେଉଥିଲା । ସେଇଦିନ ସନ୍ଧ୍ୟାରେ, ଫିଏନ୍‌କୁ ଖୋଜିବାକୁ ଖ୍ୱିଏମ୍ ଦଳଧରି ବାହାରିଗଲା, ମୋ ପାଇଁ ହେଡ଼୍‌କ୍ୱାଟର୍ସରୁ ଜରୁରୀ ଡାକରା ଆସିଲା । ଲଏ ମୋ ସାଥିରେ କେତେବାଟ ଯାଏଁ ଆସିଲା । ମତେ ଡାକିବାକୁ ଆସିଥିବା ଅଫିସର ପାସ୍ କରିବାକୁ ବୁଦାଆଡ଼କୁ ଚାଲିଗଲା । ଲଏକୁ ମୁଁ ପଚାରିଲି, "ଫିଏନ୍ ଏତେ ପାରାଚୁଟ କପଡ଼ା ସଂଗ୍ରହ କରୁଥିଲା କାହିଁକି ? ସେ କ'ଣ ପାଗଳ ହୋଇଯାଇଥିଲା ?"

"ସମସ୍ତେ ଏହା ସଂଗ୍ରହ କରନ୍ତି । ସେଥିରୁ ସ୍କାର୍ଫ କରିବେ କିମ୍ବା କେବଳ ଏଇ ଦିନଗୁଡ଼ିକୁ ମନେରଖିବାର ଚିହ୍ନସ୍ୱରୂପ ପାଖରେ ରଖିବେ । ସେ ଭାବିଥିଲା, ପରେ ଏହାକୁ ନେଇ ପ୍ରକୃତ କପଡ଼ା ବେପାର କରିପାରିବ । ତା' ଗାଁରେ ପାରାଚୁଟ କପଡ଼ାରୁ ତିଆରି ସ୍କାର୍ଫକୁ ଆଧୁନିକ ଫେସନ ବୋଲି ଭାବନ୍ତି ।"

"ତୁ କେମିତି ଜାଣିଲୁ ?"

"ସେ ମୋତେ କହିଥିଲା । ସେ ଅଧିକାଂଶ ସମୟରେ ଏଇକଥା କହୁଥିଲା ଯେ ଯୁଦ୍ଧ ସରିଗଲାପରେ ପେଟ ପୋଷିବାକୁ କ'ଣ କରିବୁ ଆମେ ଜାଣିନଥିଲୁ, ସେ ତେଣୁ ଭାବିଥିଲା ପାରାଚୁଟ କପଡ଼ାରୁ ବେପାର ଆରମ୍ଭ କରିପାରିବ ଆଉ ନିଜପାଇଁ କିଛି ସ୍କାର୍ଫ ବନେଇପାରିବ ... ତୁମେ ଏ ବିଷୟରେ କିଛି ଜାଣିନଥିଲ, ହେଲେ ସେ ବହୁତ ଗରିବ ଥିଲା । ଗୋଟିଏ ଦୁଇବର୍ଷର ଭଉଣୀକୁ ତା ପାଖରେ ଛାଡ଼ି ତା ମାତା-ପିତା ମରିଯାଇଥିଲେ । ଭଉଣୀଟିକୁ ସିଏ ପାଳିଲା । ଦୁହେଁ ମିଶି ବତକ ପାଳନ କଲେ । ଏଠିସେଠି ବେଳେବେଳେ ଚୋରି ବି କରୁଥିଲେ, ଧାନବିଲରୁ ମାଛମାରି ଆଣୁଥିଲେ । ଭଉଣୀକୁ ସେ ଖୁବ୍ ଭଲ ପାଉଥିଲା ।"

ଲଏର ହିକ୍କା ଉଠିଆସିଲା ।

"ମଧ୍ୟସ୍ଥ ଅଫିସରଟା ଆସୁଛି ... ଚୁପ୍‌ରହ ... ଯଦି କେହି ଏକଥା ଶୁଣିବ ତ ଆଗ ସେମାନେ ମତେ ହିଁ ଗୁଳି ମାରିଦେବେ, ବୁଝିଲୁ ?"

ଲଏ ଚୁପ୍‌ହୋଇଗଲା ଆଉ ସେଇଠାରୁ ଫେରିଗଲା । ମୁଁ ଅଫିସର ପଛେପଛେ ହେଡ୍‌କ୍ୱାଟର୍ସକୁ ଚାଲିଲି ।

ଡିଭିଜନ କମାଣ୍ଡରଙ୍କ ସହ ସେଠାରେ ମୋର ଭେଟ ହେଲାନାହିଁ, ତାଙ୍କ ବଦଳରେ ଲୋଙ୍ଗ, ତାଙ୍କ ତଳ ଅଫିସର ମୋ ସହିତ ହ୍ୟାଣ୍ଡସେକ କଲା । ଆମେ ଦୁହେଁ ପିଲାଦିନର ସାଙ୍ଗ ଆଉ ପରସ୍ପରକୁ ସେଇଦିନଠୁ ଜାଣୁ ଯେବେ ଆମେ ଖୋଲା ଆକାଶ ତଳେ ଲଙ୍ଗଳା ହୋଇ ବୁଲୁଥିଲୁ । ଆମ ଦୁଇ ପରିବାରର ଘର ମଝିରେ ଥିଲା କେବଳ ବୁଦାଗଛର ଗୋଟେ ବାଡ଼ । ଲୋଙ୍ଗ ମୋଠାରୁ ଦୁଇବର୍ଷ ବଡ଼ ଥିଲା । ଏବେ ହୋଇଛି ବେଶ ଡେଙ୍ଗା ଯୁବକଟିଏ, ଚଉଡ଼ା ମୁହଁ, ଓଠ ଆଉ ସଳଖ ଭ୍ରୂଲତା ତାକୁ ବେଶ ଖାପ ଖାଉଛି । ଆଗରୁ ତା' ଓଠ ସବୁବେଳେ ଗୋଲାପି ଥିଲା । ଦଶବର୍ଷର ଯୁଦ୍ଧ ଆଉ ବାରମ୍ବାର ମ୍ୟାଲେରିଆର ଆକ୍ରୋଶ ତା' ଓଠକୁ କେମିତି ଶେଥା କରିଦେଇଛି । ହେଲେ ଅନ୍ୟ ସୈନ୍ୟମାନଙ୍କ ଓଠ ତୁଳନାରେ ତାର ବେଶ ଲାଲ ଅଛି । ଆଜି ରାତିରେ ଲୋଙ୍ଗର ବ୍ୟବହାର କିପରି ସନ୍ଦିଗ୍ଧ, ଦୃଢ଼ତା ନଥିବା ପରି ଲାଗୁଛି । ଆମେ ଦୁହେଁ ନୀରବରେ ବସି, ଦେଶୀମଦ ପିଉଥିଲୁ, ପ୍ଲେଟ୍‌ରେ କିଛି ସାଲାଡ଼ ଥିଲା । ଘଣ୍ଟାଏ ପରେ ସେ ମୋତେ ତା' ସାଥିରେ ନଦୀରେ ଗାଧୋଇବାକୁ ଡାକିଲା ।

"ମୁଁ ଗତକାଲି ଗାଧୋଇଥିଲି । ଯା'ହେଲେବି, ଏ ପାଗରେ ନିମୋନିଆ ହୋଇଯିବ । ଏ ସମୟରେ ଜରକୁ ଡାକିଆଣିବା ଠିକ୍ ନୁହେଁ ।"

ଲୋଙ୍ଗ ନିଜ ସ୍ୱରକୁ ଧିମା କରି କହିଲା, "ଆସ ମୋ ସାଥିରେ, ବହୁତ କଥା ଅଛି ତୁମକୁ କହିବାକୁ ।"

ମୋ ଛାତି ଧଡ଼ ଧଡ଼ ହେଲା । ସେ କ'ଣ ଆଜି ସକାଳର ଘଟଣା ବିଷୟ ଶୁଣିସାରିଛି ? ନା, ଅସମ୍ଭବ । ସେପରି ହେଲେ ତାକୁ ଦୈବୀଶକ୍ତିସମ୍ପନ୍ନ ହେବାକୁ ହେବ । ଆଉ କେଉଁ ଦୈବୀଶକ୍ତିସମ୍ପନ୍ନ ଏ ଦେଶରେ ଚାଲିଥିବା ବୋମାମାଡ଼, ଦୁର୍ଭିକ୍ଷ, ଗଣହତ୍ୟା ଆଦି ଦୂରକୁ ଉଡ଼େଇ ନନେଇ ତା ମଝିରେ ରହିବ ? ନିଜକୁ ଶାନ୍ତକରି ମୁଁ ତା ସାଥିରେ ଯିବାକୁ ରାଜିହେଲି ।

ସଂଜ ଠିକ୍ ନଇଁଆସିଲାବେଳକୁ ଆମେ କ୍ୟାମ୍ପ ଛାଡ଼ିଲୁ । ପ୍ରାୟ ତିନିଶହ ଗଜ ଗଲାପରେ, ଆମେ ପହଞ୍ଚିଲୁ ଜଙ୍ଗଲ ଧାରରେ । ସୂର୍ଯ୍ୟାସ୍ତର ଗୋଲାପି ଆଭାରେ ଗଛମାନଙ୍କ ଉପରିଭାଗ ଚକ୍‌ଚକ୍ କରୁଥିଲା । ଜଙ୍ଗଲରେ ବୋହୁଥିବା ସର୍ ସର୍ ପବନକୁ ଆମେ ନିଃଶ୍ୱାସରେ ଜୋର୍ ଗହିରେଇ ଟାଣି ନେଉଥିଲୁ । ଲୋଙ୍ଗ ମତେ ଗୋଟେ ଗଡ଼ାଣି ବାଟରେ ନେଇଚାଲିଲା, ଯେଉଁଠି କଣ୍ଟାଳିଆ କମଳାରଙ୍ଗର ଫୁଲ ପୂରା ଭର୍ତ୍ତି ହୋଇଥିଲା । କଣ୍ଟାବୁଦା ଲାଗିଥିଲା ଏକଦମ୍ ଝରଣା ଧାରଯାଏଁ । ଆମେ ପହଞ୍ଚିଲା ପରେ, ଲୋଙ୍ଗ ମତେ ସେଇଠାରେ ବସିପଡ଼ିବାକୁ ସଙ୍କେତ ଦେଲା ।

ଆମେ ପାଖାପାଖି ବସି, ଚୁପ୍‌ଚାପ୍ ସିଗାରେଟ୍ ଟାଣିଲୁ କେତେବେଳଯାଏଁ । ଝରଣାଟି ଶୁଖିଲା ପଡ଼ିଥିଲା, ତେବେ ଗୋଟେ ଗୋଟେ ଜାଗାରେ ଗାଡ଼ିଆ ପରି ପାଣି ଥିଲା ଆଉ ଗୋଧୂଳିର ଅଳ୍ପ ଆଲୁଅରେ ବି ଦର୍ପଣ ପରି ଚକ୍‌ଚକ୍ କରୁଥିଲା । ଧୀରେ ଏହି ଚକ୍‌ଚକ୍ ସୁନେଲିରୁ ଗୋଲାପି ଆଉ ତାପରେ ବାଇଗଣୀ ହୋଇଗଲା ।

ମୁଁ କହିଲି, "ଖୁବ୍ ଶୀଘ୍ର ଅନ୍ଧାର ହୋଇଯିବ ଜଣାଯାଉଛି ।"

"ହଁ", ଲୋଙ୍ଗ୍ ଗୁଣୁଗୁଣୁ ହେଲା, ତା' ଆଖି ଥିଲା ଭାବହୀନ, ସିଗାରେଟରୁ ଦୁଇପୁଲା ସେ ଜୋର୍ ଟାଣିନେଲା । "ଶୁଣ କ୍ୱାନ୍, ତୁମର ଗାଁ କଥା ମନେପଡ଼େ ନାହିଁ ?"

"ଅବଶ୍ୟ ମନେପଡ଼େ, କିଏ ଗାଁକୁ ମନେ ନପକାଏ କହିଲ ।"

"ବିଶେଷକରି ନଦୀ । ପ୍ରତିଥର, ଏଇମିତି ଝରଣାଟିଏ ଦେଖିଲେ, ମୋ ପାଦ ଦି'ଟା ଅଚଳ ହୋଇଯାଏ । ସବୁଠାରୁ ବେଶୀ କଷ୍ଟ ହୁଏ ଫିଏନ୍‌ବଙ୍ଗ ଟପିକି ଗଲାବେଳେ । ତୁମେ ସେ ବାଟେ କେବେ ଯାଇଛ ?"

"ଏଇ ଅଞ୍ଚଳରେ ରହୁଥିବା ଏମିତି କେଉଁ ସୈନିକ ଅଛି ଯିଏ ସେ ନଦୀକୁ ଜାଣିନାହିଁ ?"

ଲୋଙ୍ଗ୍ ସହମତି ହେଲା, "ସତରେ, ଚମତ୍କାର ।"

"ଠିକ୍ ଅଛି, ଏ ନଦୀ ଚମତ୍କାର । ହେଲେ ତୁମେ ମୋତେ ଏତେ ବାଟ ଡାକି ଆଣିନାହଁ ନିଶ୍ଚୟ ଗାଁ ବିଷୟରେ ଗପିବାକୁ ?"

ସେ ହଁ କି ନା କିଛି କହିଲା ନାହିଁ । କେବଳ ଆଉ ଗୋଟେ ସିଗାରେଟ୍ ଲଗାଇଲା ।

"ମୁଁ ଚାହେଁ ନାହିଁ ଅନ୍ୟ ସୈନ୍ୟମାନେ ଆମକଥା ଶୁଣନ୍ତୁ । ତୁମେ ତ ଜାଣିଛ, ଗୋଟାଏ ଯୁଦ୍ଧ ଚାଲିଛି ।"

"ହଁ, ଯୁଦ୍ଧ", ମୁଁ ନାକ କୁଞ୍ଚେଇ କହିଲି ।

ଝରଣା ଶଯ୍ୟାଧାରରେ, ସୂର୍ଯ୍ୟାସ୍ତ ଏବେ ପୂରା କଳା-ବାଇଗଣୀରେ ବଦଳି ଯାଇଥିଲା । ଦୂରରେ ବୁଦାଗୁଡ଼ା ବେଶୀ ଝଙ୍କାଳିଆ ଆଉ କଳା ଦିଶୁଥିଲା । ଲୋଙ୍ଗ ତା ଥୋଡ଼ିଟାକୁ ସାଉଁଳେଇଲା, "ଆଜି ରାତିରେ ତୁମକୁ ମୁଁ ଡକାଇ ପଠାଇବାର କାରଣ ହେଲା ବୀଏନ୍ ।"

"କ'ଣ ତୁମେ କହିବାକୁ ଚାହୁଁଛ ?"

ସେ ତା' ଥୋଡ଼ି ସାଉଁଳେଇ ଚାଲିଥାଏ । ତାର ଥିଲା ଚଉଡ଼ା ଆଉ ମୁହଁକୁ ଖାପଖାଇଲା ଭଳି ଥୋଡ଼ି । ମୁଁ ବି ଜାଣିଥିଲି ଏକଦା ଦାଢ଼ି ରଖି ସେ କେତେ ସୁନ୍ଦର ଦେଖାଯାଉଥିଲା । ସେ ଯଦି କେବେ ଦାଢ଼ି କାଟିବା ଛାଡ଼ିଦିଏ ତ, କାର୍ଲମାର୍କ୍ସଙ୍କ ପରି ଅବିକଳ ଦେଖାଯିବ । କାର୍ଲମାର୍କ୍ସ, ଆମ ସ୍କୁଲ ପାଠବହିରେ ରାଜୁତି କରୁଥିବା ଈଶ୍ୱର, ଯିଏ ଆମ ଦୈନନ୍ଦିନ ନୈତିକ ଚିନ୍ତାଧାରାକୁ ଆସ୍ଥା ଦେଇଥିଲେ, ଆମକୁ ଶପଥ କରିବାକୁ

ଉତ୍ସାହିତ କରିଥିଲେ । ହେଲେ ଲୋଙ୍ଗ କେବେ ତାର ସେଇ ଦାଢ଼ି ତାକୁ ଦେଇଥିବା ଶକ୍ତି ବିଷୟରେ ଜାଣିପାରିନଥିଲା । ଏବେ ଅନ୍ୟ କେଉଁ ଏକ ସମସ୍ୟା ଦ୍ୱାରା ଟାଣିହୋଇ, ସେ ଯାହା ତାର ଖୁଅର ସରିଥିବା ଦାଢ଼ିକୁ ସାଉଁଳୁଥିଲା ।

"ବୀଏନ୍ କଥା କହୁଛି । ସେ ପାଗଳ ହୋଇଯାଇଛି । ସେମାନେ ଗତକାଲି ଆସିଥିଲେ ଏକଥା ମତେ କହିବାକୁ ।"

"କ'ଣ କହୁଛ ? ପାଗଳ ? ବୀଏନ୍ ? ଅସମ୍ଭବ ।" ମୁଁ ଚିତ୍କାର କଲି ।

ଲୋଙ୍ଗ ସମାନ ଶାନ୍ତ ସ୍ୱରରେ କହିଲା, "ଖବର ଦେଲାବାଲା ନିଶ୍ଚିତ ଥିଲା । ବୀଏନ୍ ଗୋଟେ ପାଗଳ ଗାରଦରେ ବନ୍ଦ ଅଛି, ଅପେକ୍ଷା କରିଛି କେହି ଜଣେ ଆସି ତା' ଅବସ୍ଥା ବିଷୟରେ କହିବ । ଯଦି ଏକଥା ସତ ହୋଇଥାଏ, ତାକୁ ସେମାନେ ମନସ୍ତାତ୍ତ୍ୱିକ ହସ୍‌ପିଟାଲକୁ ପଠାଇଦେବେ ।"

"ମୁଁ ଏକଥା ବିଶ୍ୱାସ କରୁନାହିଁ", ମୁଁ କହିଲି । "ଯଦି ତାର କେବେ ପାଗଳ ହେବା କଥା, ସେ ସେତିକିବେଳେ ପାଗଳ ହୋଇଥାନ୍ତା ଯେତେବେଳେ ମୁଁ ତାକୁ ନିଜେ ଦେଖିଥିଲି ଫାନ୍‌ଖେନ୍‌ରେ । ସେତେବେଳେ ସେ ମ୍ୟାଲେରିଆରେ ଆକ୍ରାନ୍ତ ହୋଇ ରୋଗଣା କୁକୁରଟିଏ ପରି ଦେଖାଯାଉଥିଲା ।"

ଲୋଙ୍ଗ ନୀରବ ରହିଲା । ନିଜ ଭାବନାମାନଙ୍କୁ ଏ ଭିତରେ ଲୁଚାଇବାର କଳା ସେ ଶିଖି ନେଇଥିଲା । ହେଲେ ମୋରି ପରି ତାର ଦ୍ୱନ୍ଦ୍ୱ ଥିଲା ନିଶ୍ଚୟ । ଆମେ ଥିଲୁ ବାଲ୍ୟସାଥୀ, ସେଇ ଏକା ପଡ଼ିଆରେ ମଇଁଷି ଚରେଇଛୁ ତୋଟା ଗହଳିରେ । ଆମେ ଏକାଠି କଙ୍କଡ଼ା ପଛରେ ଗୋଡ଼ାଇଛୁ, ପରସ୍ପର ସହିତ କୁସ୍ତି କରିଛୁ, ଏକା ସ୍କୁଲକୁ ଯାଇ ଏକା ଛାତ ତଳେ ପାଠ ପଢ଼ିଛୁ । ଆମର ସେଇ ମାଷ୍ଟର ବାକ୍, ଯାହାଙ୍କୁ ଆମେ ଡାକୁଥିଲୁ 'ବାକ୍ ପାଗଳ', ଆମକୁ ପାଳିକରି ଦଣ୍ଡ ଦେଉଥିଲେ, ବେଶୀ ରାଗିଗଲେ କାନମୋଡ଼ି ଟାଣି ଦେଉଥିଲେ । ଲୋଙ୍ଗ ଥିଲା ମୋ ପଡ଼ୋଶୀ, ବୀଏନ୍ ମୋ ବୟସର, ହେଲେ ମୋ ଠାରୁ ଢେର ଡେଙ୍ଗା । ତା' ଓଜନ ଥିଲା ଶହେ ପଞ୍ଚାବନ ପାଉଣ୍ଡ ଆଉ ସେ ନିଜେ ଚାରିଶହ ବୟାଳିଶ ପାଉଣ୍ଡର ଧାନ କଳେଇ ଗୋଟେ ବାଉଁଶ ବାହୁଙ୍ଗାରେ ଝୁଲେଇ ବୋହି ନେଇପାରୁଥିଲା । ସୈନ୍ୟ ସଂଗ୍ରହ ହେଲାପରେ ଏକାଠି ହେଲା ଦିନ ଆମେ ସେଇ ଏକା ଆନନ୍ଦ ଭୋଗ କରିଛୁ, ଗ୍ରାମକମିଟି ସାମ୍ନା ଚଉତରାକୁ ଉଜ୍ଜ୍ୱଳ କରିଦେଇଥିବା ଲାଲପତାକାକୁ ଲକ୍ଷ୍ୟ କରିଛୁ, କାନ୍ଥରେ ଲଗାଯାଇଥିବା ସ୍ଲୋଗାନଗୁଡ଼ିକୁ ପଢ଼ିଛୁ ।

ଆମ ଦେଶର ନୂତନ ଯୋଦ୍ଧାଗଣ ଅମର ରୁହ !
ତଙ୍ଗତିଏଁର ଯୁବକ ଆମ ପୂର୍ବପୁରୁଷଙ୍କ ପରମ୍ପରା ସୁରକ୍ଷିତ ରଖ !
ଅପ୍ରତିଦ୍ୱନ୍ଦ୍ୱୀ ମାର୍କ୍ସବାଦ, ଲେନିନ୍‌ବାଦ ଅମର ରହୁ !

ଦଳେ ଯୁବ ଡ୍ରମବାଦକ ସକାଳୁ ଖରାବେଳଯାଏଁ ଡ୍ରମ ବଜାଇ ଚାଲିଥିଲେ । ଯୋଦ୍ଧାମାନଙ୍କୁ ସମ୍ମାନିତ କରିବାକୁ ସେମାନେ ଆମ ଗାଁର ସବୁଠାରୁ ସୁନ୍ଦରୀ ଝିଅମାନଙ୍କୁ ପ୍ରଥମ କରି ନିଯୁକ୍ତି ଦେଇଥିଲେ । ଝିଅମାନେ ନିଜ ଗଳା ଚାରିପଟେ ଗୋଲାପି-ନୀଳ ସ୍କାର୍ଫ ପିନ୍ଧିଥିଲେ, ଆଉ ସେମାନେ ମାଇକ୍ ଧଣି ଗାଇଥିଲେ :

"ପ୍ରିୟତମ, ଯାଅ, ନରଖି ଦୁଃଖ ହୃଦୟେ,
ମୁଁ ତୁମକୁ ଭଲପାଏ,
କେବଳ ତୁମକୁ ଭଲପାଏ ।"

ଆମେ ଧାଡ଼ିରେ ଠିଆହୋଇ ସାମ୍ନାକୁ ଚାହିଁଥିଲୁ । ଆମ ପଛରେ, ଆମ ମାଆମାନେ କାନ୍ଦୁଥିଲେ ରୁମାଲରେ ଓଠ, ଆଖି ଚାପି ଯେମିତି କାନ୍ଦ ନଶୁଭିବ । ସେମାନଙ୍କ ଆଖି ଲାଲ ହୋଇ ଫୁଲି ଯାଇଥିଲା । ହେଲେ ସେମାନେ ଜବରଦସ୍ତ କୁରୁଳି ଉଠୁଥିଲେ ସ୍ଥାନୀୟ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ।

"ହଁ, କାକା, ଆମେ ଭାରି ଗର୍ବିତ ଯେ ସେମାନେ ଯାଉଛନ୍ତି ।"

"ହଁ, ମଉସା, ଶପଥ କରୁଛି ।"

ତାପରେ ସେମାନେ ଗୋଟିଏ ସ୍ଲୋଗାନର ପୁନରାବୃତ୍ତି କଲେ ।

'ଲଙ୍ଗଳ ଗୋଟିଏ ହାତେ, ବନ୍ଧୁକ ଅପର ହସ୍ତେ,
ପ୍ରିୟଜନଙ୍କ ଗର୍ବର କାରଣ ଯୁଦ୍ଧକ୍ଷେତ୍ରର
ସୀମାର ଅପର ପ୍ରାନ୍ତେ ।'

ହଁ, ଡଙ୍ଗ୍‌ତିଏଁର ନାରୀଗଣ ଯୁଦ୍ଧର ସମ୍ମାନଜନକ ଥ୍ରୀ ମେରିଟ ପତାକା ପାଇବା ପାଇଁ ସବୁକିଛି ତ୍ୟାଗ କରିପାରିବେ ।

***

ମତେ ଆଠବର୍ଷ ବେଳେ ମୋ ମାଆ ମରିଯାଇଥିଲା । ହେଲେ ଅନ୍ୟମାନଙ୍କୁ ମୁଁ ଦେଖିଛି ରାତିରେ, ଶବ୍ଦ ନକରି ଡିବିରି ଆଲୁଅ ପାଖରେ କାନ୍ଦିବାର । ମୁଁ ମନେରଖିଛି ସେମାନଙ୍କ 'ଆଓଦାଇ'ର ଲୋଟାକୋଟା, ଲୁହଭିଜା କାନି, ସେମାନଙ୍କ ହାତରେ ଥିବା ମଇଳା ରୁମାଲ୍ । ସେମାନଙ୍କ ଫୁଲାଆଖି । ସେମାନଙ୍କର ଟିକିନିଖି ରଙ୍ଗ-ଢଙ୍ଗ ମୁଁ ପ୍ରଖର ଦିବାଲୋକରେ ଦେଖିଛି । ଏସବୁକୁ ମୁଁ ସେତିକିବେଳେ ଖୁବ୍ ପାଖରୁ ଲକ୍ଷ୍ୟ କରିଛି ଯେତେବେଳେ ଆମେ ବଛା ବଛା ଯୁବକମାନେ ଯୌବନର ନିଶାରେ ଆସକ୍ତ, କଳ୍ପନାର ଆଖିରେ ଦେଖୁଥିଲୁ ନିଜକୁ ଗୋଟେ ଯଶସ୍ୱୀ ଭବିଷ୍ୟତ ଆଡ଼କୁ ଲେଫ୍ଟ-ରାଇଟ୍ କରି ଆଗେଇଯିବାର ; ଆମେ ଥିଲୁ ଏକ ଅତି ଆଡ଼ମ୍ବରପୂର୍ଣ୍ଣ ହେବାକୁ ଚେଷ୍ଟା କରୁଥିବା

ଲକ୍ଷ୍ୟର ନବନିର୍ବାଚିତ ସଦସ୍ୟ, ଯେଉଁମାନେ ସେଯାଏଁ କେଉଁଠି ସ୍ଥାପିତ ହୋଇ ପାରିନଥିଲୁ ।

ଏ ସଂଗ୍ରାମ ବିଦେଶୀ ନିର୍ଯାତନା ବିରୁଦ୍ଧରେ ଗୋଟେ ଯୁଦ୍ଧ କେବଳ ନଥିଲା ; ଏହା ମଧ୍ୟ ଥିଲା ପୁନରୁତ୍‌ଥାନ ପାଇଁ ଆମର ସୁଯୋଗ । ଇତିହାସ ଦ୍ୱାରା ବଛା ହୋଇଥିଲା ଭିଏତ୍‌ନାମ : ଯୁଦ୍ଧ ପରେ, ଆମ ଦେଶ ହେବ ମାନବତାର ଅଭୟସ୍ଥଳୀ । ଆମଲୋକେ ଗୋଟେ ଭିନ୍ନ ନାମରେ ଡକା ହେବେ । ଶେଷରେ ଜଗତ ଦୃଷ୍ଟିରେ ଆମେ ମାନ୍ୟତା ପାଇବୁ, ସମ୍ମାନ ଲଭିବୁ, ଅନ୍ୟମାନେ ସମ୍ମାନିତ ଦୃଷ୍ଟିରେ ଦେଖିବେ ଆମକୁ । ଆମେ ଏଥିରେ ବିଶ୍ୱାସ ରଖିଥିଲୁ, ଆଉ ଏଇସବୁ ଦୁର୍ବଳତାଜନିତ ଲୋତକବନ୍ୟାରୁ ମୁହଁ ବୁଲାଇ ନେଇଥିଲୁ ।

ଦଶବର୍ଷ ଏ ଭିତରେ ବିତିଗଲାଣି । ଆମ ଭିତରୁ କେହି ଜଣେ ହେଲେ ଏ ବିଷୟରେ ପଦଟିଏ ଉଚ୍ଚାରଣ କରିନାହୁଁ । ହେଲେ ଆମେ କେହି କିଛି ଭୁଲିନାହୁଁ । ବରଂ ଯୁଦ୍ଧ ଯେତେ ଗାଢ଼ତର ହୋଇଛି, ଆମେ ଯୁଦ୍ଧର ଯେତେ ଭିତରକୁ ପଶି ଯାଇଛୁ, ସେଇ ପ୍ରଥମ ଦିନର ସ୍ମୃତି ସେତେ ଅଧିକ ଆମକୁ ଆକ୍ରାନ୍ତ କରିଛି । ଯେତେ ଯେତେ ଆମେ ଆମର ଜାଣିଶୁଣି ବନାଇଥିବା ଆତଙ୍କଜନକ ବିରାଗ ଦ୍ୱାରା କଷ୍ଟ ପାଉଥିଲୁ ସେତେ ସେତେ ଆମ ମାଆମାନଙ୍କ ଲୁହଧାର ଚେଙ୍କିଦେଲା ପରି ସ୍ମୃତି ହୋଇ ଜଳିଉଠୁଥିଲା । ଯଶ ଲାଭ ପାଇଁ ଆମେ ସବୁ ତ୍ୟାଗ କରିଥିଲୁ । ସେହି ଦୋଷୀ ଭାବନା ହିଁ ଆମକୁ ପରସ୍ପର ସାଥିରେ ସେଇମିତି ନିବିଡ଼ ବନ୍ଧନରେ ବାନ୍ଧି ରଖିଥିଲା ଯେମିତି ପାଣିରେ ଆମ ମଇଁଷି ଗାଧୋଇଦେବାର ସ୍ମୃତି ।

ଲୋଙ୍ଗ୍ କୋମଳ ସ୍ୱରରେ କହିଲା, "ମୁଁ ଯାଇପାରିବିନି । ତୁମେ ଯାଅ ଆଉ ଦେଖ କ'ଣ ସେଠାରେ ହେଉଛି । ମୁଁ ଗୋଟେ ଚିଠି ଲେଖିଛି ଡିଭିଜନ କମାଣ୍ଡର ନୁୟେଭାନ୍ ହାଓକୁ ଆଉ ଗୋଟେ ପଲିଟିକାଲ କମିଶନର ଦୌଁ ଟ୍ରଙ୍ଗ୍ ଲିଏତ୍‌କୁ । ତୁମେ ସେଠାକୁ ଗଲେ ହିଁ ଦେଖିବ ଘଟଣାଟା କ'ଣ ? ଯାହା ଉଚିତ୍ ଭାବିବ ସବୁ କରିବ । ଏତକ ଠିକ୍ କରିଦେଲା ପରେ, କିଛିଦିନ ଛୁଟି ନେଇଯିବାର ସୁଯୋଗ ନେବ । କ୍ୱଙ୍ଗ୍‌ବିନ୍‌ର ପଶ୍ଚିମରୁ ଅତିବେଶୀରେ ଥାନ୍ ହୋଆ ଯାଏଁ ତୁମେ ମଧ୍ୟସ୍ଥ ଏଜେଣ୍ଟମାନଙ୍କୁ ବ୍ୟବହାର କରିପାରିବ । ଥାନ୍‌ରେ ପହଞ୍ଚିଗଲା ପରେ, ଗୋଟେ କାର୍ ସେଠୁ ନେଇଯିବ । ମୁଁ ସବୁକାଗଜ ପ୍ରସ୍ତୁତ କରି ରଖିଛି । ଆସନ୍ତାକାଲି, ମୁଁ ଚାହେଁ, ତୁମେ ତୁମ ଦଳପତି ଦାୟିତ୍ୱ ଖୁଏମକୁ ହସ୍ତାନ୍ତର କରିଦେବ, ସେ ବି ମନ୍ଦ ନୁହେଁ । ମୁଁ ଭାବୁଛି, ତୁମ ଅନୁପସ୍ଥିତିରେ ସେ ଚଳେଇ ନେବ ।"

ମୁଁ ଆଶ୍ଚର୍ଯ୍ୟ ; ସେ ଗୋଟେ ବଡ଼ ଉପକାର କରିଥିଲା । ମୁଁ ଆତ୍ମସମ୍ବରଣ କରିବାକୁ ଚେଷ୍ଟାକଲି ଆଉ ଶାନ୍ତ ସ୍ୱରରେ ଉତ୍ତରଦେଲି, "ବୀଏନ୍ କ୍ୟାମ୍ପରୁ ଆମ ଗାଁ ବହୁତ ଦୂର । ଛୁଟି ନେବାକୁ ମତେ ସମୟ ହେବ ନାହିଁ ।"

"ତୁମେ ଯାଅ, ସମୟ କଥା ମୁଁ ବୁଝିବି । ଯେପର୍ଯ୍ୟନ୍ତ ତୁମେ ଯାଇନାହଁ ଆଉ ମତେ ଛାଡ଼ି ନାହଁ ..."

ମୁଁ ବୋକାଙ୍କ ପରି ହସିଲି, : ଠିକ୍ ଅଛି, ସେମାନେ ସବୁବେଳେ ମତେ କେଉଁ ନା କେଉଁ କ୍ୟାମ୍ପରେ ଲଗାଇ ଦେବେ ।"

ଲୋଙ୍ଗ୍ ହସିଲାଗିଲା । ମୁଁ ଶୁଣିଲି ତା' ବ୍ୟାଗ୍ ଭିତରେ ସେ ଗୋଟେ ଟର୍ଚ୍ଚ ଖୋଜୁଥିଲା ।

ସେନାବାହିନୀରେ ଟର୍ଚ୍ଚ ଗୋଟେ ବିଳାସ – ତାପରେ ସେ ଟର୍ଚ୍ଚ ଜଳାଇଲା ।

"ହେ ଲୋଙ୍ଗ୍ ... ତୁମେ ମତେ ଛୁଟି କାହିଁକି ଦେଉଛ ?" ମୁଁ ପଚାରିଲି ।

"ବୀଏନ୍ ପାଇଁ । ଠିକ୍ ଅଛି । ତୁମ ପାଇଁ ମୁଁ ଏହାର ସୁଯୋଗ ଦେଉଛି ।"

ହଠାତ୍ ସେ ଉଠିପଡ଼ି କ୍ୟାମ୍ପ ଆଡ଼କୁ ମୁହାଁଇଲା । ମୁଁ ନୀରବରେ ତା' ପଛେ ପଛେ ଚାଲିଲି । ଜଙ୍ଗଲ ସୀମାରେ ତା' ସାର୍ଟ ତଳ ଟାଣିଦେଇ ଫୁସ୍‌ଫୁସ୍ ସ୍ୱରରେ ପଚାରିଲି : ଏ ଯୁଦ୍ଧ ... ବହୁତ ଦିନ ଚାଲିବ ଏ ଯୁଦ୍ଧ ... ନା ?"

ଲୋଙ୍ଗ୍ କିଛି କହିଲା ନାହିଁ, ମୁଁ ପୁଣି ତାକୁ ପଚାରିଲି, "ଏଠି କେବଳ ତୁମେ ଆଉ ମୁଁ ଅଛେ । କୁହ, କୁହ ମତେ ।"

ଲୋଙ୍ଗ୍ ଠିଆ ହୋଇଗଲା, ହଲଚଲ ନହୋଇ ପଦେ ବି କଥା ନକହି କେତେ ସମୟ ଯାଏଁ ରହିଗଲା ସେଇମିତି । ତାପରେ ବୁଲିପଡ଼ି ଆଗେଇଚାଲିଲା । ତା ପଛେ ପଛେ ମୁଁ, ଆମେ ଜଙ୍ଗଲ ଭିତରେ ପଶିଲୁ । ପବନରେ ପଚାପତ୍ରର ଗନ୍ଧ, ବେଳୁବେଳ ବେଶୀ ସନ୍ତସନ୍ତିଆ ପରିବେଶ । ରାତି ଆମକୁ ପୂରା ଗିଳି ଦେଇଥିଲା ଯେମିତି ମଝିରେ ମଝିରେ ହଠାତ୍ ଶୁଣାଯାଉଥିଲା ପକ୍ଷୀମାନଙ୍କର ଭଙ୍ଗାଭଙ୍ଗା, ଲକ୍ଷ୍ୟହୀନ ଧ୍ୱନି । ମୁଁ ଚାହୁଁଥିଲି ବଡ଼ପାଟିରେ ତାକୁ ଡାକି ତା' କାନ୍ଧରେ ମୋ ହାତ ଥୋଇଦେବି । କିନ୍ତୁ ନିଜକୁ ରୋକିନେଲି । କେତେ ସମୟ ବିତିଗଲାଣି ଏ ଭିତରେ ; ଆମେ ଆଉ ରହିନାହୁଁ ଛୋଟପିଲା ହୋଇ–ଲଙ୍ଗଳା ଆଉ ସମାନ । ସେ ସମୟ ଅତିକ୍ରାନ୍ତ, ଆମ ସମୟ, ସଂଧ୍ୟାବେଳେ ନଦୀ ଭିତରକୁ ଡେଇଁବାର ସମୟ ଆଉ ପହଁରା, ପାଣି ଛଟାଛଟି ସାନସାନ ଝିଅମାନଙ୍କ ସାଥିରେ ।

ମତେ ଉଣେଇଶ ଦିନ ଲାଗିଲା ପ୍ରତିରକ୍ଷା ସୀମା ଅତିକ୍ରମ କରିବା ପାଇଁ । ଯେଉଁଦିନ କୋଡ଼ିଏ ଦିନ, ସେଦିନ ମଧ୍ୟସ୍ଥ ଏଜେଣ୍ଟ ମତେ ମୋ ବାଟରେ କାମ କରିବାକୁ ଛାଡ଼ିଦେଇ ଚାଲିଗଲା । "ଆମେ ଏଠାରେ ଆସି ପହଞ୍ଚିଗଲେ । ଏଇ ହେଉଛି ସେ ଉପତ୍ୟକା ଅଞ୍ଚଳ, ଏଇଠାରୁ ତୁମେ ଏକୁଟିଆ ଯିବ । ମତେ ଶୀଘ୍ର କ୍ୟାମ୍ପକୁ ଫେରିବାକୁ ହେବ ; ତୁମର ଯାହା ଦରକାର ଏଇ ସ୍ଥାନୀୟ ଲୋକଙ୍କ ଦ୍ୱାରା କରାଇନେବ । ମନସ୍ତାତ୍ତ୍ୱିକ ଯୁଦ୍ଧ କାର୍ଯ୍ୟକ୍ରମର ଗୋଟେ ପ୍ରତିନିଧି ଦଳ ମୋତେ ଆଜି ଅପେକ୍ଷା କରିଥିବେ । ସେମାନଙ୍କୁ

ବାଟ ଦେଖାଇ ମୋତେ ହିଁ ପାର୍ବତ୍ୟ-ଶିବିରକୁ ନେଇଯିବାକୁ ହେବ । ଏଠାରୁ କେ-ଢୋନକୁ ରାସ୍ତା ବହୁତ ବିପଦଶଙ୍କୁଳ । ଏଇ ମାନଚିତ୍ରଟି ରଖ ।"

ସେ ତା' ପକେଟ ଅଣ୍ଡାଳି ବହୁ କଷ୍ଟରେ ଖଣ୍ଡେ ଲୋଚାକୋଚା କାଗଜ କାଢ଼ିଲା, ଏହା ଥିଲା ଗୋଟେ ଖାଲି ସିଗାରେଟ ଖୋଳ ଯାହା ଉପରେ ଥିଲା କେତେଗୁଡ଼େ ଦାଗ ଆଉ ଟିକି ଟିକି ଅକ୍ଷରରେ କିଛି ଲେଖା ।

"ତୁମ ସାହାଯ୍ୟ ପାଇଁ ଧନ୍ୟବାଦ । ହୋଇପାରେ, ଆଉଥରେ କେବେ ପୁଣି ଦେଖା ହୋଇଯିବ ।"

"ନିଶ୍ଚୟ । ଫେରିଲାବେଳକୁ ମୁଁ ତୁମକୁ ଏଇଠାରୁ ନେଇଯିବି । ବେଶ ଟାଣ ମଞ୍ଜି ମୋର, ଏତେ ସହଜରେ ମରୁନି ମୁଁ । ତିନିଶହ ସତର ବୋମାମାଡ଼ରୁ ଏ ଭିତରେ ବର୍ତ୍ତିଯାଇଛି ।"

ମୋ ବ୍ୟାଗ୍‌ରୁ ଗୋଟେ ମାଂସଟିଣ ବାହାର କଲି । "ଏଇ ଗୋଟିକ ଶେଷକୁ ରହିଯାଇଛି । ତୁମେ ଏଇଟି ନିଅ କମ୍ରେଡ୍ ।"

ମଧ୍ୟସ୍ଥ ଏଜେଣ୍ଟ ଏହାକୁ ଗୋଟେ ମୂଲ୍ୟବାନ ସୂକ୍ଷ୍ମ କଳାକୃତି ରୂପେ ନିରୀକ୍ଷଣ କଲା ।

"ଏହାତ ଗୋଟେ ସାଧାରଣ ସୈନିକ ପାଇଁ ପ୍ରକୃତ ବିଳାସ । ବିଦାୟ କମ୍ରେଡ୍ ।"

ସେ ଟିଣକୁ ନିଜ ଅଖାବ୍ୟାଗ୍‌ରେ ପୂରାଇ ବୁଲିପଡ଼ିଲା । ତା'ର ଥିଲା ଗୋଟେ ଚେପଟା ନାକ ଆଉ ଫୁଲା ଫୁଲା ଲାଲ ଆଖି, ଏମିତି ଗୋଟେ ମୁହଁ ... ଯାହାକୁ କହନ୍ତି ଦୁର୍ଭାଗ୍ୟକୁ ଡାକିଆଣିବା ମୁହଁ । ତା' ଚେହେରାରେ କ୍ରୂର, କୁଟିଳ ପରି କିଛି ଥିଲା । ତେବେ ସେ ଥିଲା କେବଳ ଗୋଟିଏ ବିଶ୍ୱସ୍ତ ମଧ୍ୟସ୍ଥ ଦଲାଲ, ବାହାରକୁ ଭଦ୍ର, ରୁଚିସମ୍ପନ୍ନ ମଣିଷଟିଏ । ଈଶ୍ୱର ତାକୁ କରୁଣା କରନ୍ତୁ । ଯାହା ହେଲେ ବି ନିଜ ଜୀବନରେ ସେ ତିନିଶହ ସତରଟି ବୋମାମାଡ଼ ସହିଛି ।

ସୂର୍ଯ୍ୟ ଏବେ ଜଳୁଥିଲେ ଅଗ୍ନିକଣାର ଗୋଟିଏ ବଲ୍‌ବ ପରି । ମଧ୍ୟସ୍ଥ ତ ଜଙ୍ଗଲ ଭିତରେ ଅନ୍ତର୍ଦ୍ଧାନ ହୋଇସାରିଥିଲା । ମୁଁ ଆଗେଇଗଲି ଗୋଟେ ସରୁ ଲମ୍ବା ଘାସ ଧାଡ଼ି ଆଡ଼କୁ, ଅସୀମ ସବୁଜିମା ଓ ଆଲୋକର ଗୋଟେ ଖୋଲାଜାଗା । ମୁଁ ନିଜକୁ ଆଗେଇଯିବାକୁ ଦେଲି ଏପରି ଏକ ଅନୁଭବ ଆଡ଼କୁ ଯାହା ଆଉ ମୋର ସ୍ମରଣରେ ନାହିଁ । ଶେଷରେ ମୁଁ ମୁକ୍ତଦେଲି ଅରଣ୍ୟର ଅଣନିଃଶ୍ୱାସୀ ବାୟୁମଣ୍ଡଳରୁ, ଏହାର ଘଞ୍ଚ ବୃକ୍ଷରାଜିର ଶ୍ୱାସରୋଧୀ ଛାୟାରୁ, ଏହାର ବିଷାକ୍ତ ବାଷ୍ପରୁ ଯାହା ମୋ ମେରୁଦଣ୍ଡକୁ ବାରମ୍ବାର ଥରାଇ ଦେଉଥିଲା ।

ଉପରେ ମୋର ଥିଲା, ବନ୍ଧନହୀନ ନୀଳ ଆକାଶ । ମେଘହୀନ । ଆଖି ପାଇଲାଯାଏଁ ଲମ୍ବିଥିଲା ଘାସର ଗାଲିଚା । ହେ ଧରିତ୍ରୀ, ହେ ସବୁଜିମା, ହେ ଆଲୋକ । ଗୋଟାଏ ଚିତ୍କାର ଭଳି ପୁରୁଣା ସ୍କୁଲପାଠ ମୋର ମନେପଡ଼ିଗଲା ।

ପାଗଳବାକ୍, ଆମ ଶିକ୍ଷକ, ମୋ କାନ ମୋଡୁଛନ୍ତି । "ଛୋଟା ବଦ୍‌ମାସ, କେଉଁଠାରେ ଆମେ ଉତ୍ତେଜନା ପ୍ରକାଶକ ଅବ୍ୟୟ ଶବ୍ଦ ବ୍ୟବହାର କରେ ? ହରି ହେ, କି ଶୀତଳ ଏ ପବନ, କ୍ଷୀଣ ଆଶା ହିଁ ଚନ୍ଦ୍ରମା । ବିଷାଦମୟ, ପରିତ୍ୟକ୍ତ, ମୋ ପ୍ରେମ ଘୂରିବୁଲେ ଏକ ଅଜଣା ଭୂମିରେ, ନିମ୍ନଗାମୀ ପଥଗୁଡ଼ିକ ଧୂଳି ଆଉ ଝଡ଼ ଦ୍ୱାରା ବିଭକ୍ତ । ତାହା ଛାତ୍ରମାନେ, ତାହାହିଁ ମାକ୍‌ଡୁୟେତ୍‌ଙ୍କ ନାଟକର ସବୁଠାରୁ ଉତ୍କୃଷ୍ଟ ପଙ୍‌କ୍ତି । ଘୋଷି ପକାଅ ଏହାକୁ । ଆଉ ଗୋଟେ ଉଦାହରଣ ଏଠି : "ହେ ଭିଏତ୍‌ନାମ, ସୁନ୍ଦର ଦେଶ ମୋର, ତୁମେ ଚାରିହଜାର ବର୍ଷର ସଂସ୍କୃତିରେ ସମୃଦ୍ଧ, ତୁମେ ଅପେକ୍ଷାକର ଆମ କୁଶଳୀ ହାତକୁ ...' ଆମେ ପଢୁଥିବା ପାଠର ତାହାହିଁ ପ୍ରଥମ ବାକ୍ୟ : "ଭିଏତନାମ, ମୋର ଦେଶ, ବୁଝିଲ ? ନା, କେବେ ବି ମୁଁ ତୁମକୁ ଆଉଥରେ ଅସଫଳ ହେବାକୁ ଦେବି ନାହିଁ । ତୁମ ମାଆମାନେ ପୁଣିଥରେ ହୁଏତ କାନ୍ଦିବେ । ଠିକ୍ ଅଛି, ଗୋଟେ କଥା, ନିଜ ନିଜ ବସିବା ଜାଗାକୁ ଫେରିଯାଅ । ଆଉ ସେଇ ପରିଚ୍ଛେଦଟିକୁ ଉତ୍ତେଜନା ପ୍ରକାଶକ ଅବ୍ୟୟ ଶବ୍ଦ ସହ ପଢ଼ ... ଆଉ ଘୋଷ ।"

ମୁଁ ସେଇଠି ମାଟି ଉପରେ ମୁହଁ ତଳକୁ କରି ଶୋଇପଡ଼ିଲି । ହଁ ସାର୍, ଆଜି ମୁଁ ମୋ ପାଠ କରି ଦେଇଛି ... ଓଃ କି ସୁଖ, ସୁଖ ! କୁହୁଡ଼ି ଏ ଭିତରେ ମୋ ଲୁଗାପଟା ଓଦା କରିଦେଲାଣି । ଘାସର ମୁନ ମୋ ଦେହ, ପାଦ, ଗୋଡ଼ରେ ଫୋଡ଼ି ହୋଇଯାଉଛି । ଜଳନ୍ତା ସୂର୍ଯ୍ୟ ପୋଡ଼ିଦେଇଛି ମୋ ଖପୁରି, ମୋ ପିଠି, ମୋ ବେକ । ଗୋଟେ ମଧୁର ଉଷ୍ମତା ମୋ ମୁଣ୍ଡ, ଦେହରେ ଚରିଗଲା, ଯେମିତି ଲକ୍ଷ ଲକ୍ଷ ଆଲୋକ କଣା ମତେ ଛୁଇଁଯାଉଥିଲା । । ମୁଁ ଓଲଟି ପଡ଼ିଲି । ସୂର୍ଯ୍ୟତାପରେ ମୋ ହଳଦିଆ ଚମ ନାଲି ପଡ଼ିଆସୁଥିଲା । ଏବେ ବି ବଞ୍ଚିରହିବାର ଆନନ୍ଦ ! ନାଲି ଆକାଶ ମୋ ବନ୍ଦ ଆଖିପତା ଭେଦି ଚକ୍‌ଚକ୍ କରୁଥିଲା । ମୋ ଗାଲ, ବେକ, ଛାତି, ବାହୁ ସବୁଆଡ଼େ ଧୀରେ ଉଷୁମ ହୋଇଆସିଲା । ସୂର୍ଯ୍ୟ ଯେପରି ଗୋଟେ ଲୁଆର ପରି ମୋ ଉପରକୁ ମାଡ଼ିଆସିଲେ । କେତେବେଳେ ମୁଁ ସେଇମିତି ରହିଲି, ଟିକିଏ ବି ହଲଚଲ ନହୋଇ, ନଶୋଇ, ଗୋଟେ ପ୍ରକାର ଅର୍ଦ୍ଧଚେତନ ଅବସ୍ଥାରେ ଭାସିଭାସି । କେତେ ସ୍ମୃତି ମୋ ଢଳକା ଆଖିପତାତଳେ ଉଠିଆସୁଥାଏ, ଆଲୋକର ଗୋଟେ ସରୁ ଲମ୍ବା ବର୍ଚ୍ଛା ଯେମିତି ତାଙ୍କୁ ବିଦ୍ଧ କରୁଥିଲା, କାଚର ଗୋଟେ ଝଲମଲ ସୂତା ପରି ।

ମୁଁ କେବେବି ଜାଣିନଥିଲି ସୁଖ କ'ଣ । ତାହେଲେ ଏଇ ହେଉଛି ସୁଖ, ଏଇ ମୁହୂର୍ତ୍ତ ! ମୁଁ କେବେ ମୁକ୍ତି କ'ଣ ଜାଣିନଥିଲି । ହୋଇପାରେ ଏଇ ଅନୁଭବ ହିଁ ମୁକ୍ତି । ଠିକ୍ ଏଇ ମୁହୂର୍ତ୍ତଟି । କିଏ ଏହାକୁ ବୁଝିବ ? ଶବ୍ଦ, ଶବ୍ଦମାନେ ତ ସାପପରି ଖସଡ଼ା । ତୁମେ ତାଙ୍କୁ ଧରିପକେଇଛ ବୋଲି ଭାବିଲାବେଳକୁ, ସେମାନେ ହାତରୁ ଖସିଯାଇ ପଙ୍କରେ ପଶିଯାଇଥାନ୍ତି । ହେଲେ ଏ ଘାସପଡ଼ିଆ, ବ୍ଲେଡ୍ ପରି ତୀକ୍ଷ୍ଣ ମୋ ପାଖରେ,

ମୋ ମୁଣ୍ଡ ଉପରର ଏ ଆକାଶ, ଏହାହିଁ ତ ବାସ୍ତବତା । ମୁଁ ଖୁସି ଥିଲି ।

ସେଇମିତି ଲମ୍ବା ହୋଇ ଆହୁରି କେତେ ସମୟ ମୁଁ ରହିଲି । ମୋ ତଳେ ଭୂମି ଏବେ ତାତି ଆସୁଥିଲା ; କୁହୁଡ଼ି ମିଳେଇ ଯାଇଥିଲା ଆଉ ଘାସ ଗାଲିଚା ଆଉଟିକେ ଅଧିକ ସବୁଜ ରଙ୍ଗ ଦିଶୁଥିଲା । ଗୋଟେ ବ୍ୟୋମଯାନର ଘୁଁ ଘୁଁ ଧ୍ୱନି ଉପରୁ ଶୁଭିଲା । ମୋର ଖାତିର ନଥିଲା । "କାହିଁକି ଲୁଚିଯିବାକୁ ଦୌଡ଼ିବି ? ଗୁଳି ମଣିଷଙ୍କୁ ଏଡ଼ାଇଯାଏ, କେହି ମଣିଷ କେବେ ଗୁଳିକୁ ଏଡ଼ାଇପାରେ ନାହିଁ ।"

ମୁଁ ଠିଆହେଲି ଆଉ ଘାସଗାଲିଚାକୁ ଦେଖିଲି । ଏ ଭିତରେ ପ୍ରାୟ ଦଶବର୍ଷ ବିତିଗଲାଣି–ଏଭଳି ସୁନ୍ଦରତାକୁ ଦେଖିବାର । କେଉଁ ଅଲୌକିକ ଶକ୍ତି, ଏତେ ବୋମାମାଡ଼ ସତ୍ତ୍ୱେ ଏ ସବୁଜ ଖଣ୍ଡଟିକୁ ବଞ୍ଚାଇ ରଖିଛି ? ଏହା ଥିଲା ଏକ ଅବାସ୍ତବ ସୌନ୍ଦର୍ଯ୍ୟ, ଯୁଦ୍ଧର ଅଙ୍କାବଙ୍କା, ଖଣ୍ଡିଆଖାବରା ପଥଧାରରେ ଫିଙ୍ଗା ହୋଇଥିବା ଗୋଟେ ରଙ୍ଗ ବଦଳିଯାଇଥିବା ରେଶମ ଫିତା ପରି ।

ଅନେକ ଯୁଦ୍ଧ ବିମାନ ଗଗନରେ ପଇଁତରା ମାରୁଥିଲେ । ଉଚ୍ଚା ଘାସ ଭିତରେ ମୁଁ ପୋତିହୋଇ ପଡ଼ିରହିଲି । ଘାସ ମତେ ସୁରକ୍ଷିତ ରଖିଥିଲା ; ଅତିକମ୍‌ରେ ଏହାର ଶାଗୁଆ କୋମଳପଣ ମୋ ଆତ୍ମାକୁ ଶୀତଳ କରିଦେଲା । ବିମାନଗୁଡ଼ିକ ଦକ୍ଷିଣ ପଶ୍ଚିମ ଆଡ଼କୁ ଘୁମ୍‌ଘାମ୍ ହୋଇ ଉଡ଼ିଯାଉଥିଲେ, ଆହୁରି ଝଲମଲ ହୋଇ ସୂର୍ଯ୍ୟାଲୋକ ତଳେ । ବର୍ଷା ହେଲା ପରି ଗୁଡ଼ାଏ ବୋମା ତଳ ଆଡ଼କୁ ଫିଙ୍ଗି ହୋଇଆସିଲା, ଶାନ୍ତ ଭାବରେ, ଧୀରେ । ଭୂଇଁଆଡ଼କୁ ଖସିଆସିଲାବେଳକୁ, ସେସବୁ ଉଈର ଗୋଟେ ମେଘ ପରି ଦିଶୁଥିଲା, ଯେପରି କେହି ସେମାନଙ୍କ ଡେଣାମାନ କାଟି ଉଡ଼େଇ ଦେଇଥିଲା ।

ଏହି ବିଧ୍ୱଂସକାରୀ କାର୍ଯ୍ୟ ପ୍ରାୟ ଅଧଘଣ୍ଟା ଧରି ଚାଲିଲା । ମୁଁ ସେମିତି ଉଚ୍ଚ ତୃଣଗହଳି ଭିତରେ ପଡ଼ିରହିଥାଏ । ତାପରେ ପାହାଡ଼, ଜଙ୍ଗଲ ସବୁ ନୀରବତା ଭିତରେ ବୁଡ଼ିଗଲା । ସୂର୍ଯ୍ୟ ଜଳୁଥାନ୍ତି ନିଜର ଶୀର୍ଷବିନ୍ଦୁରେ । ମୋ ଚାରିପଟର ଭୂମି ଗରମ ହୋଇ ଗୋଟେ ମୋଟା, ବାମ୍ଫୁଆ ଧାସ ଉଠୁଥାଏ । ମୁଣି ଖୋଲି ଦି'ଢ଼ୋକ ପାଣି ପିଇଲି, ଶୁଖିଲା ଖାଦ୍ୟ ଯାହା ଥିଲା ଦିଟା ପାଟିରେ ପକେଇଲି ଆଉ ବାହାରି ଆସିଲି ସଡ଼କ ଉପରକୁ । ତୃଣମୟ ବିଶାଳ ଅଞ୍ଚଳ ମୋ କଳ୍ପନାଠାରୁ ଢେର ବିସ୍ତୃତ ଥିଲା । ତୃଣର ସେହି ସାଗର ଭିତରୁ କଷ୍ଟକରି ମୋତେ ବାହାରିବାକୁ ପଡ଼ିଲା । ମୁହଁସଂଜବେଳକୁ ମୁଁ ଆସି ଯେଉଁ ପାଦଚଲା ରାସ୍ତାରେ ପହଞ୍ଚିଲି, ସେଠାରେ ଲେଖାହୋଇଥିଲା ଜାତୀୟ ରାଜପଥ–୨୨ । ସେଠାରୁ ପ୍ରାୟ ତିନିଶହ ଗଜ ଦୂରରେ ତଳକୁ, ଦେଖିଲି ଗୋଟିଏ ବୋର୍ଡ଼ରେ ଲେଖାଥିଲା 'ଆଶ୍ରୟ' । ହାତରେ ମାନଚିତ୍ର ଧରି ମୁଁ ଚାଲିଲି ସେଆଡ଼କୁ । କେଇପାଦ ପରେ, ପାଦଚଲା ପଥଟି ଚଉଡ଼ା ହୋଇ ଗୋଟେ କାଠ ଆଉ ଟିଣଘେରା ଅଗଣାରେ ମିଶି ଯାଇଥିଲା । ଅଗଣା ପଛପଟକୁ ଥିଲା ଛୋଟ ପଥର ଶିଡ଼ିଟିଏ, ଯାହା

ପଥର ତିଆରି ଆଶ୍ରୟସ୍ଥଳକୁ ଯାଇଥିଲା । ମୋ ହାତକୁ କାହାଳି ପରି ପାଟିରେ ଚାପି ମୁଁ ଚିତ୍କାର କଲି, "ହେ, କିଏ ଅଛ ଏଠି ?"

ଜଙ୍ଗଲର ସେଇ ସ୍ଥିର ପରିବେଶରେ ମୋ ସ୍ୱର ପଥର ଦେହରେ ବାଜି ପ୍ରତିଧ୍ୱନିତ ହୋଇ ଫେରିଆସିଲା । ସଙ୍ଗେ ସଙ୍ଗେ ଆଉ ଗୋଟେ ସ୍ୱର ଜବାବ ଦେଲା, "ଗୋଟେ ମିନିଟ୍ ରୁହ, ଯାଉଛି ... ।"

"କି ଭାଗ୍ୟ", ଭାବିଲି ମୁଁ । ଟୋପି କାଢ଼ି, ରୁମାଲରେ ମୁହଁ ପୋଛି ଅପେକ୍ଷା କଲି । ଦଶମିନିଟ୍ ବିତିଗଲା । ତାପରେ ଶୁଣିଲି ଓଜନିଆ ପାଦ ଶବ୍ଦ । ଗୋଟେ ବିରାଟ ମୋଟାଲୋକ ପ୍ରବେଶ କଲା । ରାତି ଆଗରୁ ହୋଇସାରିଥିଲା, ଲୋକଟିର ମୁହଁ ଭଲକରି ଦେଖିପାରୁନଥିଲି । ମୁଁ ତାକୁ କହିଲି, କମ୍ରେଡ୍ ସେନାବାହିନୀର ତୃତୀୟ ସାମ୍ମୁଖ୍ୟ ଦଳରୁ ମୁଁ ଆସିଛି । ରାତିକ ପାଇଁ ମୋତେ ଆଶ୍ରୟ ଦେଇପାରିବ ? ମୁଁ ଭୋର୍ ଭୋର୍ ଚାଲିଯିବି ।"

ଛାୟାଟି ଏକପ୍ରକାର ଚାପାସ୍ୱରରେ କହିଲା, "ତୁମେ ସେନାବାହିନୀରୁ ପଳେଇ ଆସିଥାଇପାର । ତୁମ କାଗଜପତ୍ର ଦେଖାଇଲ ।"

ମୁଁ ହସି ହସି କହିଲି, "ନା, ମୁଁ ପଳାତକ ନୁହେଁ । ମୁଁ ଗୋଟେ କାମନେଇ କେ–ଛୋନ୍‌କୁ ଆସିଛି । ମୋ କାଗଜପତ୍ର ଦେଖ ।"

ଛାୟାଟି ଗୋଟେ ଆଲୁଅ ଜଳାଇଲା । ସେଇ ଆଲୁଅରେ ମୋ କାଗଜ, ପରିଚୟ ପତ୍ର ଦେଖିଲା । ତାପରେ ମୁଁ ଦେଖିଲି ତା ମୁହଁ : ଚାରିକୋଣିଆ ଗାଲରେ ନାଲି ନାଲି ବ୍ରଣ, ମୋଟା, ପୋଡ଼ାଳିଆ ଓଠ ଉପରକୁ ତେଢ଼ାମେଢ଼ା ଦାନ୍ତ ମାଡ଼ିଆସିଥାଏ । ଆଲୁଅ ହଠାତ୍ ଲିଭିଗଲା । ସେଇ ଚାପାସ୍ୱର କହିଲା, "ମୋ ପଛେ ପଛେ ଆସ ।"

"ସ୍ତ୍ରୀଲୋକ, ଇଏ ଗୋଟେ ସ୍ତ୍ରୀଲୋକ !" ମୁଁ ବୋଧେ ବଡ଼ପାଟିରେ ଏତକ କହିପକାଇଥିଲି । ସେ ମୋ ଠାରୁ ଦୂରକୁ ବୁଲିପଡ଼ି ମତେ ଆଶ୍ରୟ ଜାଗା ଆଡ଼କୁ ନେଇଗଲା । ସେଠାରେ ବାଟେରୀଚାଳିତ ବତୀଟିଏ ଜଳୁଥିଲା ଆଉ ମଝିରେ ମଝିରେ ଜୀର୍ଣ୍ଣ ପାହାଡ଼ଗୁଡ଼ିକୁ ଆଲୋକିତ କରିଦେଉଥିଲା ।

"ସାବଧାନ, ସେଦିନ ଲାଓକାଇରୁ ଆସିଥିବା ଲୋକଟି ପଡ଼ି ନିଜର ଚାରୋଟି ଦାନ୍ତ ଭାଙ୍ଗିଛି ।"

"ଧନ୍ୟବାଦ, କମ୍ରେଡ୍", ମୁଁ ଆସ୍ତେ କହିଲି ।

"ଏଇଠି, ଗୋଟେ ମିନିଟ୍ ଅପେକ୍ଷା କର । ଆଶ୍ଚର୍ଯ୍ୟ, ଏଇଠି କେଉଁଠି ମୋ ଲାଇଟରଟି ଛାଡ଼ିଯାଇଛି । ଓଃ, ଏଇଠି ଅଛି ।"

ସେ ଲାଇଟର ଜାଳିଲା, ତାପରେ ଆଉ ଗୋଟେ ଲ୍ୟାମ୍ପ ଲଗେଇଲା ; ବତୀରୁ ବାହାରୁଥିବା ମୋଟା ଧୂଆଁ ଦେଖି ମୁଁ ଅନୁମାନ କଲି ଏହା ବୋଧେ ଡିଜେଲ ଆଉ ଲୁଣ

ମିଶାମିଶି ହୋଇ ଜଳୁଥିଲା । ମୁଁ ଚାରିପଟକୁ ଅନାଇଲି । ସେଠାରେ ଗୋଟେ ବିଛଣା ପଡ଼ିଥିଲା, ବଡ଼ ବଡ଼ ଗୋଳାବାରୁଦ ପେଟିରେ କାଗଜର ବିଛଣା, ତା'ଉପରେ ଗୋଟେ ଫୁଲପକା ଚାଦର । କାନ୍ଥକୁ ଲାଗିରହିଥିଲା ଗୋଟେ ଟିଣ ବେସିନ୍ ଆଉ ଗୋଟେ ଛୋଟ ଦର୍ପଣ, ଦର୍ପଣ ଚାରିପଟେ ରଙ୍ଗରଙ୍ଗର କାଗଜଫୁଲ ଆଉ ପାର୍ସୀ ଗାୟକ ଓ ଚଳଚ୍ଚିତ୍ର ଅଭିନେତାଙ୍କର କେତୋଟି ଫଟୋ ।

"ଏତେ ଆଲୁଅ ଏଠାରେ । ଯୁଦ୍ଧବିମାନ ଆମକୁ ଠାବ କରିଦେବ ନାହିଁ ?"

"ଅସମ୍ଭବ । ଆମେ ଏଠାରେ ସମ୍ପୂର୍ଣ୍ଣ ନିରାପଦ । ଆଉ ଡିଜେଲ ବାବଦରେ ତୁମେ ଚିନ୍ତା କରନାହିଁ । ଟ୍ରକ୍ ଡ୍ରାଇଭରମାନଙ୍କଠାରୁ ମୁଁ ନିୟମିତ ସପ୍ଲାଇ ପାଏ ।"

ସେ ଘର ପଛପଟେ କୁଆଡ଼େ ଉଭେଇଗଲା ଆଉ ସାଙ୍ଗେ ସାଙ୍ଗେ କେତେଗୁଡ଼େ ଖାଲି ବାରୁଦପେଟି ଧରି ଫେରିଆସିଲା ।

"ତୁମେ ଏଠାରେ କ'ଣ କର, କମ୍ରେଡ୍ ?" ମୁଁ ପଚାରିଲି ।

"ତୁମ ବିଛଣା । ଏଇ ନିଅ । ଖାଲି ପେଟି । ଯେତେ ଚାହିଁବ ସେତେ ଆମର ଅଛି ।"

"ଧନ୍ୟବାଦ ; ହେଲେ ମୋ ବ୍ୟାଗ୍‌ରେ ଅଛି କାନ୍‌ଭାସ-ଦୋଳି ବିଛଣା ।"

"ବିଛଣା ? ତୁମେ ତାହେଲେ ତ ଜଙ୍ଗଲ ମଝିରେ ଯାଇ ଶୋଇପାରିବ । ଯେତେବେଳଯାଏଁ ତୁମେ ଏଠାରେ ଅଛ, ଗୋଟେ କାନ୍‌ଭାସ ଦୋଳି ବିଛଣାରେ ଶୋଇବା ପିଲାଳିଆମୀ ।" ତାପରେ ସେ ପେଟି ଖୋଲି ସଜାସଜି କରି ବିଛଣା ବନେଇଦେଲା, ଶିବିର ତମ୍ବୁର କପଡ଼ାଟିଏ ବାହାରକରି କହିଲା, "ଏଠାରେ ତୁମେ ଶୋଇବାର ବ୍ୟବସ୍ଥା କରୁଥାଅ, ମୁଁ ଗୁମ୍ଫାକୁ ଯାଉଛି କିଛି କାଠ ଆଣିବି ।"

"କେଉଁ ଗୁମ୍ଫା ?"

"ଆଶ୍ରୟ ପଛପଟେ ଅଛି । ଆମ ଷ୍ଟୋରଘର ସେଇଟା ।" ସେ ବାହାରିଗଲା । ତାର ବିରାଟ, ଭାଲୁ ପ୍ରାୟ ଦେହଟି ଅନ୍ଧାରରେ ମିଳେଇଗଲା । ତମ୍ବୁ କପଡ଼ାକୁ ମୁଁ ଠିକ୍ ବିଛେଇଲାବେଳକୁ ତାର କାଠକଟା ଶବ୍ଦ ମୋ କାନରେ ପଡ଼ିଲା । ମୋ କାନ୍‌ଭାସ ବ୍ୟାଗ୍ ଆଉ ବନ୍ଧୁକଟିକୁ କୋଠରିର ଗୋଟେ କୋଣରେ ରଖିଦେଲି, ଆଉ ବସିପଡ଼ିଲି ବିଛଣା ଉପରେ, କ୍ଲାନ୍ତ ଗୋଡ଼ ଦୁଇଟିକୁ ଲମ୍ବାଇଦେଲି । ଆଲୋକର ଉଷ୍ଣ ଜିଭଟିଏ ଯେପରି ଚାଟିନେଲା ମୋ ପାଦରୁ ଜଙ୍ଘଯାଏଁ ।

ମାଇକିନାଟି ଫେରିଆସିଲା, ଦୁଇ ବାହୁରେ କାଠର ବେଶ ବଡ଼ ବିଡ଼ାଟିଏ । ସେ ଉହ୍ନେଇ ପାଖରେ ଆଣ୍ଠେଇପଡ଼ିଲା ଆଉ ଅଗ୍ନିଶିଖା ତା' ମୁହଁକୁ ନିଷ୍ଠୁର ଭାବରେ ଆଲୋକିତ କରିଚାଲିଲା । ମୁଁ କମ୍ପିଗଲି ; ସେ ଥିଲା ଭୟଙ୍କର କୁତ୍ସିତ । ମତେ ସେ ଚାହିଁଲା : "ମୁଁ ଭାତ ବସେଇ ଦେଉଛି, ତୁମେ ଏଠାରେ ବସି ଲକ୍ଷ୍ୟ ରଖିବ । ମୁଁ ନଦୀରେ ଚଟ୍‌କିନା ଗାଧୋଇପଡ଼ି ଆସୁଛି ।"

ବାହାରର ଘନ ଅନ୍ଧାରକୁ ମୁଁ ଅନେଇଲି, "ଏତେବେଳେ ?"

"ମୁଁ ଏଥିରେ ଅଭ୍ୟସ୍ତ, ଯେମିତି ହେଲେ ଗାଧୋଇବାକୁ ହେବ ।"

ଠିକ୍ ସେତିକିବେଳେ ମୋ ନଜର ପଡ଼ିଲା ତା' ୟୁନିଫର୍ମରେ କଳା କାଦୁଅ ପରି କିଛି ଲାଗିଥିଲା ; ତା ଦେହରୁ ବାହାରୁଥିଲା ଗୋଟେ ପ୍ରକାର ବାନ୍ତି ମାଡ଼ିଲା ପରି ଝାଲୁଆ ଗନ୍ଧ ।

"ତୁମ ଲୁଗାରେ କ'ଣ ଲାଗିଛି ? ରକ୍ତ ?"

"ହଁ, ଯେ ରକ୍ତ । ଖରାବେଳକୁ ତିନୋଟି ମୃତଦେହ ସାଥିରେ ହାତକୁ ହାତ ଲଗାଇ ମୁଁ କୁସ୍ତି କରିଛି ।

"କ'ଣ କହୁଛ ?"

ସେ ଓଠଚାପି ଦୁର୍ବଳ ହସଟିଏ ହସିଲା । ତା ନାକ କୁଞ୍ଚିହୋଇ ଆସିଲା କଥା କହିଲା ବେଳକୁ : "ଏଥିରେ ବୁଝିବାର କ'ଣ ଅଛି ? ମୁଁ ଏନ୍ ୨୨ର ମଶାଣି ଦାୟିତ୍ୱରେ ଅଛି । ମୋ କାମ ହେଲା ଏ ଅଞ୍ଚଳର ଶବଗୁଡ଼ିକୁ ଏକାଠି କରିବା, ଯେତେସବୁ ଅଚିହ୍ନା ଶବ ପାହାଡ଼ ପଛପଟେ ପଡ଼ିଥାଏ । ସେମାନେ ସମସ୍ତେ ଯୋଦ୍ଧା । ଠିକ୍ ଏଇ ତିନିଜଣଙ୍କ ପରି ଯେଉଁମାନେ ଆଜି ସକାଳର ବୋମାବର୍ଷାରେ ନିହତ ହୋଇଥିଲେ । ମୁଁ ଏକୁଟିଆ ସେମାନଙ୍କୁ କବର ଦେଇଛି । ଏଇ ଆଶ୍ରୟର ପଛପଟେ ଯେଉଁ ଗୁମ୍ଫାଟି ଅଛି ସେଇଟି ସେମାନଙ୍କ ଜିନିଷପତ୍ରର ଭଣ୍ଡାରଘର । ସେନାବାହିନୀ ଆସିଲେ ସେମାନଙ୍କୁ ଏ ଜିନିଷପତ୍ର ମୁଁ ହସ୍ତାନ୍ତର କରିଦିଏ ।"

ସେ ବୁଲିପଡ଼ି ଚୁଲି ପାଖରେ ଥିବା ଗୋଟେ ଆଲୁମିନିୟମ୍ ଡେକ୍‌ଚି କାଢ଼ିଲା, ଗୋଟେ ପୋଲା ବାଉଁଶ ନଳୀରେ କିଛି ପାଣି ଆଣି ଡେକ୍‌ଚିରେ ଢାଳିଲା । ଗୋଟେ ଡବାରୁ ଚାଉଳ ଆଣି ମାପିଲା । "ଏ ଚାଉଳ ଧୋଇବନି, ଭିଟାମିନ୍ ନଷ୍ଟ ହୋଇଯିବ । ତୁମକୁ ସ୍କର୍ଭି ରୋଗ ହୋଇଯାଇପାରେ । ଏଠାରେ ପ୍ରାୟ ଏହି ରୋଗ ହୁଏ ଆଉ ଏ ଜାଗାରେ ସ୍କର୍ଭି ପାଇଁ ଔଷଧ ପାଇବା କଥା ଭୁଲିଯାଅ ।"

ସେ ଉଠି ଠିଆହେଲା । "ତୁମେ ଭାତ ରାନ୍ଧିଦେବ । ଏଠି ଲାଇଟର ରହିଲା । ପାଇନ୍ କାଠରେ ଆଗ ନିଆଁ ଲଗାଇ ଜାଳିବ, ଚଟ୍‌କିନା ନିଆଁ ଲାଗିଯିବ ଏଥିରେ । ପାଣି କେଇ ସେକେଣ୍ଡରେ ଗରମ ହୋଇଯିବ ।"

ଶେଯତଳୁ କିଛି କପଡ଼ା ବାହାରକରି ସେ ବାହାରିଗଲା । ବାହାରେ ତା ପାଦର ଶବ୍ଦ ମୁଁ ଶୁଣିଲି । ଖଣ୍ଡେ ପାଇନ୍ ଡାଳ ଚିକିଚିକି କରି କାଟି ମୁଁ ନିଆଁ ଲଗେଇଲି । ଆଉ କିଛି ବଡ଼କାଠ ଚୁଲିରେ ପୂରାଇ ଡେକ୍‌ଚି ବସାଇଦେଲି । ସେ ଫେରିଲାବେଳକୁ ଭାତ ହୋଇସାରିଥିଲା । ଏଥର ସେ ସଫା ଲୁଗା ପିନ୍ଧିଥିଲା ଆଉ ଚୁଟିକୁ ଏକାଠି କରି ମୁଣ୍ଡ ଉପରେ ଟାଣିବୁଣି ଗଣ୍ଠିଟିଏ ପକାଇଥିଲା । ଓଦାଲୁଗାତକ ଚିପୁଡ଼ି ଶୁଖାଇବା ଭିତରେ

ମୋ ଆଡ଼େ ସେ ଚାହିଁଲା ; "କୋଇଲାଗୁଣ୍ଡ ଘୁଞ୍ଚେଇଦିଅ, ନହେଲେ ଜଳିଯିବ ।"

ଯନ୍ତ୍ରବତ୍ ମୁଁ ତା କଥା ମାନିଲି । ଏ ଭିତରେ, ଚୁଲିପାଖେ ବନ୍ଧା ତାରରେ ସେ ତା କପଡ଼ା ଶୁଖାଇ ସାରିଥିଲା । ଗୋଟେ ଅଦ୍ଭୁତ ଗନ୍ଧ ଘରସାରା ଖେଳୁଥିଲା । ଯେତେବେଳେ ମୁଁ ଶୁଙ୍ଘିବା ଆରମ୍ଭ କଲି ତ, ସେ ତା ମୁଣ୍ଡ ହଲେଇ, ଓଦା ବାଳକୁ ଖୋଲିଦେଲା, "ତିନିମାସ ହେଲାଣି ମୁଁ ସାବୁନ ପାଇନାହିଁ । ବିନା ସାବୁନରେ, ରକ୍ତ ଗନ୍ଧରୁ ମୁକ୍ତି ପାଇବାକୁ ତୁମେ ଅଲୌକିକ ଶକ୍ତି ଦରକାର କରିବ ।"

ସେ ମୁଣ୍ଡ କୁଣ୍ଡେଇଲା ଚିରୁଣୀରେ । ତା ଗେହ୍ଲା, ନାରୀସୁଲଭ ଅଙ୍ଗଭଙ୍ଗୀ ଭୟଙ୍କର ଭାବରେ ଧକ୍‌କା ଖାଉଥିଲା ତା ବିରାଟ ମଲ୍ଲଯୋଦ୍ଧା ଦେହରେ । ଆଉ ଖଣ୍ଡେ କାଠ ଚୁଲିରେ ପକାଇ ଦେଇ ମୁଁ ଆଖିକୁ ସିଧା ଅଗ୍ନିଶିଖା ଉପରେ ସ୍ଥିର ରଖିଲି ।

କୁହୁଡ଼ି କୁଣ୍ଡଳାକାରରେ ପଶିଆସୁଥିଲା ଆଉ ଧୂଆଁଳିଆ ଛୋଟ ଧାରଗୁଡ଼ିଏ ଘରଭିତର ଶୀତଳ ଅନ୍ଧାରରେ ବୁଲୁଥିଲା । ସ୍ତ୍ରୀ ଲୋକଟି ମୋ ପାଖରେ ବସିପଡ଼ିଲା । ତା ନରମ ଚକ୍‌ଚକ୍ କଳାବାଳ ପିଠି ଉପରେ ବିଛେଇ ପଡ଼ିଥାଏ । ସେ ଛୋଟ ଗୋଟେ ପାତ୍ର ଚୁଲିରେ ବସେଇ ସେଥିରେ ପରିବା ଓ ଖଣ୍ଡେ ଚର୍ବିମିଶା ଘୁଷୁରି ମାଂସ ପକେଇଦେଲା । ତୁମେ ଆଜି ଏ ପରିବାମିଶା ମାଂସ ଚାଖିବ । ସେ ଜାରଜଗୁଡ଼ା ବୋମାବର୍ଷା ଆରମ୍ଭ କରିବାର ଠିକ୍ ପୂର୍ବରୁ ମୁଁ ଏତକ ପାଇଥିଲି । ଗୋଟେ ପୂରା ଟିଣ ମାଂସ ବି ଅଛି । ଗୋଟେ ପାଉଣ୍ଡରୁ ବେଶୀ ହେବ ; "ଦି'ଜଣ ପେଟପୂରା ଖାଇବାକୁ ଢେର ।" ସେ ବେଶ୍ ମୁଠାଏ ଲଙ୍କାଗୁଣ୍ଡ ଆଉ ଅଳ୍ପ ଲୁଣ ସେଥିରେ ପକାଇ ଘାଣ୍ଟିବାକୁ ଲାଗିଲା ଜନ୍ତଣି ଘାଣ୍ଟିଲାପରି । ଚୁଲିରୁ ପାତ୍ରଟି କାଢ଼ିଦେଇ କହିଲା, "ନିଅ, ପରିବାତକ ଥାଳିରେ ଅଜାଡ଼ିଦିଅ ।"

ଛୋଟ ପିଲାଟିପରି ମୁଁ ତା' କଥା ମାନିଲି । ହଠାତ୍ ଉଠିପଡ଼ି ସେ ଗୁମ୍ଫା ଭିତରକୁ ଗଲା ଆଉ ମାଂସ ଟିଣଟି ଧରି ଫେରିଆସିଲା ।

"ଏଇଟା ଚୀନ୍‌ରୁ ଆମଦାନୀ । 'ଦି କ୍ୱିନ୍ ଅଫ୍ କ୍ୟାନ୍‌ଡ଼ ମିଟ', ଟିଣ ମାଂସ ଭିତରେ ରାଣୀ ଇଏ । ତୁମେ ବୋଧେ ଜାଣିଥିବ, ଏଥିରେ ଜମା ଚର୍ବି ନାହିଁ ।"

ସେ ଖାଲି ଟିଣଟା ଚୁଲି ପାଖରେ ଥୋଇଦେଲା । ମୋ ଛାତି ଧଡ଼ଧଡ଼ ହେଲା । । ସେଇ ସକାଳେ ମଧ୍ୟସ୍ଥ ଏଜେଣ୍ଟକୁ ଦେଇଥିବା ଟିଣଟି ମୁଁ ଚିହ୍ନିପାରିଲି ; ସୈନିକ ଭାବରେ ମୋ ସହିତ ବନ୍ଧୁତାର ଚିହ୍ନରୂପେ ଲୋଙ୍ଗ ମୋତେ ଏଇଟି ଦେଇଥିଲା । ଏହାର ଘୋଡ଼ଣି ଉପରେ ଗୋଟିଏ ଛୁରୀ ଚିହ୍ନ ଥିଲା ; ମୁଁ ନିଜେ ମୋ ଆମେରିକୀ କଲମପରି ଛୁରୀରେ ଏ ଦାଗଟି କରିଥିଲି । ଲୋଙ୍ଗ ମତେ ଅଟକାଇବାକୁ ଚେଷ୍ଟାକରି ଗୁଁ ଗୁଁ ହୋଇ କହିଥିଲା, ଟିଣ ଉପରେ ଏମିତି ଦାଗ କରିବା ନୀତିବିରୁଦ୍ଧ । ଏହା ଉଦ୍ରୋଚିତ ବ୍ୟବହାର ନୁହେଁ ।

"ତମେ ଏଇଟା କୋଉଠୁ ପାଇଲ ?" ଏ ପ୍ରଶ୍ନ ନପଚାରି ମୁଁ ରହିପାରିଲି ନାହିଁ । ସ୍ତ୍ରୀ ଲୋକଟି ଆଶ୍ଚର୍ଯ୍ୟ ହୋଇ ମତେ ଚାହିଁଲା : "ସେମାନେ ମତେ କହିଥିଲେ ଯେ ସେ

ସମସ୍ତ ଖାଦ୍ୟ ମୁଁ ଖାଇପାରିବି ଯାହା ବି ମିଳିବ ସେମାନଙ୍କ ... । ସେମାନଙ୍କ ବ୍ୟାଗରୁ ଯାହା ମୁଁ ପାଏ ତାହାର ଗୋଟେ ତାଲିକା ମୁଁ ରଖେ । ମୁଁ ତୁମକୁ ଦେଖାଇବି ... ସେସବୁ ବରଂ ବିଚିତ୍ର, ପିଲାଳିଆ, ଅଦ୍ଭୁତ, ସେମାନଙ୍କ ଭିତରୁ କେତେକ ଡଜନ ଡଜନ ରୁମାଲ, ଅଣ୍ଡରଓୟାର, ଗାଁରେ ଥିବା ପ୍ରେମିକା ପାଇଁ ବ୍ରେସିଅର୍ ସଂଗ୍ରହ କରିଥାନ୍ତି । ଆଉ କେତେକ ପଥର ବା ଶିଙ୍ଗରେ ସେମାନଙ୍କ ପ୍ରିୟାର ନାମ ଖୋଦେଇ କରି ବୋହି ବୁଲୁଥାନ୍ତି । ପ୍ରତିଟି ସୈନିକ ଅନ୍ୟଠାରୁ ଭିନ୍ନ । ଆଉ ଡାଏରୀ ଲେଖିବା ବାବଦରେ, ଅଧିକାଂଶ ଚୁକୁରା ଚିଗୁଲୁଚି ପରି କ'ଣ ଟିକେ ଗାରେଇ ଦେଇଥିବେ । ସେ ଯା'ହେଉ, ଆସ ଖାଇବା, ଭାରି ଭୋକ ମତେ ।''

ସେ ମାଂସଟିଣଟିକୁ ଫିଟେଇ ମୋ ଆଗକୁ ଠେଲିଦେଲା । ଗୋଟେ ଥାଳିରେ ଭାତ ଭର୍ତ୍ତିକରି ମୋ ହାତରେ ଧରେଇଦେଲା, ଯେପରି ସ୍ତ୍ରୀ ତା ସ୍ୱାମୀ ପାଇଁ କରେ । ଅପ୍ରତିଭ ହୋଇ ଗୁଣୁଗୁଣୁ ଧନ୍ୟବାଦଟିଏ ମୁଁ ଦେଲି ।

ସେ କିଛି କହିଲା ନାହିଁ, କେବଳ ମୁଣ୍ଡ ନୁଆଁଇ ଖାଇବା ଆରମ୍ଭ କଲା । ମତେ ଲାଗିଲା ସେ ଯେମିତି କିଛି ଘଟିବା ପାଇଁ ଅପେକ୍ଷା କରୁଥିଲା, କିଛି ଅଧିକ କୋମଳ, ଆନ୍ତରିକ, ମୋ ଜିଭ ଯେପରି ବରଫ ପାଲଟିଯାଇଥିଲା । ଆମ ଦୁହିଁଙ୍କ ଭିତରେ ନୀରବତା ବିରାଜମାନ କଲା । ସମୟ ଗଡ଼ିଚାଲିଲା । ଅଗ୍ନିଶିଖାର କଡ଼କଡ଼ ଶବ୍ଦ ସହିତ ଏହା ବିତିଯାଉଥିବାର ମୁଁ ଶୁଣିପାରିଲି । ହଠାତ୍ ସେ ମୁଣ୍ଡ ଟେକିଲା : ''ତୁମେ ଖାଲି ପରିବା କାହିଁକି ଖାଇଚାଲିଛ ? ତୁମେ ଟିଣମାଂସ ଖାଇବାକୁ ଭଲ ପାଅଟି ?''

''ମୋର ଟିକେ ପେଟ ରୋଗ ଅଛି । ଦୀର୍ଘକାଳ ଧରି ମୁଁ ଖାଲି ଭାତ ଖାଉଛି ତ ।''

''ତୁମେ ଯେଉଁଠୁ ଆସିଛ, ସେଠି କ'ଣ ବାଉଁଶ ଗଜା ମିଳେନି ?''

''ବେଳେବେଳେ । ହେଲେ ସହଜରେ ମିଳେନାହିଁ ।''

''ତୁମେ ପୁରୁଷଗୁଡ଼ା ଏତେ ଅଳସୁଆ । ସବୁ ଜଙ୍ଗଲରେ ବାଉଁଶଗଜା ଅଛି । ପରିବା ଆଉ ଫଳର ଅଭାବ ଏ ଜାଗାରେ କେବେ ନାହିଁ ।''

''ସତକଥା । ଆମେ ପୁରୁଷ ସୈନ୍ୟଗୁଡ଼ା ଅପଦାର୍ଥ, ତୁମପରି ନୁହେଁ ।''

''ଆମକୁ ତୁମେ ମହିଳା ସୈନିକ ନାମରେ ଡାକନା ? କି ଗୋଟେ ଛାରଛଦଳ ... ହଉ ତୁମ ନାଁ କ'ଣ କହିଲ ? ଏଯାଏଁ ତୁମ ନାମ ମୁଁ ଜାଣିନାହିଁ ।''

''କ୍ୱାନ୍ । ମୋ ନାଁ କ୍ୱାନ୍ ।''

''କି ସୁନ୍ଦର ନାମ । ମୁଁ ଭାଏଁ । ଆଉ ଗଣ୍ଡେ ଭାତ ଖାଅ । ନା ପେଟ ପୂରିଗଲାଣି ? ତୁମେ ଯେତେ କମ ଖାଉଛ ସେଥିରେ କେବେ ବି ପ୍ରତିଯୋଗିତାରେ ଓଜନ ଟେକିବା ମଲ୍ଲ ହୋଇପାରିବ ନାହିଁ । ଅଥଚ ମୁଁ ତୁମ ଠାରୁ ଦୁଇ କଂସା ଅଧିକା ଭାତ ଖାଉଛି ।''

''ଧନ୍ୟବାଦ, କମ୍ରେଡ଼ ।''

"ଧନ୍ୟବାଦ ଏଥିପାଇଁ, ଧନ୍ୟବାଦ ସେଥିପାଇଁ । କି ଛଳନା ! ତୁମେ ନିଶ୍ଚେ ହାନୋଇରୁ ଆସିଛ ।"

"ମୁଁ ତୋଙ୍ଗ ଡିଏଁ ଗ୍ରାମରୁ ଆସିଛି ।"

"ତୁମେ କିନ୍ତୁ ଗୋଟେ ଗାଁରୁ ଆସିଥିବା ଲୋକପରି ଜମା ଦିଶୁନାହଁ । ମୁଁ ତ କହିବି ତୁମେ ତୁମ ମୂଳ ଜଡ଼ରୁ ବାଟଭୁଲି ବାହାରି ଆସିଛ । ନିଅ, ଏଇ ପେଜ ଟିକକ ପିଇଦିଅ, ସତେଜ ଲାଗିବ । ବାସନ ସେଇଠି ଥାଉ, ଚାମଚ ବି । ମୁଁ ସକାଳେ ଧୋଇଦେବି । ଆସ ଶୋଇପଡ଼ିବା । ମୁଁ ପୂରା କ୍ଳାନ୍ତ ।"

ଗୋଟାଏ ଢୋକରେ ସେ ତା ପେଜତକ ପିଇ, ଶେଯ ଉପରେ ଲମ୍ବା ହୋଇଗଲା ଆଉ ସାଙ୍ଗେ ସାଙ୍ଗେ ଘୁଙ୍ଗୁଡ଼ି ମାରିବା ଆରମ୍ଭ କରିଦେଲା । ତା ମୁଣ୍ଡ ଥିଲା ଗୋଟେ ଚିକି ଧଳା ତକିଆ ଉପରେ । ତକିଆ ଉପରୁ ଗୋଟେ ଲାଲ ସୂତା ବାହାରି ଆସିଥିଲା । ସେ ତା ପାଟି ମେଲାକରି, ଦାନ୍ତ ଆକାଶ ଆଡ଼କୁ ଦେଖାଇ ଶୋଇଥିଲା । ମୋ ଭିତରଟାକୁ ସେ ଆତଙ୍କ, କୌତୂହଳ ଆଉ ଦୟାର ମିଶ୍ରଣରେ ପୂର୍ଣ୍ଣକରି ଦେଇଥିଲା । ମୁଁ କବାଟ ବନ୍ଦକଲି ଆଉ ମୋ ବିଛଣାରେ ପଡ଼ିଗଲି । ଅବିଳମ୍ବେ ମୁଁ ଗଭୀର, ପ୍ରଶାନ୍ତ ନିଦ୍ରାରେ ଅଚେତନ ହୋଇଗଲି ।

ମୁଁ ସ୍ୱପ୍ନ ଦେଖୁନଥିଲି । ପେଟ ଉପରେ ଗୋଟେ ଓଜନ ଅନୁଭବ କରି ମୁଁ ଉଠିପଡ଼ିଲି । ତତ୍‌କ୍ଷଣାତ୍ ମୁଁ ଜାଣିଗଲି ଯେ ଓଜନଟା ସେ ହିଁ ଥିଲା, ମାନେ ସେ ନିଜକୁ ମୋ ଉପରେ ଚାପିଦେଇଥିଲା । ତା ବାଳ ମୋ କାନ୍ଧ ଉପରେ ଘଷି ହେଉଥିଲା । ତା ବିଶାଳ ବାହୁ ମୋ ପେଟକୁ ଗୁଡ଼େଇ ଧରିଥିଲା । ସେ କିନ୍ତୁ ସଂଶୟ ଭିତରେ ଥିଲା । ତା ଉଷୁମ ନିଃଶ୍ୱାସ ମୁଁ ଅନୁଭବ କଲି, ମଝିରେ ମଝିରେ କଡ଼ ଲେଉଟାଇ ସେ ଗୁଣୁଗୁଣୁ ହୋଇ କିଛି କହୁଥିଲା ଆଉ ଦୀର୍ଘ ଶ୍ୱାସ ଛାଡୁଥିଲା । ମୁଁ ଶୋଇବାର ଛଳନାକରି, ପୂରା ସ୍ଥିରହୋଇ ପଡ଼ିରହିଲି । ହେଲେ ମୋ କାନ, ନାକ ପୂରା ଜାଗ୍ରତ ଥାଆନ୍ତି, ଯେମିତି ଶୂନ୍ୟରୁ ଆକ୍ରମଣ ପୂର୍ବରୁ ରାଡ଼ାର କ୍ରିୟାଶୀଳ ହୋଇଯାଏ । ମୁଁ ଜାଣିଥିଲି ଯେ ସେ ମତେ ନିରେଖି ଦେଖୁଥିଲା, ଆଉ ମୋର ଅତି ସାମାନ୍ୟ ହଲଚଲକୁ ଅପେକ୍ଷା କରିଥିଲା ।

ବିଛଣା ପାଦ ପାଖରେ, କୋଇଲା ତଥାପି ରଡ଼ନିଆଁ ପରି ଜଳୁଥିଲା, ଆଉ ସେଇ ଉଷ୍ମତା ମତେ ସେତେବେଳେ ଭଲ ଲାଗିଥିଲା । ନିଆଁ ଧାସରେ ମୁଁ ପୂରା ଦେଖାଯାଉଥିବି ଭାବି ମୋ ଆଖି ଦୁଇଟି ମୁଁ ଜୋରରେ ବନ୍ଦକରି ରଖିଥିଲି । ସେ ଭୟଙ୍କର ଭାବରେ କଡ଼ ଲେଉଟାଇଲା : ମୁଁ ତା ସଁ ସଁ ଶବ୍ଦ ଶୁଣିପାରୁଥିଲି । ହଠାତ୍ ଧୈର୍ଯ୍ୟହରା ହୋଇ ସେ ମୋ ବେଲ୍‌ଟ ଧରି ଝିଙ୍କି ପକାଇଲା । ମୁଁ ତଥାପି ଶୋଇବାର ଛଳନା କରି ଆରପଟକୁ ଗଡ଼ିଯାଇ ଗଁ ଗଁ ହେଲି । ସେପରି କରିବା ଭୁଲ ଥିଲା । ସେ ସାଙ୍ଗେ ସାଙ୍ଗେ ଜାଣିଗଲା ଯେ ମୁଁ ଚେଇଁଛି । ମୋ ନାଁ ଧରି ସେ ଡାକିଲା : "କ୍ୱାନ୍ ।"

ମୁଁ କିଛି ଉତ୍ତର ଦେଲିନାହିଁ । ସେ ପୁଣିଥରେ ଡାକିଲା – "କ୍ୱାନ୍ ?" ମୁଁ ନୀରବ ଥିଲି । ମୋ ବେଲଟ ଛାଡ଼ିଦେଇ ସେ ଶେଯ ଉପରେ ବସିପଡ଼ିଲା । "କ୍ୱାନ୍, କାହିଁକି ଏପରି ନିଷ୍ଠୁର ହେଉଛ ? ମୁଁ ଏଠାରେ ସଂପୂର୍ଣ୍ଣ ଏକାକୀ । ଭୟାନକ ନିଃସଙ୍ଗତା । ଆଖି ଖୋଲ । ମୋ କଥା ଶୁଣ । କ୍ୱାନ୍, ପ୍ଲିଜ୍ ।"

ଏଥର ମୁଁ ଆଖି ଖୋଲିବାକୁ ସାହସ ବି କରିପାରିଲି ନାହିଁ । ଏପଟକୁ ବୁଲିପଡ଼ି ମୁଁ ନରମ ସ୍ୱରରେ ତାକୁ କହିଲି, "କମ୍ରେଡ଼ ଭୀଏଁ, ତୁମେ ଏଠାରେ ଏକୁଟିଆ ରହୁଛ ବୋଲି ତୁମକୁ ମୁଁ ଅସୁବିଧାରେ ପକାଇବାକୁ ଚାହେଁ ନାହିଁ । ଯଦି ଦୁର୍ଭାଗ୍ୟବଶତଃ ... ତୁମକୁ ତ ଏହା ମାରିଦେବ ।"

ସେ ଏକ କୋମଳ ଚିତ୍କାର କରି ମୋ ଉପରେ ପଡ଼ିଗଲା । "କିଛି ହେବ ନାହିଁ । ବିପଦ କ'ଣ ? ତୁମ ଦ୍ୱାରା ଯଦି ମୁଁ ଗର୍ଭବତୀ ହୁଏ, ବହୁତ ଭଲ ହେବ । କ୍ୱାନ୍, ମୋ ପାଖକୁ ଆସ କ୍ୱାନ୍ ।"

ସେ ଯୌନତୃପ୍ତି ଆଶାରେ କୋମଳ ଆର୍ତ୍ତନାଦ କଲା । ମୁଁ କହିଲି, "କମ୍ରେଡ଼ ଭୀଏଁ ନିଜକୁ ସଂଯତ କର । ନିୟନ୍ତ୍ରଣରେ ରଖ ନିଜକୁ । ତୁମେ ଗୋଟେ ବହୁତ ବଡ଼ ଭୁଲ କରିବାକୁ ଯାଉଛ ।"

"ନା, ନା, ସେ ପୁଣିଥରେ ନରମ ଉତ୍ତେଜନା ପ୍ରକାଶ କଲା, ମୁଁ ମରିବାକୁ ଚାହେଁ, ମତେ ନିଅ, ମୋତେ ମାରିଦିଅ, ମୋତେ ମରିବାକୁ ଦିଅ ।"

ମୋତେ ଉଠାଇ ନିଜ ଉପରକୁ ଟେକିନେବାକୁ ଚେଷ୍ଟା କଲା ।

ଗୋଟେ ଅଦ୍ଭୁତ ଆବେଶରେ ମୋତେ ଲାଗିଲା ଯେପରି ମୁଁ ଅକ୍ଷମ ହୋଇଯାଇଛି । ନିଜକୁ ନିଜେ କହିଲି : "ତୁମ ଆଖି ବୁଜିରଖ । ଏ କାମ ସରିଯିବାକୁ ଦିଅ । ଆଖି ବୁଜ ।" ଅନୁଭବ କଲି ମୋ ହାତ ଆଉ ଗୋଡ଼ ଧୀରେ ସ୍ଥାଣୁ ହୋଇଆସୁଛି । ଥରଥର ଭୟ, ଗୋଟେ ଆକର୍ଷକ ମୋହିତ କାମନା । ମୁଁ ତାର ଖରନିଃଶ୍ୱାସ ଶୁଣିଲି, ତାପରେ ଚିତ୍କାର, "କ୍ୱାନ୍, ଡାର୍ଲିଂ ।"

କୋଇଲାର ନାଲି ଆଲୁଅରେ ମୁଁ ଦେଖିଲି ତାକୁ, ଆଖିବନ୍ଦ, ବଡ଼ ପାଟିଟା ମେଲା, ଓଠ ଥରଥର, ଧଇଁସଇଁ ହୋଇ ଓଠରେ ଓଠ ବାଜୁଛି, ଅର୍ଥହୀନ ଶବ୍ଦମାନ ତା କୁତ୍ସିତ ଦାନ୍ତ ଫାଙ୍କ ଦେଇ ବାହାରି ଆସୁଛି, "କ୍ୱାନ୍, ଡାର୍ଲିଂ, ମତେ ମାରିଦିଅ, ମାରିଦିଅ ।"

ତା'ର ଏପରି ବେଦନା ଜର୍ଜରିତ ଉତ୍ତେଜକ କାନ୍ଦ ମୋ ଭିତରେ ଗୋଟେ ଅପ୍ରୀତିକର ଅନୁଭବ ଆଣିଦେଲା । ଏହା ମୋର ସମସ୍ତ ଇଚ୍ଛାକୁ ଯେପରି ପାଣିରେ ବୁଡ଼ାଇଦେଲା, ଆଉ ହଠାତ୍ ମୁଁ ସ୍ପଷ୍ଟ ଭାବରେ ଅନୁଭବ କଲି ମୋର ସଂପୂର୍ଣ୍ଣ ଅକ୍ଷମତା । ମୋ ମୁହଁ ଲାଜରେ ଜଳିଗଲା, ମୁଁ ତାକୁ ଠେଲିଦେଲି ଆଉ ନିଜେ ବସି ପଡ଼ିଲି, "କମ୍ରେଡ଼ ଭୀଏଁ, ଆମେ କଦାପି ଏପରି କରିପାରିବା ନାହିଁ ।"

ସେ ତେଇଁପଡ଼ିଲା ମୋ ପାଖକୁ : "କ୍ୱାନ୍, ତମେ ମୋତେ ଅସୁନ୍ଦର ଭାବୁଛ ନା ? ତୁମେ କ'ଣ ଚାହୁଁଛ ମୁଁ ଏ ନିଆଁ ଲିଭେଇଦେବି ?" ସେ ଚୁଲିପାଖକୁ ଦୌଡ଼ିଲା, ଗୋଟେ କାଠଗଣ୍ଡି ଟେକିଆଣି, ତରତର ହୋଇ ସତର୍କ ଭାବରେ କୋଇଲା ଗୁଣ୍ଡ କରି ରଡ଼ ଲିଭେଇବାକୁ ଆଗେଇଗଲା । ମୁଁ ତାଟକାହୋଇ ତାକୁ ଅନେଇଥାଏ : "କମ୍ରେଡ଼ ଭୀଏଁ, ଆସ, ଏଠି ବସ ... ମୁଁ ତା ପାଖକୁ ଲାଗିଗଲି । ତୁମକୁ ସବୁକଥା ବୁଝେଇ ଦେଉଛି ମୁଁ ।"

ସେ ମୋ କଥା ମାନିଲା, ଆଖିଟେକି ମତେ ନମ୍ର, ସହମତ ଦୃଷ୍ଟିରେ ଦେଖିଲା । ତା ମୁହଁର ପ୍ରତିଟି ପ୍ରତ୍ୟଙ୍ଗ ନିର୍ମମ–ତା' ଚେପା ନାକ, ସରୁ କପାଳ, ବଙ୍କା ବଡ଼ ବଡ଼ ଦାନ୍ତ–ଦେଖାଯାଉଥିଲା ଅବହେଳିତ ନାରୀସୁଲଭ ଆଶାରେ ବିନତି କରୁଥିଲା ସୁଖ ପାଇଁ ଯାହା ଥିଲା ଉଭୟ ପାଶବିକ ଓ ମାନବିକ । ମୋ ଭିତରେ କାହିଁକି ଗୋଟେ ଚୋଭୁର ସାହସ ବି ନାହିଁ ? ଭ୍ରମଣକାଳରେ ଗୋଟେ ଦ୍ୱୀପରେ ଅଟକିଯାଇ, ସେ ଗୋଟେ ମାଙ୍କଡ଼ ସାଥିରେ ଶୋଇଥିଲା । ମୋର କାହିଁକି ଏହି ପ୍ରାଚୀନ ରାଜାର ଦୃଢ଼ ମନସ୍କତା, ତାର କରୁଣା ନାହିଁ ? ଏକ ନିର୍ଦ୍ଦିଷ୍ଟ ନାରୀର ମର୍ଯ୍ୟାଦା ପ୍ରତି ସମ୍ମାନ ଯୋଗୁଁ ସେ ତାକୁ ଗୋଟେ ରାଣୀ କରିଥିଲା, ତା' ମୁହଁର ଅସୁନ୍ଦରତାକୁ ଦେଖି ନଥିଲା । ଏଇ ବିରଳ ବ୍ୟକ୍ତିମାନେ ... ସେମାନେ ମୁନିଋଷି ଥିଲେ ନା ଜଙ୍ଗଲୀ ଜାନୁଆର ?

"ମୋ କଥା ଶୁଣ, କମ୍ରେଡ଼ ଭୀଏଁ", ମୁଁ ତା' ହାତଟିକୁ ଧରିପକାଇଲି ତାହେଲେ ଆମ ଦୁହିଁଙ୍କ ଭିତରେ ଦୂରତା ରହିବ, ଆଉ ମୁଁ ନିଜକୁ ରକ୍ଷା କରିପାରିବି । ମୁଁ ନିଜକୁ ବାଧକରାଇ ସିଧା ତା ମୁହଁକୁ ଅନେଇଲି, ତା' ଦ୍ୱାରା ତାକୁ ଲଜ୍ଜା ଲାଗିବ ନାହିଁ ।

"ଦୟାକରି ମୋ ଉପରେ ରାଗ ନାହିଁ । ମୁଁ ତୁମକୁ ଆଘାତ ଦେବାକୁ ଚାହେଁ ନାହିଁ, ହେଲେ ... ସତ କହିବାକୁ ଗଲେ, ମୁଁ ... ପାରେନି ।"

ଥଙ୍ଗେଇ ଥଙ୍ଗେଇ ଥରିଲା ସ୍ୱରରେ ମୋ ନାମ ଉଚ୍ଚାରଣ କରି ସେ ମତେ ଅନେଇଲା ।

"ତୁମେ ବୁଝିପାରୁଛ ତ ? ଠିକ୍‌ରେ କହିଲେ, ପାରେ ନାହିଁ", ପୁଣିଥରେ ମୁଁ କହିଲି ।

ସେ ମୋତେ ସନ୍ଦେହୀ ଆଖିରେ ଚାହିଁଲା । ହଠାତ୍ ତା ହାତ ମୋ ଦୁଇଜଙ୍ଘ ଭିତରେ ଭର୍ତ୍ତି କରିଦେଲା । ତାର ଅନୁସନ୍ଧାନ ଥିଲା ନିର୍ଣ୍ଣାୟକ । ସେ ନିଜେ ମୋ ଅପାରଗପଣ ଜାଣିପାରିଲା । ହାତ କାଢ଼ିଆଣି ନୀରବରେ ମତେ ଅନେଇଲା । ତା' ଆଖି ଥିଲା ନରମ । ଦୟା କରୁଥିଲା ମତେ । ଏବେ ମୋ ପାଳି ଦୟା ପାଇବାର । "ରକ୍ଷାହେଲା", ଭାବି ଭାବି ଆଶ୍ୱସ୍ତିରେ କହିଲି, "ଦେଖ, ମତେ ଭୁଲ୍ ବୁଝ ନାହିଁ...ମୁଁ ଚାହୁଁନଥିଲି..." ମୋ ପାଟି ଖନି ମାରିଗଲା ।

ସେ ରାଗରେ ଉଠିପଡ଼ି ମୁଣ୍ଡଟାକୁ ଜୋର୍ ହଲେଇଦେଲା । "ଏସବୁ ବୋଧହୁଏ ସେଇ ରସାୟନ ଯୋଗୁଁ । ସେଇ ଆମେରିକୀ ଜାରଜ ଦଳ !" ମୋ ଆଡ଼କୁ ତାପରେ ସେ ବୁଲିପଡ଼ିଲା । ଯାଅ, ଟିକେ ଶୋଇପଡ଼ିବାକୁ ଚେଷ୍ଟାକର । ସକାଳୁ ତୁମକୁ ବହୁଦୂର ଯିବାକୁ ହେବ ।"

ସେ ତା' ବିଛଣାକୁ ଫେରିଗଲା, ହେଲେ ମୋ ଆଖିରେ ନିଦ ନଥିଲା । ଚୁଲିରେ ଆଉ କିଛି କାଠ ପକାଇ ମୁଁ ଜଳାଇଲି, ନିଆଁକୁ ଲକ୍ଷ୍ୟକଲି, ଅଭିଭୂତ ହୋଇ, ସିମ୍ପାଞ୍ଜି ବୁଢ଼ା ହୋଇଗଲା ପରେ ସୂର୍ଯ୍ୟଙ୍କୁ ଅନେଇ ରହିଲା ପରି ।

ମୋର ସବୁ ଆଶ୍ୱସ୍ତି ଉଭେଇ ଯାଇଥିଲା । ଏବେ ମୁଁ ଅନୁଭବ କରୁଥିଲି ତିକ୍ତତା । ମୁଁ ନିରୀହ ଥିଲି, ତଥାପି ମିଛ ପାଇଁ ଦୁଃଖିତ ଥିଲି । ମୋର ଅସ୍ମିତା ସତ୍ତ୍ୱେ, ଲଜ୍ଜାରେ ମୁଁ ମ୍ରିୟମାଣ ଥିଲି । ମତେ ଲାଗିଲା, ଏଇ ଲଜ୍ଜା ଗୋଟେ ଅଦୃଶ୍ୟ ଯାଦୁ ପରି ମୋ ମସ୍ତିଷ୍କରେ ବଢ଼ି, ଏହାର ଶେଥା, ବିଷାକ୍ତ ଛାଇ ମୋ ସାରା ଦେହରେ ମାଡ଼ିଆସୁଥିଲା ଧୀରେ, ଅତି ଧୀରେ । ମୋ ଚିନ୍ତାଧାରା ଉଦ୍‌ଭ୍ରାନ୍ତ ହୋଇ ତଳ ଉପର ପଡ଼ିଲା ଉଠିଲା । ମୁଁ କ'ଣ ଗୋଟେ ଭୀରୁ, ନପୁଂସକ ? ଗୋଟେ ଏତେ ବଳହୀନ ପୁରୁଷ ଯେ ଏକ ଜାନ୍ତବ ସଂଗମର ଦୂରକୁ ପଳାଇଯାଏ ? ମୁଁ କ'ଣ ସ୍ୱାର୍ଥପର, ମାନବିକତାର ଏତେ ଅଭାବ ମୋ ପାଖରେ ଯେ ତାକୁ ମୁଁ ଗୋଟେ ଜନ୍ତୁ ପରି ବି ଅନୁରୂପ ବ୍ୟବହାର ଦେଖାଇପାରିବି ନାହିଁ ?

ମତେ ଲାଗିଲା ଯେପରି ମୁଁ ଶତାବ୍ଦୀର ଅସହିଷ୍ଣୁତା, ପକ୍ଷପାତ ଆଉ ମୂଢ଼ତା ଦ୍ୱାରା ବନ୍ଦୀ ହୋଇଅଛି । ପବିତ୍ରତାର ସ୍ୱପ୍ନ ... ପୁରୁଣାକାଳିଆ ମୂଲ୍ୟବୋଧ, ଯହିଁରୁ ଅଧିକାଂଶ କାଦୁଅ ଓ ରକ୍ତରେ ପଙ୍କିଳ ... କିମ୍ବା ... ଆଉ ଭାବି ପାରିଲାନି । ମୁଁ ଏପରି ଗୋଟେ ସ୍ତ୍ରୀଲୋକକୁ ପରିତ୍ୟାଗ କରିଥିଲି ଯିଏ ମତେ ଅନ୍ତରର ସହ ସରଳଭାବେ ସ୍ୱାଗତ କରିଥିଲା, ଯିଏ ମୋ ଠାରୁ ମୁହୂର୍ତ୍ତକର ସୁଖ ପ୍ରାର୍ଥନା କରିଥିଲା, ଜୀବନର ଗୋଟିଏ ମୁହୂର୍ତ୍ତ, ସେଇ ଜୀବନ ଯାହାକୁ ଆମେ ବହୁ ଆଗରୁ ହଜେଇ ସାରିଛୁ, ଆଉ ଯାହାକୁ ବିପଦର ପୂର୍ବ ସୂଚନା ଭିତରେ । କିମ୍ବା ସେ ଥିଲା ଅତିମାତ୍ରାରେ କୁତ୍ସିତ ? ... ନା, କେବଳ ଏତିକି ଏହାର କାରଣ ହୋଇନପାରେ ।

ଠିକ୍ ସଂଧ୍ୟାବେଳେ ସେ ତିନୋଟି ମୃତଦେହ ଘୋଷାରିଥିଲା । ସେ ତିନୋଟି ମୃତଲୋକଙ୍କ ଆଖି ବନ୍ଦ କରିଥିଲା ।

ସେ ଏକୁଟିଆ ସେମାନଙ୍କୁ ପାହାଡ଼ ଆରପଟେ କବର ଦେଇଥିଲା । ସେ ଏଇଠି ରହେ, ସେମାନଙ୍କ ବ୍ୟକ୍ତିଗତ ଜିନିଷପତ୍ର ଜଗି, ସେମାନଙ୍କ ଛାୟାକୁ ଜୀବନର ଏକ ସ୍ମାରକବସ୍ତୁ ଭଳି ଲକ୍ଷ୍ୟ କରି ।

ଏଇ ସ୍ତ୍ରୀ ଲୋକଟି ଏଇ ଯୁଦ୍ଧରୁ ଜାତ । ସେ ଅସୁନ୍ଦର ବୋଲି ମୁଁ ଯେ ତାକୁ

ଅଗ୍ରାହ୍ୟ କରିଥିଲି ତା ନୁହେଁ । ମୁଁ ନିଜର ସାମ୍ନା କରିବାକୁ ଡରୁଥିଲି, ସତ୍ୟର ମୁହାଁମୁହିଁ ହେବାକୁ ଡରୁଥିଲି । ମୁଁ ଥିଲି ଗୋଟେ କାପୁରୁଷ । ଯୁଦ୍ଧର ଦଶବର୍ଷ ଚାଲିଗଲାଣି । ଯଶ ଆଉ ଅପଯଶ ଉଭୟକୁ ମୁଁ ଜାଣେ । ମୁଁ ଏହାର ସବୁପ୍ରକାର ନୀଚ ଖେଳକୁ ଜାଣେ । ମୋର ତାକୁ ଭେଟିବା ନିହାତି ଦରକାର ଥିଲା, ଶେଷରେ ନିଜକୁ ଅନ୍ତତଃ ସ୍ପଷ୍ଟଭାବେ ଜାଣିବା ପାଇଁ । ମୁଁ ପୂର୍ବରୁ ପରାଜିତ ହୋଇସାରିଥିଲି । ସତ କହିବାକୁ ଗଲେ, ମୁଁ କେବେ ନିଜକୁ ଏ ପରାଜୟ ପାଖରେ ସମର୍ପଣ କରିଦେଇ ନଥିଲି । ଅଠରବର୍ଷ ବାଳକଟି ଯିଏ ନିଜକୁ ସୈନ୍ୟ ଜୀବନ ଭିତରକୁ ଫିଙ୍ଗି ଦେଇଥିଲା, ତଥାପି ଠିକ୍ ସେଇ ବାଳକଟି ହୋଇ ରହିଯାଇଥିଲା, ସେଇଠି କେଉଁଠି ଦିଗ୍‌ବଳୟ ଆରପଟେ ବାଟଭୁଲି ଏଣେ ତେଣେ ବୁଲୁଥିଲା ।

ନିଆଁ ଅଧିକ ଉଜ୍ଜ୍ୱଳ ହୋଇ ଜଳୁଥିଲା, ଆଲୋକରଶ୍ମି 'ଆଶ୍ରୟ'ର କୋଣ ଅନୁକୋଣକୁ ଚହଟି ଯାଉଥିଲା, ଏହାର ନରମ, ଉଷୁମ ପ୍ରତିଟି ଜିନିଷକୁ ଘୋଡ଼େଇ ପକାଉଥିଲା । ସ୍ତ୍ରୀଲୋକଟି ଶୋଇପଡ଼ିଥିଲା ; ତା ନିଃଶ୍ୱାସ ଥିଲା ନିୟମିତ, ଛନ୍ଦରେ ଆବଦ୍ଧ ଆଉ ଗୋଟାଏ ବାହୁ ପଡ଼ିଥିଲା ତା' କପାଳ ଉପରେ, ଚିନ୍ତାମଗ୍ନ । ମୁଁ ତାକୁ ଲକ୍ଷ୍ୟ କଲି । ହୃଦୟର ସହ ତାର ମଙ୍ଗଳ କାମନା କଲି । ନିଶ୍ଚୟ, ଏଇଠି କେଉଁଠି ଥିବେ ପୁରୁଷ, ଏଇ ଯୁଦ୍ଧର ପ୍ରକୃତ ସନ୍ତାନ, ଯିଏ ତାକୁ ଆଣିଦେବ ତାର ହକ୍ ସୁଖ ଯାହା ତାର ପ୍ରାପ୍ୟ ।

ମୃତମାନଙ୍କ ନିଜ ଜିନିଷର ତାଲିକା ହେଉଥିବା ଖାତାରେ ମୁଁ ଧନ୍ୟବାଦର କେତୋଟି ଶବ୍ଦ ଗାରେଇଦେଲି । ମୋ ନିଜ ଜିନିଷପତ୍ର ଏକାଠି କଲି ଆଉ ବାହାରି ଆସିଲି । ଘଣ୍ଟାରେ ବାଜିଥିଲା ଚାରିଘଣ୍ଟା ବତିଶ ମିନିଟ୍ । ରାତିଥିଲା ବରଫ ପରି ଶୀତଳ, ଘନକଳା । ମାନଚିତ୍ରଟିକୁ ମୁଁ ସତର୍କ ଭାବରେ ଦେଖିଲି, ଆଉ ଯେତେବେଳେ ଏଥିରେ ଦେଖାଯାଉଥିବା ସମୁଚ୍ଚସ୍ତର ରେଖାଗୁଡ଼ିକ ମନେରଖିନେଲି, ମୁଁ ବାହାରି ପଡ଼ିଲି, ମୋ ବାଟ ଅଣ୍ଡାଳି ।

୭

# ଉପହାର

## ଗୋଁ ଦୁ ଲାପ୍

ଗୋଟେ ବନ୍ଧୁର ଉପକୂଳ । କାଠ ତିଆରି ଡକ୍‌ଟି ଯେଉଁଠାରେ ଆମେ ଆମ ନୌକାଟିକୁ ବାନ୍ଧି ଦେଇଥିଲୁ, ଏତେ ଦୀର୍ଘକାଳ ଧରି ପରିତ୍ୟକ୍ତ ହୋଇ ରହିଥିଲା ଯେ ଏହା ପୂରାପୂରି ଜୀର୍ଣ୍ଣ ହୋଇଯାଇଥିଲା ଆଉ ପ୍ରାୟ ଭୁଶୁଡ଼ି ପଡ଼ିବା ଅବସ୍ଥାରେ ଥିଲା । ଦୂର ପାହାଡ଼ଗୁଡ଼ିକ ଲଣ୍ଡାମୁଣ୍ଡ ପରି ଲଙ୍ଗଳା ଦିଶୁଥିଲା । ଗୋଟେ କଙ୍କରିଳ ପଥ ତଟଭୂମିରୁ ବାହାରି ବିକଳ ହୋଇ କୁଣ୍ଢେଇ ପକାଉଥିଲା ଆଉ ଗୋଟେ ତୀକ୍ଷ୍ଣ ଉଠିଆସୁଥିବା ଲାଲ-ବାଦାମୀ ରଙ୍ଗର, ମହୁଫେଣା ସଦୃଶ ପାର୍ଶ୍ୱ ସଡ଼କକୁ । ଶିଖରଦେଶକୁ ମୁଁ ଯେତେବେଳେ ଅତିକ୍ରମ କରିଗଲି, ଦେଖିଲି, ଦୁଇଟି ପାହାଡ଼ ମଝିରେ ଚାପିହୋଇ ରହିଥିବା, ମୃତ-ଶୁଷ୍କ କାଜୁଗଛର ଏକ ବିକ୍ଷିପ୍ତ ବିରଳ ଉଜୁଡ଼ା ଜଙ୍ଗଲ । ଏଇଠି ଡାହାଣପଟକୁ ବୁଲିପଡ଼ି କେତେ ବାଟ କଷ୍ଟରେ ଚାଲି ଚାଲି ଗଲାପରେ ପହଞ୍ଚିଲି ଗୋଟେ ସମତଳ ଜାଗାରେ । ମନେହେଲା, ସେଠାରେ ଏକଦା ଥିଲା ଗୋଟିଏ ଅଙ୍ଗୁର ବଗିଚା । ଏବେ ସେଠି ଥିଲା ବେଶୀ ବଢ଼ି ପାରିନଥିବା, ଧାଡ଼ି ଧାଡ଼ି କଣ୍ଟାଳିଆ ବୁଦା କେବଳ । ଏ ଦୃଶ୍ୟ ଥିଲା ଶୋଚନୀୟ, ଜନମାନବ ଶୂନ୍ୟ ଇଲାକା । ହଠାତ୍ ମୋ ଆଗରେ ଦେଖାଦେଲା ଗାଁଟିଏ, ମାଟିଆ ପଥରରେ ତିଆରି ଘରମାନଙ୍କରେ ଭର୍ତ୍ତି ।

ଗାଁ ମୁଣ୍ଡରେ ନଜର ପଡ଼ିଲା, ତାଳପତ୍ର କଟା ଗୋଟେ ଥୁଣ୍ଟା କାଜୁଗଛର ମୁଣ୍ଡା ଗଣ୍ଡିକୁ ଆଉଜି ରହିଥିଲା ବୁଢ଼ାଲୋକଟିଏ ଅଧାଶୁଆ-ଅଧାବସା ଅବସ୍ଥାରେ । ପ୍ରବଳ ଗରମ ହେଲେ ବି ସେ ପିନ୍ଧିଥିଲା ଗୋଟେ କଳା, ମଇଳା ସୁଟ୍‌କୋଟ୍ ଯେଉଁଥିରୁ ସୂତା ବାହାରି ପଡ଼ିଥିଲା । ତା' ଆଖି ଚାହିଁ ରହିଥିଲା କ୍ଷେତକୁ, ଯେଉଁ ଚାହାଣି ଥିଲା ଗୋଟେ ଆରବଲୋକର ଚାହାଣି ପରି ଉତ୍ତେଜିତ ଆଉ ରକ୍ଷିତୁଲ୍ୟ । ତା' ବୟସ ଅନୁମାନ କରିବା ଥିଲା କଷ୍ଟକର, ହେଲେ ସେ ନିଶ୍ଚୟ ସତୁରିରୁ କମ୍ ନଥିଲା । ତା' ପାଦ ପାଖରେ ପଡ଼ିଥିଲା ବହୁପୁରାତନ, ସ୍ଫୀତ ଏକ ବ୍ରିଫ୍‌କେଶ । ଆଉ ସେଇ ବାକ୍ସ ପାଖରେ ଗୋଟେ ବଲାଲାଇକା ଅର୍ଥାତ ତାରଯୁକ୍ତ ପାରମ୍ପରିକ ଋଷୀୟ ବାଦ୍ୟଯନ୍ତ୍ର । ସାଧାରଣତଃ

ଋଷଦେଶର ଲୋକମାନେ ଏହା ବ୍ୟବହାର କରନ୍ତି । ସେଇଥିରୁ ମୋର ବିଶ୍ୱାସ ହେଲା ଯେ ଲୋକଟି ଋଷୀୟ । ତାର ଚଉଡ଼ା ମେଲାପାଟି ହ୍ୱିସ୍କି ପାଇଁ ତୃଷ୍ଣାର ସୂଚନା ନିଶ୍ଚୟ ଦେଉଥିଲା ।

ଭାଗ୍ୟକୁ ମୁଁ କାଖତଳେ ଧରିଥିଲି ଗୋଟେ ଲୁଆମୋଇ ଭୋଡକା ବୋତଲ ।

"ତୁମେ ବହୁତ ଦୟାଳୁ", ତାକୁ ବୋତଲଟି ବଢ଼ାଇଦେଲାକ୍ଷଣି ସେ କହିଲା । ତା' ଆଖି ଚକଚକ ହେଲା ।

ସେ ନିଜ କୋଟ ପକେଟରୁ ବାହାରକଲା ଗୋଟେ ମଇଳା କାଠମଗ ଆଉ ଅତି ଯତ୍ନରେ ସାର୍ଟର ଗୋଟେ କୋଣ ଧରି ମଗଟିକୁ ଭଲକରି ପୋଛି ସଫାକଲା ।

"ତୁମେ ବେଶ୍ ଦୟାଳୁ", ପୁଣିଥରେ ସେ କହିଲା ଆଉ ଅନ୍ୟ ପକେଟରୁ ବାହାରକଲା ପାପୁଲି ଆକାରର ଗୋଟେ ଶୁଖୁଆ । ଯେମିତି ଗୋଟେ ଯାଦୁଖେଳ ସେ ଦେଖାଇବାକୁ ଯାଉଥିଲା, ସେଇମିତି ଗମ୍ଭୀରତାର ସହ ମାଛଟିକୁ ସେ ମୁହଁପାଖକୁ ଉଠେଇନେଲା ଆଉ ଅତି ସ୍ନେହରେ ମାଛର ପାଟିକୁ ଚୁମ୍ବନ ଦେଲା ।

ତାର ଏ ଅଙ୍ଗଭଙ୍ଗୀ ଦେଖି ମୁଁ ସମ୍ମୋହିତ ହେବାକୁ ଆରମ୍ଭ କରିଥିଲି । ସେ ବୋତଲଟିକୁ ନିଜ ଦାନ୍ତରେ ଫିଟାଇଦେଲା । "ଆଃ, କି ତୃପ୍ତିକର ପାନୀୟ ଏ !" ସେ କହିଲା ।

ଆମେ ପାଳିକରି ଜଣକ ପରେ ଜଣେ ସେଇ ମଗରୁ ପିଉଥିଲୁ । ଭୋଡକାର ପ୍ରଭାବ ଯେତେବେଳେ ଆରମ୍ଭ ହେଲା, ଆମ ଦୁହିଁଙ୍କ ଭିତରେ କଥାବାର୍ତ୍ତା ଅଧିକ ସହଜ ଆଉ ଅଧିକ ଖୋଲା ହୋଇ ଚାଲିଲା । ବୟସ୍କଟି କହିଲା, "ମୁଁ ବିଶ୍ୱାସ କରିପାରୁନାହିଁ ଯେ ତୁମେ ଜଣେ ନାବିକ–ଏକାମ ଅତି ଅସମ୍ମାନଜନକ, ଅତି ଅଳସୁଆ କିମ୍ବା ବିଚାରହୀନ, ତରବରିଆ ଭାବରେ ଶୀଘ୍ର ଧନୀ ହେବାକୁ ଚାହୁଁଥିବା ଲୋକଙ୍କ ପାଇଁ ଏହା ଠିକ୍ ।

ସେତେବେଳକୁ ମୁଁ ଯେହେତୁ ଗୋଟେ ଯୁବ ଓ ଯଶସ୍ୱୀ କ୍ୟାପ୍‌ଟେନ୍, ମୁଁ ରାଜି ହେଲି ନାହିଁ । ଆବେଗାନ୍ୱିତ ହୋଇ ମୁଁ ତା' ସହିତ ତର୍କ କଲି, ଯାହା ଗୋଟେ ଦୁର୍ବଳ ଲୋକ କେବଳ କରିଥାଏ ।

ବୟସ୍କଟି ଧୀରେ ସୁସ୍ଥେ ବିଚାରପୂର୍ବକ କଥା କହୁଥିଲା, ଯେପରି ଆଲୋଚନା ଦୀର୍ଘସମୟ ଚାଲିବ । ଏତେ ଶୀଘ୍ର ବୋତଲଟି ଖାଲି ହୋଇଆସୁଥିବା ଦେଖି ସେ ବୋଧେ ବିବ୍ରତ ହେଉଥିଲା । ହଠାତ୍ ସେ ମାଛରୁ ଅନ୍ତଟା କାଢ଼ିଆଣି ଡିଆସିଲି ଜଳାଇ ପୋଡ଼ିଦେଲା । ଚର୍ବିଗୁଡ଼ା ଆଇଁସିଣିଆ ଗନ୍ଧ ସହ ସେଁ ସେଁ ହେଲା ।

ପଚାରିଲି, "ଏଇଟା କି ମାଛ ସାର୍ ?" ମୁଁ ଆମ ତର୍କ କଥା ପୂରା ଭୁଲିଯାଇଥିଲି ।

ବୁଢ଼ା କିଛି କହିଲା ନାହିଁ । ବଦଳରେ ଧୂଆଁଳିଆ ଚର୍ବିରୁ ଅଧା ବଢ଼େଇଦେଲା, "ମୋର ମନେ ନାହିଁ ଆଉ ମନେରଖିବା ଦରକାର ବି ନାହିଁ । ଏଇଟା ବେଶ୍ ସୁଆଦ ଲାଗୁଛି ନା ?"

ମୋର ତା' କଥାରେ ଅରାଜି ହେବାର ନଥିଲା । ଏ ମାଛ କମ୍ ଧଳା, କମ୍ ମୋଟା ନଥିଲା, ବଢ଼ିଆ ବାସ୍ନା ତାର ଥିଲା ଆଉ ଅନ୍ୟ ଶୁଖିଲା ମାଛଠାରୁ ଅଧିକ ମିଠା ଲାଗୁଥିଲା । ଧୀରେ ପଶ୍ଚିମ ଦିଗରେ ସୂର୍ଯ୍ୟ ବୁଡିବାକୁ ଆରମ୍ଭ କଲେ । ଶେଷବୁନ୍ଦାଯାଏଁ ଶୋଷିନେଇ, ବୁଢ଼ା ଖାଲି ବୋତଲଟିକୁ ଭୂଇଁରେ ଗଡ଼ାଇଦେଲା । ଦେଖେଇ ହେଲାପରି ସେ ଟିକିଟିକି ମାଛଖଣ୍ଡ ପକେଟରୁ କାଢ଼ି ଆଙ୍ଗୁଠି ଅଗରେ ଫିଙ୍ଗିଦେଲା ଆଉ କାଠମଗଟିକୁ ପକେଟରେ ଗୁଞ୍ଜିଦେଲା ।

"ଈଶ୍ୱର ସବୁଜିନିଷ ଆଗରୁ ଭାଗ୍ୟରେ ଲେଖିଥାଆନ୍ତି । ଉଦାହରଣସ୍ୱରୂପ, ସେ ଚାହିଁଥିବାରୁ ତୁମେ ଭଲ ବାଳକଟିଏ ହୋଇଛ । ଧନ୍ୟବାଦ ।" ବୁଢ଼ା ତା' ବ୍ରିଫ୍‌କେଶ୍ ଖୋଲି ହଳେ ବ୍ୟବହୃତ କଳା ଜୋତା କାଢ଼ିଲା । "ମୁଁ ତୁମକୁ ଗୋଟିଏ ଉପହାର ଦେବାକୁ ଚାହେଁ । ଏଇ ଜୋତାହଳକ ଜଣେ ଗ୍ରୀକ୍ ଭବିଷ୍ୟବକ୍ତା ମୋ ପୂର୍ବପୁରୁଷଙ୍କୁ ଦେଇଥିଲେ । ଏକଦା ମୋ ପରିବାର ଥିଲା ବିରାଟ ଆଉ ଅହଙ୍କାରୀ, ହେଲେ ଆଜି ମୁଁ ଏହାର ଏକମାତ୍ର ଜୀବିତ ଅଧିକାରୀ ମାନେ ଉତ୍ତରାଧିକାରୀ । ଏଇ ହଳକ ମୁଁ ତୁମକୁ ଦେବାକୁ ଚାହେଁ ।"

ମୁଁ ମୋ ହାତକୁ ଚିମୁଟି ଦେଲି, ନିଶ୍ଚିତ ହେଲି ଯେ ମୁଁ ସ୍ୱପ୍ନ ଦେଖୁନଥିଲି, ଜୋତାହଳକ ମୁଁ ନେଲି ।

ସେ ଦୁଇଟି ପ୍ରକୃତରେ ବହୁତ ପୁରୁଣା ଥିଲା, ହେଲେ ଠିକ୍‌ଠାକ୍ ଥିଲା ; ତାହା ତିଆରି ହୋଇଥିଲା ଗୋଟେ ମୋଟା ଅମସୃଣ ଚମଡ଼ାରେ, ଯେଉଁଥିରୁ କେମିତି ଗୋଟେ ବିଶେଷ ପଶୁର ବାସ୍ନା ବାହାରୁଥିଲା । ବୋଧେ ସେଗୁଡ଼ିକ ଗୋଟେ ପ୍ରାଚୀନ ପନ୍ଥାରେ ଶୁଖା ହୋଇଥିଲା ଯେଉଁ ପନ୍ଥା ଆଜି ହଜିଯାଇଛି । ସୂର୍ଯ୍ୟକିରଣ ତେର୍ଚ୍ଛାହୋଇ ଜୋତା ଉପରେ ପଡ଼ିଲା ଆଉ ଧୂଳିର ଗୋଟେ କୁଜ୍‌ଝଟିକା ପାଞ୍ଚଟି ମୂଳରଙ୍ଗ ସହିତ ଉଦ୍ଭାସିତ ହୋଇ ଉଠିଆସିଲା । ଏହା ଥିଲା ମୋ ଜୀବନରେ ପ୍ରଥମଥର ଜାଣିବା-ସମୟର ଧୂଳିକୁ ଜାଣିବା ।

ଜୋତା ଦୁଇଟିକୁ ମୁଁ ଉପରତଳ କଲି । ଜୋତା ଗୋଇଠିରେ ଖୋଦେଇ ହୋଇଥିଲା କେତେଗୁଡ଼ିଏ ଅଦ୍ଭୁତ ଆକୃତି ଆଉ ରହସ୍ୟମୟ ଅଙ୍କାବଙ୍କା ଗୁଡ଼ିଏ ଅକ୍ଷର । ମୁଁ ମୁଣ୍ଡ ଉଠେଇଲି ବୁଢ଼ାକୁ ପଚାରିବାକୁ ଯେ ଏହା କେଉଁ ଭାଷାରେ ଲେଖାହୋଇଛି । ହେଲେ ମୋତେ ଆଶ୍ଚର୍ଯ୍ୟ କରି ବୁଢ଼ା ଅନ୍ତର୍ଦ୍ଧାନ ହୋଇଯାଇଥିଲା ।

ମୋର ଫେରିବା ଏତେ ଲମ୍ବା ଆଉ ବିଚିତ୍ର ଥିଲା ଯେ ମୁଁ ଭାବିଲି ଜାହାଜକୁ ଫେରିବା ବାଟ ପାଇବିନି । ଗୋଟେ ତିନିକୋଣିଆ ଛକରେ ମୁଁ ପହଞ୍ଚିଲି । କୁଆଡୁ ଲୋକଟିଏ ମୋ ପାଖରେ ପହଞ୍ଚି କହିଲା, "ତୁମର କୌଣସି ଜୋତା ବିକିବାକୁ ଅଛି କି ? ମୁଁ ହଳେ କିଣିବାକୁ ଚାହେଁ ।"

ମୁଁ ମୁଣ୍ଡ ହଲେଇ ମନାକରିବା ଆଗରୁ ଲୋକଟି କହିଲା, "ମତେ ମନାକର ନାହିଁ । ମୁଁ ତୁମକୁ ତିନିଗୁଣା ଦାମ୍ ଦେବି । ଈଶ୍ୱରଙ୍କ ନାମରେ କହୁଛି, ଚାରିବର୍ଷ ହେଲାଣି ଜଣେ ବି ଜୋତା ବିକାଳି ଏଠାକୁ ଆସିନାହିଁ ; ଚାରିବର୍ଷ ଭିତରେ ଗୋଟେ ବି ଜାହାଜ ଏଠାରେ ଲାଗିନାହିଁ । ଏ ଦ୍ୱୀପଟିକୁ ସମସ୍ତେ ନିଶ୍ଚୟ ଭୁଲିଗଲେଣି ।" ସେ ନିଜ ଜୋତା ଦେଖାଇଲା, ଜୋତାର ଗୋଇଠି ଉଡ଼ିଯାଇଥିଲା ଆଉ ଏକଦମ ମୋଟା ଝୋଟରେ ବହୁତ ଜାଗା ମରାମତ ହୋଇଥିଲା । "ଏ ଜୋତାକୁ ଅସଂଖ୍ୟଥର ମତେ ସିଲେଇ କରିବାକୁ ପଡ଼ିଛି । ଏସବୁ ଭୟଙ୍କର ଅନାବୃଷ୍ଟି ଯୋଗୁଁ ହୋଇଛି ଯାହା ଆମ ପରିପୁଷ୍ଟ ଅଙ୍ଗୁର ବଗିଚାକୁ ନଷ୍ଟ କରିଦେଲା ।"

ମୁଁ ତା'ର ବାରମ୍ବାର ଅନୁରୋଧକୁ ବହୁତ କଷ୍ଟରେ ଏଡ଼ାଇ ରକ୍ଷାପାଇ ପଳେଇଆସିଲି । ହେଲେ କାଜୁବଗିଚାରେ ଆଉଜଣେ ଲୋକ ମତେ ଭେଟିଲା, ବୁଢ଼ା କୁଜା ଲୋକଟି ଗୋଟେ ବାଡ଼ି ଧରିଥିଲା । ବୁଢ଼ାର ମୁହଁ ଥିଲା ଖାଲୁଆ ଓ ପାଣ୍ଡୁର, ତା' ବାଳ କାନ୍ଧ ଉପରେ ଝୁଲୁଥିଲା । ଚୀନ୍ ସିଲ୍‌କର ଲମ୍ବା ଗାଉନଟିଏ ସେ ଆଣ୍ଠୁଯାଏଁ ପିନ୍ଧିଥିଲା ଆଉ ତା' ଅଣ୍ଟା ପାଖରେ ଝୁଲୁଥିବା ଥଳିଟି ବି ଥିଲା ସିଲ୍‌କର । ତା ଗଳାରୁ ଓହଳିଥିଲା ଗୁଡ଼ାଏ ଚେନ୍ ।

ମୁଁ ନିଜେ ଲାପକ୍, ସେ ଏପରି ଗମ୍ଭୀରଭାବରେ କହିଲା ଯେ ମୁଁ ବୁଝିପାରିଲି ସେ ଏ ଅଞ୍ଚଳର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି, ଯଦିଓ ମୋର ଆଦୌ ଧାରଣା ନଥିଲା ସେ କିଏ । ସେ କହିଲା, "ତୁମେ ମୋତେ ବୁଢ଼ା ଏଣ୍ଟନ୍‌ର ଜୋତାହଳକ ବିକିବ କି ?"

ମୁଁ ଅନୁମାନ କରିନେଲି ଏଣ୍ଟନ ଥିଲା ପୂର୍ବର ଜୋତା ମାଲିକ । ମୁଁ ମନାକରିବା ପରେ, ଲାପକ୍ ଭଦ୍ରଭାବରେ କେବଳ ମୁଣ୍ଡ ନୁଆଁଇଦେଲା ।

"କି ଦୁଃଖର କଥା ! ଅଥଚ ମୁଁ ଦୁଇଲକ୍ଷ ଦେଇପାରିବି କିମ୍ବା ଅଧିକ । ଅର୍ଥ ମୋ ପାଇଁ କିଛି ନୁହେଁ ।"

ସେ ତା' ଟଙ୍କା ଥଳିଟିକୁ ଆଉଁସି ପକେଇଲା । ମୁଁ ସୁନାମୋହର ଝଣଝଣ ଶବ୍ଦ ଶୁଣିପାରିଲି ।

ଦୁଇଲକ୍ଷ ! ମୁଁ ପାଞ୍ଚବର୍ଷ କାମ କଲେ ବି ସେତେ ଅର୍ଥ କେବେ କମେଇପାରିବି ନାହିଁ । ହେଲେ ଏଣ୍ଟନ୍‌ର ଉପହାର ବି କେବଳ ହଳେ ଜୋତା ନଥିଲା । ଲୋକଟିକୁ ବିଦାୟ ଜଣାଇ ମୁଁ ମୋ ଯାତ୍ରାରେ ଆଗେଇଲି ।

ପାହାଡ଼ର ସର୍ବୋଚ୍ଚ ଶିଖରରେ ପହଞ୍ଚିଲାବେଳକୁ, କୁକୁର ଭୁକିବାର ଗର୍ଜନରେ ମୁଁ ପଛକୁ ବୁଲିପଡ଼ିଲି । ଲାଲ ଲହଲହ ଜିଭ କାଢ଼ି, ଉତ୍ୟକ୍ତ ଗୋଟେ କୁକୁର, ବାଛୁରୀଟେ ପରି ଉଚ୍ଚ, ମୋ ଆଡ଼କୁ ଧାଇଁ ଆସୁଥିଲା କାଜୁ ଜଙ୍ଗଲରୁ, ତା ପଛରେ ଠେଙ୍ଗା ଧରି ପାଞ୍ଚଜଣ ବଳିଷ୍ଠ ଲୋକ । ସେମାନେ ସମସ୍ତେ ଦେଖାଯାଉଥିଲେ ଉତ୍ତେଜିତ ଶତ୍ରୁପରି ।

ସେମାନଙ୍କ ଉଦ୍ଦେଶ୍ୟ ଜାଣିନପାରି, ମୁଁ ଗଡ଼ାଣିରେ ଦୌଡ଼ି ଲାଗିଲି କୂଳଯାଏଁ । ମୁଁ କାଣେନି ସେମାନେ ପଛରୁ ଗୋଡ଼ାଉଥିଲେ କି ନାହିଁ, ମୁଁ ପଛକୁ ଚାହିଁନଥିଲି । ମୋ ଜାହାଜ ଭିତରେ ପଶିଯାଇ, ପୋତାଚାଳକମାନଙ୍କୁ ଜାହାଜ ଚଳେଇନେବାକୁ ଆଦେଶ ଦେଲି ।

ଜୋତା ବିଷୟ ମୁଁ କାହାକୁ କହିନଥିଲି । ତାହା ମୋର ମୋହିନୀଶକ୍ତି ହୋଇଯାଇଥିଲା । ପ୍ରଥମେ ତାହାକୁ ମୁଁ ଘରେ ରଖିଥିଲି । କିନ୍ତୁ ଦିନେ ରାତିରେ ସାଗରରେ ଥାଇ ମୁଁ ଏଣ୍ଟନକୁ ସ୍ୱପ୍ନରେ ଦେଖିଲି, ଗୋଟିଏ ଜୋତାରୁ ବାହାରି ସେ ମୋ ଆଗରେ ଠିଆହେଲା ଆଉ କଟମଟ ଆଖିରେ ଭର୍ତ୍ସନା କଲାପରି ମତେ ଅନେଇଲା । ଏହା ଏକ ଦୁଃସଂକେତ ବୋଲି ମୁଁ ଜାଣିଥିଲି ଏବଂ ନିକଟସ୍ଥ ବନ୍ଦରରେ ପହଞ୍ଚିଲାକ୍ଷଣି, ପ୍ରଥମ ବସ୍ ଧରି ମୁଁ ଘରକୁ ଗଲି । ସେତେବେଳେ, ମୁଁ ମୋର ପତ୍ନୀ ଓ ସନ୍ତାନମାନଙ୍କ ଦ୍ୱାରା ପରିତ୍ୟକ୍ତ ହୋଇନଥିଲି । ଘରେ ଜାଣିଲି ଯେ ପିଲାମାନେ ଜୋତାହଳକୁ ପ୍ରାୟ ଖଣ୍ଡ ଖଣ୍ଡ କରି କାଟିପକାଇଛନ୍ତି ଖେଳଣା କରିବେ ବୋଲି । ଗୋଟେ ପ୍ଲାଷ୍ଟିକ୍ ବ୍ୟାଗରେ ଯତ୍ନକରି ତାହାକୁ ରଖି ଜାହାଜକୁ ନେଇଆସିଲି ଓ ତାଠାରୁ ଅଧିକ ଯତ୍ନରେ ସେମାନଙ୍କୁ ମୋ ପୋଷାକ ଆଲମିରା ଭିତରେ ରଖିଦେଲି ।

ମୋର ଅବିରତ ଭ୍ରମଣ ଶେଷରେ ମୋ ଠାରୁ ମୋ ସ୍ତ୍ରୀ, ସନ୍ତାନ ଓ ଧନସମ୍ପତ୍ତି ଲୁଟିନେଲା । ଯାହାହେଉ, ୧୯୮୫ ଯାଏଁ ମୁଁ ମୋର ଭଲ ସ୍ୱାସ୍ଥ୍ୟ ଓ ଜୋତା ଦୁଇଟି ଅକ୍ଷତ ଅବସ୍ଥାରେ ରଖିବାକୁ ସମର୍ଥ ହୋଇଥିଲି, ଯେତେବେଳେ ବା–ଗାରୁ ତୁଙ୍ଗକ୍ୱାଙ୍ଗକୁ ଜଳଯାତ୍ରା କାଳରେ ମୋ ଜାହାଜଟି ବୁଡ଼ିଗଲା । ମୁଁ କାଣିନଥିଲି ମୋ ନାବିକମାନଙ୍କ ମଧ୍ୟରୁ କିଏ ବଞ୍ଚିଥିଲେ ଆଉ କିଏ ବୁଡ଼ିଯାଇଥିଲେ । ମୋର ସୌଭାଗ୍ୟ ଥିଲା ଯେ ଗୋଟିଏ ଭେଳା ମୋତେ ହନ୍‌ହାକ୍ ଦ୍ୱୀପରେ ପହଞ୍ଚାଇଦେଲା । କେବଳ ଗୋଟିଏ ଜିନିଷ ମୁଁ ପାଖରେ ରଖିପାରିଥିଲି । 'ବୁଢ଼ା ଏଣ୍ଟନ୍‌ର ଉପହାର ।'

ହନ୍‌ହାକ୍ ଦ୍ୱୀପଟି ମୁଖ୍ୟ ସ୍ଥଳଭାଗରୁ ପୂରା ଛଅଦିନର ଜଳପଥ ଥିଲା । ଲାଭକ୍ଷତି ବିଚାର କରି ମୁଁ ସ୍ଥିର କଲି ଯେ ଜୋତାହଳକ ମୁଁ ବିକିଦେବା ଠିକ୍ ହେବ । ତାହେଲେ ଗୋଟେ ଭଲ ନୌକା, ଖାଦ୍ୟ, ଆଉ କିଛି ଦରକାରୀ ଜିନିଷ କିଣି ସ୍ଥଳଭାଗକୁ ଯାଇପାରିବି । ହେଲେ ମୋର ଏ ଭାବନା କାର୍ଯ୍ୟକାରୀ ହେବାର ସମ୍ଭାବନା ଇ ନଥିଲା କାରଣ ହନ୍‌ହାକ୍ ଦ୍ୱୀପର ବାସିନ୍ଦାମାନେ ଖାଲିପାଦରେ ଚାଲିବାରେ ଅଭ୍ୟସ୍ତ ଥିଲେ । କେତେଦିନପରେ, କେହିଜଣେ ପ୍ରସ୍ତାବ ଦେଲା ଯେ ମୁଁ ଯାଇ ମିଷ୍ଟର ବାସାଙ୍କୁ ଦେଖାକଲେ ଭଲହେବ । ବାସା ଥିଲେ ଉପନିବେଶରେ ରହୁଥିବା ଜଣେ ପୂର୍ବତନ ସୈନିକ, ଯିଏ ଆଫ୍ରିକାରେ ଥିଲାବେଳେ ମୁଣ୍ଡରେ ଆଘାତ ପାଇଥିଲେ । ସେଇ ଆଘାତରୁ ଏଯାଏଁ ଅପସ୍ମାର ରୋଗରେ ଆକ୍ରାନ୍ତ ହୋଇଅଛନ୍ତି । ବାସା ଜୋତା ହଳକୁ ଖୁବ୍ ପ୍ରଶଂସା କଲେ ।

ପରସ୍ପର ଭିତରେ ଆମର ବୁଝାମଣା ହୋଇଗଲା ପରେ, ବାପା ତାଙ୍କ ପୁଅକୁ ଘର ଭିତରକୁ ଡକେଇଲେ । ପୁଅକୁ ଆଦେଶ ଦେଲେ କୋତାହଳକ ଉପର ମହଲାକୁ ନେଇ ଆସିବାକୁ ଆଉ ତାପରେ ମତେ ନୌକାରେ ସ୍ଥଳଭାଗକୁ ବାହିନେବାକୁ । ଥରେ ସେଠାରେ ପହଞ୍ଚିଗଲାପରେ, ମୁଁ ନୌକାରେ ଖାଇଥିବା ଖାଦ୍ୟର ମୂଲ୍ୟ ତାକୁ ଦେଇଦେବି ।

ନୌଯାତ୍ରା ପରେ, ପ୍ରାୟ ଚାରିମାସରୁ ଅଧିକକାଳ ମୁଁ ରୋଗରେ ପୀଡ଼ିତ ହୋଇ ପଡ଼ିରହିଲି । ଆଉ ଆଜିଯାଏଁ ମୋ ଗୋଡ଼ ଦୁଇଟି ଚଳତ୍‌ଶକ୍ତିହୀନ ହୋଇରହିଛି ।

୮

# ଜେନେରାଲ ଯେବେ ଅବସର ନେଲେ

## ଗୁଏଁ ହୁୟେ ଥିଏପ୍

### ଏକ

ଏଇ କାହାଣୀଟି ଲେଖିଲାବେଳକୁ ମୋ ଭିତରେ ଏଭଳି କେତେ ଉଦ୍‌ବେଗ ଉଙ୍କିମାରୁଛି ଯାହାକୁ ସମୟ ମୋର ଅନେକ ବନ୍ଧୁଙ୍କ ମନରୁ ପୋଛି ଦେଇଛି, ଯାହା ମୋ ବାପାଙ୍କ କବରର ଶାନ୍ତି ଏକଦା ନଷ୍ଟ କରି ଦେବାଯାଏଁ ଯାଇଥିଲା । ମୁଁ ଯେପରି ବାଧହେଉଛି ଏହାକୁ ପୁଣି ମନେପକାଇବା ପାଇଁ କାରଣ ମୋ ବାପାଙ୍କ ସ୍ମୃତିକୁ ନିରାପଦ ରଖିବାକୁ ହେବ । ସେଇଥିପାଇଁ ପାଠକଙ୍କୁ ମୋର ଅନୁରୋଧ ମୋ ଅସମର୍ଥ ଲେଖାକୁ କ୍ଷମା କରିଦେବେ ।

ମୋ ବାପା ଥୁଆଁ ଥିଲେ ଗୁୟେଁ ପରିବାରର ଜ୍ୟେଷ୍ଠ ସନ୍ତାନ । ଗୁୟେଁ ପରିବାର ବହୁତ ବଡ଼ ଥିଲା, ଏହାର ପୁରୁଷ ସନ୍ତାନମାନେ ଗ୍ରାମର ସମସ୍ତ ଅନ୍ୟ ପରିବାରଠାରୁ ସଂଖ୍ୟାରେ ଅଧିକ ଥିଲେ । ବୋଧେ କେବଳ ଭୁ ପରିବାରକୁ ଛାଡ଼ିଦେଲେ, ମୋ ଜେଜେବାପା କନ୍‌ଫୁସୀୟ ପଣ୍ଡିତ ହେବାପାଇଁ ଗାଁ ଛାଡ଼ିଥିଲେ ଆଉ ପରେ ଫେରିଆସିଥିଲେ ଶିକ୍ଷାଦେବାକୁ । ତାଙ୍କର ଦୁଇଟି ସ୍ତ୍ରୀ ଥିଲେ । ତାଙ୍କ ପ୍ରଥମ ପତ୍ନୀ ମୋ ପିତାଙ୍କୁ ଜନ୍ମଦେବାର ଅଳ୍ପଦିନରେ ମୃତ୍ୟୁବରଣ କରିଥିଲେ, ତେଣୁ ସେ ଆଉଥରେ ବିବାହ କଲେ । ତାଙ୍କ ଦ୍ୱିତୀୟ ପତ୍ନୀ ଥିଲା ଏକ ଲୁଗା ରଙ୍ଗ କରିବା ବେପାରୀ । ମୁଁ କେବେ ତାକୁ ଦେଖି ନାହିଁ । ତା' ବିଷୟରେ କିନ୍ତୁ ଶୁଣିଛି ଯେ ସେ ଥିଲା ଅତି ନିଷ୍ଠୁର ପ୍ରକୃତିର । ସାବତ ମାଆ ପାଖରେ ରହି ମୋ ବାପା ଏପରି ତିକ୍ତ ଶୈଶବ ବିତାଇଲେ ଯେ ବାରବର୍ଷବେଳକୁ ସେ ଘରଛାଡ଼ି ପଳାଇଯାଇ ସୈନ୍ୟବାହିନୀରେ ଯୋଗଦେଲେ ଆଉ କ୍ୱଚିତ ଘରକୁ ଆସୁଥିଲେ ।

ଅବଶ୍ୟ କିଛି ବର୍ଷ ପରେ ସେ ଘରକୁ ଫେରିଲେ ବିବାହ କରିବା ପାଇଁ । ହେଲେ ଏ ବିବାହ ପ୍ରୀତିସଂଯୁକ୍ତ ନଥିଲା । ତାଙ୍କ ହାତରେ ଥିଲା ମାତ୍ର ଦଶଦିନର ଛୁଟି ଆଉ

ପ୍ରଚୁର କାମର ଦାୟିତ୍ୱ । ପ୍ରେମର କେତେକ ଆବଶ୍ୟକତା ଥାଏ, ଆଉ ସବୁଠାରୁ ବଡ଼ ଆବଶ୍ୟକତା ହେଲା ସମୟ ।

ମୁଁ ବଢ଼ିବା ଭିତରେ ବାପାଙ୍କ ବିଷୟରେ ବେଶୀ କିଛି ଜାଣିନଥିଲି । ମୁଁ ନିଶ୍ଚିତ ଯେ ମୋ ମାଆ ବି ସେତିକି ଜାଣିଥିଲା ଯେତିକି ମୁଁ ଜାଣିଥିଲି । କାରଣ ବାପାଙ୍କ ସାରାଜୀବନ ଯୁଦ୍ଧପାଇଁ ଉତ୍ସର୍ଗ ଥିଲା ।

ମୁଁ ଚାକିରି କଲି, ବାହାହେଲି, ପିଲାପିଲି ହେଲେ । ମାଆ ବୁଢ଼ୀ ହେଲା । ବାପା ତଥାପି ବହୁଦୂରରେ ସାମରିକ ଅଭିଯାନରେ ବ୍ୟସ୍ତ ଥିଲେ । ବେଳେବେଳେ ଗାଁ ବାଟଦେଇ ବାପା ଯିବାଆସିବା କରନ୍ତି, ହେଲେ ଘରେ ବହୁତ କମ୍ ସମୟ ରହନ୍ତି । ତାଙ୍କ ଚିଠି ବି ବହୁତ ଛୋଟ, ଯଦିଓ ଦୁଇଧାଡ଼ି ମଝିରେ ଥିବା ଭାବନାକୁ ପଢ଼ି ଏଥିରେ ଥିବା ସ୍ନେହ, ପରିବାର ପ୍ରତି ଆଗ୍ରହକୁ ମୁଁ ଅନୁଭବ କରିପାରୁଥିଲି ।

ମୁଁ ଥିଲି ବାପାଙ୍କ ପ୍ରଥମ ସନ୍ତାନ, ଆଉ ମୁଁ ବାପାଙ୍କୁ ସବୁପାଇଁ ଧନ୍ୟବାଦ ଦେବାକୁ ଚାହେଁ । ମୁଁ ଅଧିକ ଶିକ୍ଷାଲାଭ ସହିତ ବିଦେଶ ଯାତ୍ରା କରିପାରିଥିଲି । ପରିବାରର ଆର୍ଥିକ ସ୍ୱଚ୍ଛଳତା ସମ୍ଭବ ହୋଇପାରିଥିଲା କେବଳ ସେ କରିଥିବା ବ୍ୟବସ୍ଥା ଯୋଗୁଁ । ହାନୋଇ ସହର ବାହାରେ ମୋ ଘର । ମୁଁ ଏହାକୁ ମୋ ବାପାଙ୍କର ଜଣେ ଜଣାଶୁଣା ଆର୍କିଟେକ୍ଟ ବନ୍ଧୁଙ୍କ ପ୍ଲାନ୍ ଅନୁସାରେ କରିଥିଲି । ସେ ଥିଲେ ଜଣେ କର୍ଣ୍ଣେଲ ଆଉ ତାଙ୍କର କେବଳ ବାରାକ୍ ଗୃହନିର୍ମାଣର ଅଭିଜ୍ଞତା ଥିଲା ।

ସତୁରିବର୍ଷ ବୟସରେ, ମୋ ବାପା ମେଜର-ଜେନେରାଲ ଭାବରେ ଅବସର ନେଲେ ।

ମୁଁ ଯଦିଓ ଜାଣିଥିଲି ଯେ ତାଙ୍କ ଅବସରବେଳ ପାଖେଇ ଆସୁଛି, ତଥାପି ସେ ଯେତେବେଳେ ଘରକୁ ଆସିଲେ ମୁଁ ଚକିତ ହୋଇଥିଲି । ମୋ ମା' ବହୁ ଆଗରୁ ମାନସିକ ରୋଗଗ୍ରସ୍ତ ହୋଇସାରିଥିଲା । ସେ ଥିଲା ବାପାଙ୍କଠାରୁ ଛଅବର୍ଷ ବଡ଼ । ଏଣୁ ତାଙ୍କ ଆସିବାକୁ ନେଇ ଘରେ ଏକମାତ୍ର ମୋର ହିଁ ସ୍ୱତନ୍ତ୍ର ଆବେଗ ଥିଲା । ଅନ୍ୟମାନେ ତଥାପି ପିଲାଥିଲେ । ମୋ ସ୍ତ୍ରୀ ତାଙ୍କ ବିଷୟରେ ବହୁତ କମ୍ ଜାଣିଥିଲା କାରଣ ଆମ ବିବାହବେଳେ ଯୁଦ୍ଧଯୋଗୁଁ ଦୀର୍ଘଦିନ ସେ ଆମ ସହ ସମ୍ପର୍କ ରଖିପାରି ନଥିଲେ । ତଥାପି ପରିବାର ଭିତରେ ମୋ ବାପାଙ୍କର ସମ୍ମାନଜନକ ଆଉ ଗର୍ବ କଲାଭଳି ସ୍ଥାନ ରହିଥିଲା । ଆମର ସମସ୍ତ ସମ୍ପର୍କୀୟ ଆଉ ଗାଁର ସବୁଲୋକ ତାଙ୍କ ଖ୍ୟାତିକୁ ସମ୍ମାନର ସହ ମନେରଖିଥିଲେ ।

ବାପା ଘରକୁ ଫେରିଲେ ବହୁତ ଅଳ୍ପ ଜିନିଷ ଧରି । ତାଙ୍କ ସ୍ୱାସ୍ଥ୍ୟ ଭଲଥିଲା, ସେ କହିଲେ, "ମୋ ଜୀବନର କାମ ସରିଗଲା ।" ମୁଁ କହିଲି, 'ହଁ', ସେ ହସିଲେ । ଗୋଟେ ଆନନ୍ଦମୟ ଉତ୍ତେଜନା ଘରସାରା ଖେଳିଗଲା ଆଉ ଦୀର୍ଘଦିନରୁ ତାଙ୍କୁ ସ୍ୱାଗତ

କରିବାର ଇଚ୍ଛା ସମସ୍ତଙ୍କୁ ଦୁଇ ସପ୍ତାହ ଧରି ଆମୋଦିତ କରି ରଖିଲା । ଏଇଭଳି ଆମ ବିଶୃଙ୍ଖଳିତ ଜୀବନରେ, ଦିନେ ଦିନେ ଆମେ ରାତ୍ରି ଭୋଜନ ମଧ୍ୟରାତ୍ରି ପରେ କରୁଥିଲୁ । ଘରକୁ ଲୋକଙ୍କର ଯିବାଆସିବା ଲାଗିରହିଥିଲା । ମୋ ସ୍ତ୍ରୀ କହିଲା, "ଏମିତି ଚଳିପାରିବ ନାହିଁ ।" ମୁଁ ଗୋଟାଏ ଘୁଷୁରି ମାରି ଗାଁସାରା ଲୋକଙ୍କୁ ଆମ ଖୁସିରେ ଭାଗ ନେବାକୁ ଆମନ୍ତ୍ରିତ କରିବାକୁ ଗଲି । ଆମ ଗାଁଟି ସହର ପାଖରେ ଥିଲେ ବି ଗାଁଗହଳିର ପରମ୍ପରା ତଥାପି ଥିଲା ଖୁବ୍ ମଜଭୁତ ।

ମାସେ ପରେ ହିଁ କେବଳ ମୁଁ ଶେଷରେ ମୋ ବାପାଙ୍କ ସାଙ୍ଗେ ବସି ପରିବାର ବିଷୟରେ ଆଲୋଚନା କରିବାର ସୁଯୋଗ ପାଇଲି ।

## ଦୁଇ

ଏଇଠି କିଛି କହିବା ଆଗରୁ, ମୋ ପରିବାର ବିଷୟରେ କିଛି କହେ ।

ମୋତେ ସଇଁତିରିଶ ବର୍ଷ, ମୁଁ ଫିଜିକ୍ସ ଇନ୍‌ଷ୍ଟିଚ୍ୟୁଟ୍‌ରେ ଇଞ୍ଜିନିୟର । ମୋ ସ୍ତ୍ରୀ ଥୁଏ, ଡାକ୍ତରାଣୀ ମାଟର୍ନିଟି ହସ୍ପିଟାଲରେ । ଆମର ଦୁଇଝିଅ, ବଡ଼ଟି ଚଉଦବର୍ଷର, ଅନ୍ୟଟିକୁ ବାରବର୍ଷ । ଆଗରୁ ଯାହା କହିଛି, ମୋ ବୁଢ଼ୀମାଆ ମାନସିକ ଅସ୍ୱଷ୍ଟତା ଯୋଗୁଁ ସେଇ ଗୋଟିଏ ଜାଗାରେ ଦିନସାରା ବସିଥାଏ ।

ଏହାବ୍ୟତୀତ ଘରେ ମି.କୋ ଆଉ ତାଙ୍କ ଝିଅ ମିସ୍ ଲାଇ ।

ମି.କୋ ଷାଠିଏ ବର୍ଷର, ତାଙ୍କର ଘର 'ଥାନ୍ ହୋ'ରେ । ଅଗ୍ନିକାଣ୍ଡରେ ଘର ପୋଡ଼ିଗଲା ପରେ ବାସହୀନ ଅବସ୍ଥାରେ ତାଙ୍କୁ ଓ ତାଙ୍କ ଝିଅକୁ ମୋ ସ୍ତ୍ରୀ ଭେଟିଥିଲା । ସେମାନେ ଭଲଲୋକ ଜାଣି ମୋ ସ୍ତ୍ରୀ ଦୟାକରି ଉଭୟଙ୍କୁ ଆଣି ଆମଘରେ ରହିବା ବ୍ୟବସ୍ଥା କରାଇଥିଲା । ସେମାନେ ପଛପଟ ବାହାରଘରେ ଅଲଗା ରହନ୍ତି, କିନ୍ତୁ ମୋ ସ୍ତ୍ରୀ ସେମାନଙ୍କୁ ଖାଦ୍ୟ ଯୋଗାଇଦିଏ । ସେମାନେ ପରିବାରର ରେଜେଷ୍ଟ୍ରିଭୁକ୍ତ ସଦସ୍ୟ ହୋଇନଥିବାରୁ, ସହରର ଅନ୍ୟଲୋକଙ୍କ ପରି ସରକାର ପ୍ରଦତ୍ତ ରେସନ ଓ ଅନ୍ୟ ଆବଶ୍ୟକୀୟ ଜିନିଷ ପାଆନ୍ତି ନାହିଁ ।

ମି.କୋ ଭଦ୍ର ଆଉ ଧୈର୍ଯ୍ୟଶୀଳ । ଉଦ୍ୟାନ, ଘୁଷୁରି, କୁକୁଡ଼ା, କୁକୁରମାନଙ୍କ ଦାୟିତ୍ୱ ସେ ନିର୍ବାହ କରନ୍ତି । ମୋ ସ୍ତ୍ରୀ ଆଲସେସିଆନ କୁକୁର ପାଳନ ବ୍ୟବସାୟ କରେ । ପ୍ରଥମେ ମୁଁ ଜାଣିନଥିଲି ଯେ ଏ ବ୍ୟବସାୟ ଏତେ ଲାଭଜନକ । ପରେ ଏହା ଆମ ଆୟର ମୁଖ୍ୟସ୍ରୋତ ହୋଇଗଲା । ମିସ୍ ଲାଇ ଅତି ସରଳ ହେଲେ ବି ଘରକାମରେ ଧୂରନ୍ଧର । ମୋ ସ୍ତ୍ରୀ ତାକୁ ଘୁଷୁରି ମାଂସ, ଛତୁ, କୁକୁଡ଼ା ମାଂସ ରାନ୍ଧିବା ଶିଖାଇଦେଇଥିଲା । ମିସ୍ ଲାଇ କିନ୍ତୁ ଏସବୁ କେବେ ଖାଏ ନାହିଁ ଯଦିଓ ରାନ୍ଧେ ।

ଘରକାମ ପାଇଁ ମୁଁ, ମୋ ସ୍ତ୍ରୀ କିମ୍ବା ପିଲାମାନଙ୍କୁ ବ୍ୟସ୍ତହେବାକୁ ପଡ଼େନାହିଁ । ରୋଷେଇଠାରୁ ବାସନଧୁଆଯାଏଁ ସବୁକାମ ମି.କୋ ଓ ତାଙ୍କ ଝିଅ ଦେଖନ୍ତି । ଆମ ବ୍ୟୟ ଅଟକଳ ଉପରେ ବେଶ କଡ଼ା ଲଗାମ ଲଗାଇ ଦେଇଥାଏ ମୋ ସ୍ତ୍ରୀ । ମୁଁ ମୋ ଇଂଜିନିୟରିଂ କାମରେ ବହୁତ ବ୍ୟସ୍ତ ଥାଏ ।

ଆଉ ଗୋଟେ କଥା, ମୋ ସ୍ତ୍ରୀ ଆଉ ମୋର ସମ୍ପର୍କ ବେଶ୍ ମଧୁର । ଥୁଏ ଉଚ୍ଚଶିକ୍ଷିତା ଆଉ ଗୋଟେ ଆଧୁନିକ ସ୍ତ୍ରୀର ଜୀବନ ବଞ୍ଚେ । ଆମର ନିଜର ସ୍ୱତନ୍ତ୍ର ବିଚାରଧାରା ଅଛି ଆଉ ଜୀବନ ପ୍ରତି ଆମର ଦୃଷ୍ଟିକୋଣ ଅପେକ୍ଷାକୃତ ସରଳ । ପରିବାରର ଆୟ ଉପରେ ଥୁଏର ଯେପରି କଣ୍ଟ୍ରୋଲ ପିଲାଙ୍କ ପାଠପଢ଼ାରେ ସେହିପରି ନିୟନ୍ତ୍ରଣ । ମୋ ନିଜକୁ ଦେଖି ମୁଁ ଭାବେ ଯେମିତି ମୁଁ ପୁରୁଣାକାଳିଆ ରୀତିନୀତିର, ଅସହଜ ଆଉ ବିରୋଧାଭାସରେ ପରିପୂର୍ଣ୍ଣ ।

## ତିନି

ହଁ, ମୋ ବାପାଙ୍କ ପାଖରେ ବସି ପରିବାର ବିଷୟରେ ମୁଁ ଆଲୋଚନା କରୁଥିଲି । ସେ କହିଲେ, "ଏବେ ତ ମୁଁ ଅବସର ନେଲି, କ'ଣ କରିବି ମୁଁ ।" "ତୁମ ସ୍ମୃତିକଥା ଲେଖ", ମୁଁ କହିଲି । 'ନା', ସେ କହିଲେ । "ପାରା ପାଳନ କର", ମୋ ସ୍ତ୍ରୀ କହିଲା । ସହରରେ ବହୁତ ଲୋକ ପାରା, କୋଇଲି, ଭଦଭଦଳିଆ ପାଳୁଥିଲେ । "ସେମାନଙ୍କ ସଂଖ୍ୟା ବଢ଼ାଇ ଟଙ୍କା ରୋଜଗାର କରିବି ?" ମୋ ବାପା ପଚାରିଲେ । ମୋ ସ୍ତ୍ରୀ କିଛି କହିଲାନି । ବାପା କହିଲେ, ହଉ ଦେଖିବା ।

ମି.କୋ ଆଉ ମିସ୍ ଲାଇ ଓଗେର ଘରର ସମସ୍ତଙ୍କୁ ବାପା ଚାରିମିଟର ଲେଖା ମିଲଟାରୀ କପଡ଼ା ଦେଲେ । ମୁଁ ଥଟ୍ଟା କଲି, "ତୁମେ ସମାନ ଅଧିକାରରେ ବିଶ୍ୱାସୀ ।" ସେ ଉତ୍ତରଦେଲେ, "ତାହାହିଁ ମୋ ଜୀବନର ନିୟମ ।" ମୋ ସ୍ତ୍ରୀ କହିଲା, "ସମସ୍ତେ ଗୋଟିଏ ପ୍ରକାର ୟୁନିଫର୍ମ ପିନ୍ଧିଲେ ଏ ଘର ଗୋଟେ ବାରାକ୍ ହୋଇଯିବ ।" ସମସ୍ତେ ହସିଉଠିଲେ ।

ମୋ ବାପା ଚାହୁଁଥିଲେ ମା'ପରି ବାହାର କୋଠାର ଗୋଟେ ଘରେ ରହିବେ, ହେଲେ ମୋ ସ୍ତ୍ରୀ ଶୁଣିଲା ନାହିଁ । ଏହା ବାପାଙ୍କୁ ଦୁଃଖୀ କଲା । ମୋ ମା' ନିଜେ ରାନ୍ଧି ନିଜେ ଖାଉଥିବା କଥାଟା ବି ବାପାଙ୍କୁ କଷ୍ଟ ଦେଉଥିଲା । ମୋ ସ୍ତ୍ରୀ ବୁଝାଇଲା, "ଏପରି ହେଉଛି କାରଣ ତାଙ୍କ ମୁଣ୍ଡ ଠିକ୍ ନାହିଁ ।" ବାପା ଅଧିକ ଚିନ୍ତିତ ହେଲେ ।

ମୁଁ ବୁଝିପାରୁଥିଲି ମୋର ଦୁଇଝିଅ କାହିଁକି ତାଙ୍କ ଜେଜେବାପାଙ୍କ ପାଖକୁ ବେଶୀ ଯାଉନଥିଲେ । ମୁଁ ସେମାନଙ୍କୁ ବିଦେଶୀ ଭାଷା, ସଙ୍ଗୀତ ଶିଖିବାକୁ ସୁଯୋଗ ଦେଇଥିଲି ।

ସେ ଦୁହେଁ ସବୁବେଳେ ବ୍ୟସ୍ତଥିଲେ । ଦିନେ ମୋ ବାପା କହିଲେ, "ଆରେ ନାତୁଣୀମାନେ, ମୋ ପଢ଼ିବାକୁ କି ବହି ଆଣିଛ ?" ମୀ ହସିଲା ଆଉ ଭୀ କହିଲା, "ତୁମେ କେଉଁ ବହି ପଢ଼ିବାକୁ ଭଲପାଅ ଜେଜେ ?" ବାପା କହିଲେ, "ଯାହା ପଢ଼ିବାକୁ ଭଲଲାଗିବ ।" ଝିଅ ଦୁହେଁ ଏକା ସାଥିରେ କହିଲେ, "ଆମ ପାଖରେ ସେମିତି ବହି ନାହିଁ ।" ମୁଁ ତାଙ୍କ ପାଇଁ ସେଇଦିନ ଗୋଟେ ଦୈନିକ ଖବରକାଗଜ ମଗେଇବା ବନ୍ଦୋବସ୍ତ କରିଦେଲି । ସେ ସାହିତ୍ୟ ଫାହିତ୍ୟ ଭଲପାଆନ୍ତି ନାହିଁ । ଆଧୁନିକ ସାହିତ୍ୟିକ ଶୈଳୀକୁ ପସନ୍ଦ କରିବା ତାଙ୍କ ପକ୍ଷେ କଷ୍ଟକର ।

ଦିନେ ଘରକୁ ଫେରିଲାବେଳକୁ ବାପା ସେଇଠି ଠିଆ ହୋଇଛନ୍ତି ଯେଉଁଠି କୁକୁରଛୁଆ ପୋଷା ହେବା ଘର, କୁକୁଡ଼ା ଚିଆଁ ଦଳଙ୍କ ଘର ଧାଡ଼ି ଧାଡ଼ି ହୋଇ ଲମ୍ବିଛି । ମୋ ସ୍ତ୍ରୀ ସେସବୁ ତା' ବ୍ୟବସାୟ ପାଇଁ ବନାଇଛି । ମୁଁ ଦେଖିପାରିଲି ସେ ଖୁସିନଥିଲେ । ମୁଁ ପଚାରିଲି, "କ'ଣ ହୋଇଛି ?" ସେ କହିଲେ, "ମି.କୋ ଆଉ ମିସ୍ ଲାଇଙ୍କୁ ବହୁତ କାମ କରିବାକୁ ପଡୁଛି, ସେମାନଙ୍କ କାମ କେବେ ସରୁନାହିଁ । ମୁଁ ତାଙ୍କୁ ସାହାଯ୍ୟ କରିବାକୁ ଚାହେଁ, ଯଦି ଏହା ଠିକ୍ ହେବ ।" "ମୁଁ ଥୁଏକୁ ପଚାରେ", ମୁଁ କହିଲି । ମୋ ସ୍ତ୍ରୀ ଉତ୍ତରଦେଲା – "ବାପା ଜଣେ ଜେନେରାଲ । ଏବେ ସେ ଅବସର ନେଇଥିଲେ ବି ସେ ତଥାପି ଜେନେରାଲ । ବାପା ଜଣେ କମାଣ୍ଡର ; ସେ ଯଦି ଜଣେ ସାଧାରଣ ସୈନିକ ପରି କାମ କରନ୍ତି, ସବୁଜିନିଷ ବିଶୃଙ୍ଖଳିତ ହୋଇଯିବ ।" ବାପା କିଛି କହିଲେ ନାହିଁ ।

ମୋ ବାପା ଅବସର ନେଇଥିଲେ ବି ବହୁତ ଲୋକ ତାଙ୍କ ପାଖକୁ ଆସୁଥିଲେ । ଏହା ମୋତେ ଆଶ୍ଚର୍ଯ୍ୟ ତଥା ସୁଖୀ କରୁଥିଲା । ହେଲେ ମୋ ସ୍ତ୍ରୀ କହିଲା, "ଏତେ ଖୁସି ହୁଅ ନାହିଁ, ବାପା । ସେମାନେ କେବଳ ତୁମଠାରୁ ଆର୍ଥିକ ସାହାଯ୍ୟ ନେବାକୁ ଆସୁଛନ୍ତି ।" ବାପା ହସିଲେ, "ଯେ କିଛି ନୁହେଁ, ମୁଁ କେବଳ ଏଇମିତି ଖଣ୍ଡେ ଖଣ୍ଡେ ଚିଠି ଲେଖିଦେଉଛି ... 'ଡିଅର ନର୍ଥ କମାଣ୍ଡର, ମିଲିଟାରୀ ଜିଲ୍ଲାମୁଖ୍ୟ ... ମୁଁ ତୁମକୁ ଏ ଚିଠି ଲେଖୁଛି ... ଇତ୍ୟାଦି, ଗତ ପଚାଶ ବର୍ଷରୁ ଉର୍ଦ୍ଧ୍ୱକାଳ ଭିତରେ ଏଇ ପ୍ରଥମ ଥର ପାଇଁ ମୁଁ ମୋ ନିଜ ଘରର ଛାତତଳେ ତୃତୀୟ ମାସର ତୃତୀୟ ଦିନଟି ପାଳନ କରିଛି । ଆମେ ଯେତେବେଳେ ଯୁଦ୍ଧକ୍ଷେତ୍ରରେ ବାହାରେ ରହୁଥିଲେ, ଅଧିକାଂଶବେଳେ କେତେ ସ୍ୱପ୍ନ ଦେଖୁଥିଲେ ଇତ୍ୟାଦି ... ତୁମର ସେ ରାଜପଥପାର୍ଶ୍ୱ ଗାଁ କଥା ମନେଅଛି ଯେଉଁଠି ମିସ୍ ହ୍ୱେ ଗହମଗୁଣ୍ଡ କରୁଥିଲେ ? ଅଟା ତାଙ୍କ ଦେହସାରା କେମିତି ଲାଗିଥାଏ, ତାଙ୍କ ପିଠିରେ ବି ... ଏଠି ଜଣେ ଲୋକକୁ ମୁଁ ଜାଣେ – ଏମ, ଯିଏ ତୁମ ଅଧୀନରେ କାମ କରିବାକୁ ଚାହୁଁଛି ... ଇତ୍ୟାଦି', ଏମିତି ଚିଠିଟିଏ ମୁଁ ଲେଖିପାରିବି ନାହିଁ ?" ମୁଁ କହିଲି, 'ହଁ' । ମୋ ସ୍ତ୍ରୀ କହିଲା, "ନା, ତୁମେ ଲେଖିପାରିବନି !" ମୋ ବାପା ନିଜ ଚିବୁକକୁ ଟିକେ ସାଉଁଳେଇ କହିଲେ, "ଏହା ତ ଗୋଟେ ଛୋଟ ଅନୁରୋଧ ସେମାନେ କରିଛନ୍ତି ।"

ମୋ ବାପା ସାଧାରଣତଃ ତାଙ୍କ ଚିଠିକୁ ୨୦ସେ.ମି x ୩୦ସେ.ମିର ଟାଣ ଲଫାପାରେ ଭର୍ତ୍ତିକରି ଉପରେ ଲେଖିଦିଅନ୍ତି, 'ଜାତୀୟ ସୁରକ୍ଷା ମନ୍ତ୍ରଣାଳୟ ।' ତାପରେ କୌଣସି ବିଶ୍ୱସ୍ତ ଲୋକ ହାତରେ ଦିଅନ୍ତି ସେଠାରେ ପହଞ୍ଚାଇଦେବାକୁ । ତିନିମାସ ପରେ ତାଙ୍କ ଦପ୍ତରୀ ଲଫାପା ସରିଗଲା । ତାପରେ ସେ ଏକ୍ସରସାଇଜ ଖାତା କଭରରେ ଏହାକୁ ନିଜ ହାତରେ ତିଆରି କଲେ । ସେଇ ଏକା ସାଇଜ୍ ୨୦ସେ.ମି x ୩୦ସେ.ମି । ବର୍ଷେ ପରେ ସେ ନିଜ ଚିଠିଗୁଡ଼ିକୁ ସାଧାରଣ ଲଫାପାରେ ଭରି ପଠାଇଲେ, ଯାହା ପୋଷ୍ଟଅଫିସ୍‌ରୁ ମିଳୁଥିଲା, ପାଞ୍ଚଟଙ୍କାରେ ଦଶଟା ।

ସେଇ ବର୍ଷ ଜୁଲାଇ ମାସରେ, ମୋ ବାପା ଅବସର ନେଇ ଆସିବାର ତିନିମାସ ପରେ, ମୋର ଜଣେ ଦାଦା, ମି. ବୋଙ୍ଗ ତାଙ୍କ ପୁଅର ବାହାଘର ଭୋଜିର ଆୟୋଜନ କଲେ ।

## ଚାରି

ମି. ବୋଙ୍ଗ ଆଉ ମୋ ବାପା ଦାଦା–ବଡ଼ବାପା ପୁଅ ଭାଇ । ବୋଙ୍ଗର ପୁଅ ତୁଆଁ ଗୋଟେ ଶଗଡ଼ିଆ । ଉଭୟ ବାପ–ପୁଅ ବଡ଼ ବିପଜ୍ଜନକ ଚରିତ୍ରର, ଦୁହେଁ ଅସୁର ପରି ବଳିଷ୍ଠ ଓ ଡେଙ୍ଗା, ଆଉ କଥା କହିବେ ଯେମିତି କାହାକୁ ଭୟ ନାହିଁ । ଏହା ଥିଲା ତୁଆଁର ଦ୍ୱିତୀୟ ବିବାହ । ତା ପ୍ରଥମ ସ୍ତ୍ରୀ ସ୍ୱାମୀର ମାଡ଼ ସହିନପାରି ତାକୁ ଛାଡ଼ି ଚାଲିଗଲା । କଚେରିରେ ତୁଆଁ ଶପଥ କରି କହିଲା ଯେ ତା ସ୍ତ୍ରୀ ଅନ୍ୟ ଜଣକ ସାଥିରେ ଚାଲିଯାଇଛି । କୋର୍ଟ ବାଧ ହେଲା ତାକୁ ମୁକୁଳେଇ ଦେବାକୁ । ତା'ର ଦ୍ୱିତୀୟ ସ୍ତ୍ରୀ କିଂଚି ପାଠ ପଢ଼ିଛି ଇଂରାଜୀ ସ୍କୁଲରେ । ତାର ପରିବାର ବେଶ୍ ଉଚ୍ଚଶିକ୍ଷିତ, ହେଲେ କେମିତି କେଜାଣି ଯା ପାଲରେ ପଡ଼ିଗଲା । କିଂଚି ବେଶ୍ ସୁନ୍ଦର ଝିଅଟିଏ ଆଉ ତୁଆଁର ସ୍ତ୍ରୀ ଭାବରେ ସତ କହିବାକୁ ଗଲେ 'ମାଙ୍କଡ଼ ହାତରେ ଶାଳଗ୍ରାମ' ପରି । ଶୁଣାଯାଏ ସେ ଗର୍ଭବତୀ ହୋଇଯାଇଥିଲା । ଏମିତିରେ ଆମେ ବୋଙ୍ଗ ଆଉ ତାଙ୍କ ପୁଅକୁ ଭଲପାଉନା । ହେଲେ ରକ୍ତ ସମ୍ପର୍କକୁ ଏଡ଼ାଇବା କଷ୍ଟକର । ଆଉ ମୁଖ୍ୟ ବିବାହ ବାର୍ଷିକୀ ଉତ୍ସବମାନଙ୍କରେ ସେମାନଙ୍କୁ ଛାଡ଼ି ରହିବା ଅସମ୍ଭବ । ନହେଲେ ଅନ୍ୟ ସମୟରେ ଆମେ ସେମାନଙ୍କଠାରୁ ଦୂରେଇ ରହିବାକୁ ଚେଷ୍ଟାକରୁ ।

ବୋଙ୍ଗ ଭଲପାଆନ୍ତି କହିବାକୁ : 'ଏ ବୁଦ୍ଧିଜୀବୀମାନେ ନର୍କକୁ ଯିବେ ! ସେମାନେ ଶ୍ରମିକଶ୍ରେଣୀକୁ ଘୃଣା କରନ୍ତି ! ମୁଁ କେବଳ ତାଙ୍କ ବାପାଙ୍କୁ ମାନେ ବୋଲି ତାଙ୍କ ଘରକୁ ଯିବାଆସିବା କରେ ।' ପାଟିରେ ଏମିତି କହୁଥିଲେ ବି ଟଙ୍କା ଉଧାର ନେବାକୁ ସେ ସବୁବେଳେ ଆସନ୍ତି । ମୋ ସ୍ତ୍ରୀ ତ ପୂରା ନିୟମବାଲା, ସେ ତାଙ୍କୁ ସିକ୍ୟୁରିଟି ବଣ୍ଡରେ

ଦସ୍ତଖତ କରିବାକୁ ବାଧକରେ । ବୋଙ୍ଗ କହନ୍ତି, 'ମୁଁ ସେମାନଙ୍କ ଦାଦା, ତଥାପି କେବେ ଗୋଟେ କରଜ ଭୁଲିଗଲେ ସାହୁକାର ପରି ବ୍ୟବହାର କରୁଛନ୍ତି ।' ତଥାପି ସେ ଅନେକ ଋଣ ଭୁଲିଯିବାକୁ ଭଲପାଆନ୍ତି ।

ମୋ ବାପାଙ୍କ ସହିତ ବୋଙ୍ଗ ପୁଅ ବାହାଘର ବିଷୟରେ କଥା ହେଲେ – 'ତୁମକୁ ଏ ଉତ୍ସବର କର୍ତ୍ତା ରୂପେ କାମ କରିବାକୁ ହେବ । କିଂଚିର ବାପା ଗୋଟେ ଡିପାର୍ଟମେଣ୍ଟର ମୁଖ୍ୟ, ତୁମେ ଜଣେ ଜେନେରାଲ । ଉଭୟଙ୍କ ସାମାଜିକ ସ୍ତର ସମାନ । କନ୍ୟା ଆଉ ବର ତୁମ ଆଶୀର୍ବାଦ ପାଇବା ଦରକାର । ଗୋଟେ ଶଗଡ଼ିଆ କୁଲି ଭାବରେ ମୋର କ'ଣ ମୂଲ୍ୟ ଅଛି ?' ମୋ ବାପା ରାଜି ହୋଇଗଲେ । ସହର ଉପାନ୍ତରେ ଏ ବାହାଘର ଗୋଟେ ହାସ୍ୟାସ୍ପଦ ବିଭ୍ରମ ବ୍ୟାପାର ଥିଲା । ତିନୋଟି କାର । ରାତ୍ରିଭୋଜନ ଶେଷରେ ଫିଲଟର ସିଗାରେଟର ସ୍ଥାନ ନେଇଥିଲା ନିଜ ପାପୁଲିରେ ଦଳା ଦୋକ୍ତା । ପଚାଶ ଟ୍ରେ ଖାଦ୍ୟ ସେଠାରେ ଥିଲା କିନ୍ତୁ ବାରଟି ଆଦୌ ଛୁଆଁ ହୋଇନଥିଲା । ବର ପିନ୍ଧିଥିଲା ଗୋଟେ କଳା ସୁଟ୍ ଆଉ ଲାଲ ଟାଇ । ମୁଁ ମୋ ଲୁଗାଥାକରୁ ସବୁଠାରୁ ଭଲ ଟାଇ ବାଛି ତାକୁ ଉଧାର ଦେଇଥିଲି । ମୁଁ କହୁଛି 'ଉଧାର', ହେଲେ ମୁଁ ନିଶ୍ଚିନ୍ତ ନଥିଲି ସେଇଟି କେବେ ଫେରିପାଇବି ବୋଲି । ତାର ବେଷ୍ଟମେନ୍ ଥିଲେ ଛଅଟି ଯୁବକ, ପିନ୍ଧିଥିଲେ ଏକାପ୍ରକାର ଖାକୀ ପୋଷାକ ଆଉ ମୁହଁରେ ଅଯତ୍ନ ବର୍ଦ୍ଧିତ ଦାଢ଼ି । ବିବାହ ଆରମ୍ଭରେ ଅର୍କେଷ୍ଟ୍ରା ବଜାଇଲା 'ଆଭା ମେରିଆ' ସଙ୍ଗୀତ ପାର୍ଟି । ତୁଆ ଯେତେବେଳେ ଡେଇଁପଡ଼ିଲା, ସେଇ ଶଗଡ଼ସମବାୟରୁ ଜଣେ ଗୋଟେ ଭୟାନକ ଏକକ ସଙ୍ଗୀତ ଗାନକଲା :

ଓଃ ... ଏଃ ... ମୋର ବିଚାରୀ କୁକୁଡ଼ା ଚିଆଁ
ମୁଁ ବୁଲିଛି ସାରା ଦୁନିଆଁ
ଖୋଜିଛି ପାଇବି ବୋଲି କିଛି ଟଙ୍କା
ଓ ... ଟଙ୍କା, ମୁହଁ କରିଦିଏ ବଙ୍କା
ଓ ... ଏଃ ... ମୋ ଦୁଃଖୀ କୁକୁଡ଼ା ଚିଆଁ ।

ଏହାପରେ ଥିଲା ମୋ ବାପାଙ୍କ ପାଳି । ସେ କିଛି ବୁଝିପାରୁନଥିଲେ ଆଉ ଅସହାୟ ଥିଲେ । ନିଜ ବକ୍ତବ୍ୟ ସେ ବହୁତ ଭଲକରି ପ୍ରସ୍ତୁତ କରିଥିଲେ । ତାଙ୍କ ବକ୍ତବ୍ୟର ପ୍ରତିଟି ବାକ୍ୟରେ ପୂର୍ଣ୍ଣଚ୍ଛେଦ ପରେ ଗୋଟେ କ୍ଲାରିଓନେଟ ମୂର୍ଖଙ୍କ ପରି ଭଁ ଭଁ ବାଜୁଥିଲା, ଖୁବ୍ ଶବ୍ଦକରି ବାଣ ଫୁଟୁଥିଲା । କିଶୋର–କିଶୋରୀମାନେ ଅର୍ଥହୀନ ମନ୍ତବ୍ୟ କରିଚାଲିଥିଲେ କ୍ରମାଗତ । ମୋ ବାପା କାଗଜଟିକୁ ଏତେ ଜୋର୍ ଧରିଥିଲେ ଯେ ତାଙ୍କ ଦେହ ଥରୁଥିଲା, ଆଉ ସେ କେତେଗୁଡ଼େ ପାରାଗ୍ରାଫ୍ ଛାଡ଼ିଦେଲେ । ତାଙ୍କ ଚାରିପାଖେ ଜମା ହୋଇଥିବା ବିଶୃଙ୍ଖଳିତ ଜନତାଙ୍କୁ ଦେଖି ସେ ଆହତ ହେବା ସହିତ ଭୟଭୀତ ଜଣାପଡୁଥିଲେ କାରଣ ସେମାନେ ତାଙ୍କ ବକ୍ତୃତା ଜମା ଶୁଣୁନଥିଲେ । ତାଙ୍କ ନୂଆବନ୍ଧୁ, ଡିପାର୍ଟମେଣ୍ଟ

ମୁଖ୍ୟ ବି ଭୀତତ୍ରସ୍ତ ହୋଇପଡ଼ିଲେ ଆଉ କନ୍ୟାର ପୋଷାକରେ ମଦ ଢାଳିଦେଲେ । ମୁଁ କିଛି ଶୁଣିପାରୁନଥିଲି । ଗ୍ରାମ୍ୟ, ଅମାର୍ଜିତ ବ୍ୟାଣ୍ଡବାଜା ବହୁତ ଜୋର୍‌ରେ ବିଟଲ ଆଉ 'ଆବା' ସଙ୍ଗୀତର ସ୍ୱର ବଜାଇ ଚାଲିଥିଲା ।

ତାପରେ ମୋ ବାପା ଅନ୍ୟ କାମରେ ବ୍ୟସ୍ତ ରହିଗଲେ, ଯେଉଁଥିରେ ତାଙ୍କର କେବେ ଆଗରୁ ଅଭିଜ୍ଞତା ନଥିଲା ।

ଏହା ଥିଲା, ବିବାହର ଅଳ୍ପଦିନ ପରେ କିଂଚି କନ୍ୟା ସନ୍ତାନଟିଏ ଜନ୍ମଦେବା । ମି.ବୋଙ୍ଗ ପରିବାରରେ ବିଭ୍ରାଟ ଦେଖାଦେଲା, ଭୟଙ୍କର ବିଭ୍ରାଟ । ବୋଙ୍ଗ ପ୍ରଚୁର ମଦ୍ୟପାନ କରି କନ୍ୟାକୁ ଘରୁ ବାହାର କରିଦେଲେ । ତୁଆଁ ଗୋଟେ ଚାକୁ ଧରି ତା' ବାପାକୁ ଭୂଷିଦେବାକୁ ଦୌଡ଼ିଗଲା, ଭାଗ୍ୟକୁ ବାପାର ଗୋଡ଼ ଖସିଗଲା ଓ ସେ ତଳେ ପଡ଼ିଯିବାରୁ ପ୍ରାଣ ରହିଗଲା । କନ୍ୟାଟି ନିଜକୁ ସମ୍ଭାଳି ନେବାର କୌଣସି ବାଟ ନଥିବାରୁ ମୋ ବାପା ତାଙ୍କ ଭାଇର ବୋହୂକୁ ଘରକୁ ଆଣିବାକୁ ବାଧ୍ୟ ହେଲେ । ମୋ ପରିବାର ଏବେ ଦୁଇଜଣ ଅଧିକ ଲୋକଙ୍କୁ ଖାଇବାକୁ ଦେଲା । ମୋ ସ୍ତ୍ରୀ କିଛି କହିଲା ନାହିଁ । ମିସ୍ ଲାଇର କାମ ବଢ଼ିଗଲା । ଭାଗ୍ୟକୁ, ସରଳ ହେବା ସହିତ, ସେ ଛୋଟ ପିଲାଙ୍କୁ ଭଲପାଉଥିଲା ।

## ପାଞ୍ଚ

ଦିନେ ରାତିରେ, ମୁଁ ଋଷୀୟ ମାଗାଜିନ୍ ସ୍ପୁଟନିକ ପଢୁଛି, ମୋ ବାପା ନୀରବରେ ପ୍ରବେଶ କଲେ । "ତୋ ସାଥିରେ ମୋର କଥାବାର୍ତ୍ତା ଅଛି", ସେ କହିଲେ । ମୁଁ ସାମାନ୍ୟ କଫି ବନେଇଲି କାରଣ ବାପା ସେ କଫି ପିଅନ୍ତି ନାହିଁ । "ଥୁଏ ଘରେ କ'ଣ କରୁଛି ତୁ ଦେଖୁଛୁ ତ ?" ସେ ପଚାରିଲେ, "ମୋର ତ ଲୋମ ଟାଙ୍କୁରି ଯାଉଛି ।"

ମୋ ସ୍ତ୍ରୀ ଯେଉଁ ମାଟର୍ନିଟି ହସ୍ପିଟାଲରେ କାମ କରୁଥିଲା ତାହା ଗର୍ଭପାତ ପାଇଁ ବେଶ୍ ନାମ କମାଇଥିଲା । ପ୍ରତିଦିନ ନିହତ ଭୃଣଗୁଡ଼ିକୁ ଗୋଟେ ଥର୍ମସ୍ ଫ୍ଲାସ୍କରେ ପୂରାଇ ସେ ଘରକୁ ନେଇ ଆସୁଥିଲା । ମି.କୋ ତାହାକୁ କୁକୁର ଓ ଘୁଷୁରିଙ୍କ ପାଇଁ ରାନ୍ଧୁଥିଲେ । ସତ କହିବାକୁ ଗଲେ, ମୁଁ ଏକଥା ଜାଣିଥିଲି, ହେଲେ ଗୋଟେ ସାଧାରଣ କଥା ପରି ଏହାକୁ ନଦେଖିଲା ପରି ରହିଥିଲି । ମୋ ବାପା ମତେ ରୋଷେଇ ଘରକୁ ଟାଣିନେଲେ ଆଉ ଗୋଟାଏ ହାଣ୍ଡି ଆଡ଼କୁ ଆଙ୍ଗୁଠି ଦେଖାଇଦେଲେ ଯେଉଁଥିରେ ଭୃଣର ଛୋଟ ଛୋଟ ଖଣ୍ଡ ଭର୍ତ୍ତିହୋଇ ରହିଥିଲା । ମୁଁ ଚୁପ୍ ରହିଲି । ମୋ ବାପା କାନ୍ଦି ଲାଗିଲେ । ସେ ଥର୍ମସ୍‌ଫ୍ଲାସ୍କଟି ଉଠାଇ କୁକୁରଦଳଙ୍କ ଆଡ଼କୁ ଫିଙ୍ଗିଦେଲେ, 'ଛି, କି ଜଘନ୍ୟ ! ଏଭଳି ଭାବରେ ଉପାର୍ଜିତ ଧନ ମୋର ଦରକାର ନାହିଁ !' କୁକୁରଗୁଡ଼ା ଭୁକି

ଲାଗିଲେ । ମୋ ବାପା ଘରୁ ବାହାରିଗଲେ । ମୋ ସ୍ତ୍ରୀ ଆସିଲା ଆଉ ମି.କୋକୁ କହିଲା, 'ତୁମେ ଏହାକୁ ମାଂସ ଗ୍ରାଇଣ୍ଡରରେ ପୂରାଇ ଦେଇନଥିଲ କାହିଁକି ? ବାପାଙ୍କୁ ଏହା ଦେଖିବାକୁ ଦେଲ କାହିଁକି ?' ମି.କୋର ପାଟି ଖନି ବାଜିଗଲା, 'ମୁଁ ଦୁଃଖିତ ମା', ମୁଁ ଭୁଲିଯାଇଥିଲି ।'

ଡିସେମ୍ବର ମାସରେ ମୋ ସ୍ତ୍ରୀ ଜଣକୁ ଡାକି ଆଲସେସିଆନ ଦଳଟିକୁ ବିକିଦେଲା । ସେ କହିଲା, 'ଏଥର ସେ ବିଦେଶୀ ଗାଲାଂ ସିଗ୍ରେଟ ଟଣା ବନ୍ଦ କର । ଏ ବର୍ଷ ଆୟ ସତେଇଶହଜାର କମିଛି ଆଉ ଖର୍ଚ୍ଚ ଅଠରହଜାର ବଢ଼ିଛି । ଅର୍ଥାତ୍ ପକେଟରୁ ଯାଇଛି ପଇଁଚାଳିଶହଜାର ।'

କିଂଚି ସନ୍ତାନ ପ୍ରସବ ପରେ କାମ କରିବାକୁ ଗଲା । ସେ କହିଲା, 'ଏ ଘରେ ମୁଁ ସମସ୍ତଙ୍କ ପାଖରେ କୃତଜ୍ଞ, ହେଲେ ମୋତେ ଏ ଜାଗା ଛାଡ଼ିବାକୁ ହେବ ।' ମୁଁ ପଚାରିଲି, 'ତୁମେ କେଉଁଠାକୁ ଯିବ ?' କାରଣ ତୁଆଁ ଗଣ୍ଡଗୋଳ କରି ଜେଲ୍‌ରେ ଥିଲା । କିଂଚି ତା ପିଲାକୁ ଧରି ବାପଘରକୁ ଚାଲିଗଲା । ଏଇ ବାହାନାରେ ମୋ ବାପା ତାକୁ ଟାକ୍ସିରେ ବସାଇଦେବାକୁ ତା ସାଙ୍ଗରେ ଗଲେ, ଆଉ ସାରାଦିନ କିଂଚିର ବାପା ସାଙ୍ଗେ କଟେଇଲେ । କିଂଚିର ବାପା ଏବେ ଏବେ କାମସାରି ଭାରତରୁ ଫେରିଥିଲେ । ସେ ମୋ ବାପାଙ୍କୁ ଖଣ୍ଡେ ଛାପା ସିଲ୍କ କପଡ଼ା ଆଉ ପଚାଶ ଗ୍ରାମର ଟାଇଗର ବାମ୍ ଦେଲେ । ମୋ ବାପା ସିଲ୍କ କପଡ଼ାଟି ମିସଲାଇକୁ ଆଉ ଟାଇଗରବାମ୍ ମି.କୋକୁ ଦେଇଦେଲେ ।

## ଛଅ

ନୂଆବର୍ଷ ଆସିବା ଆଗରୁ ମି.କୋ ମୋତେ ଆଉ ମୋ ସ୍ତ୍ରୀକୁ କହିଲେ, 'ଆପଣମାନଙ୍କ ସାହାଯ୍ୟ ମୋର ଦରକାର ।' – 'କି ସାହାଯ୍ୟ ?' ମୋ ସ୍ତ୍ରୀ ପଚାରିଲା । ମି.କୋ ବିଷୟଟିକୁ କେତେ ବୁଲେଇ ବଙ୍କେଇ ଯାହା କହିଲେ ତାହା ହେଲା, ସେ ତାଙ୍କ ନିଜ ଗାଁକୁ ଯିବାକୁ ଚାହୁଁଥିଲେ । ଆମ ପାଖରେ ଛଅବର୍ଷ ରହି, ଚେଷ୍ଟାକରି ସେ କିଛି ଟଙ୍କା ରଖିପାରିଥିଲେ । ପରମ୍ପରା ଅନୁସାରେ, ସେ ଚାହୁଁଥିଲେ ଗାଁକୁ ଯାଇ ତାଙ୍କ ସ୍ତ୍ରୀର ଅସ୍ଥି ଓ ବଳକା ଜିନିଷ ଏକାଠି କରି ସବୁକୁ ଗୋଟିଏ ନୂଆ ସମାଧିରେ ପୋତିଦେବେ । ଏତେଦିନ ଦୂରରେ ରହି ସେ ଭାବୁଥିଲେ, କଫିନ୍‌ର ଦର ଏ ଭିତରେ କମିଯାଇଥିବ । 'ମୃତ ଲୋକ ପ୍ରତି ବିଶ୍ୱସ୍ତତା ଆମର ପ୍ରଥମ କର୍ତ୍ତବ୍ୟ', ଗୋଟେ ପ୍ରାଚୀନ ପ୍ରବାଦ ଉଦ୍ଧୃତ କରି ସେ କହିଲେ । ଏତେଦିନ ସହରରେ ରହି ସେ ବି ଚାହୁଁଥିଲେ ନିଜ ସମ୍ପର୍କୀୟମାନଙ୍କୁ ସୁଖୀ କରିବାକୁ ଯେ ସେମାନଙ୍କୁ ସେ ମନେରଖିଛନ୍ତି । ସେ ଦୀର୍ଘବର୍ଷ ଏଠାରେ ରହିଥିଲେ ହେଲେ 'ଗୋଟେ ଶିଆଳ ମରିବାର ତିନିବର୍ଷ ପରେ ବି ପାହାଡ଼ ଆଡ଼କୁ ଫେରିଚାହେଁ',

ମୋ ସ୍ତ୍ରୀ ତାଙ୍କ କଥା ମଝିରୁ ଅଧୈର୍ଯ୍ୟ ହୋଇ କହିଲା, 'ହଉ, ଠିକ୍ ଅଛି, ଠିକ୍ ଅଛି, କେବେ ତୁମେ ଯିବାକୁ ଚାହୁଁଛ ?' ମି.କୋ ନିଜ ମୁଣ୍ଡ କୁଣ୍ଡେଇଲେ, 'ମୁଁ ଦଶଦିନ ପାଇଁ ଯିବି ଆଉ ତେଇଶ ତାରିଖରେ ହାନୋଇ ଫେରିଆସିବି, ନୂଆବର୍ଷ ଆଗରୁ ।' ମୋ ସ୍ତ୍ରୀ ମନେ ମନେ ହିସାବ କରିପକେଇଲା : 'ଠିକ୍ ଅଛି, ଥୁଆନ (ମୋ ନାଁ) ତୁମେ କ'ଣ ଏଇ ଦଶଦିନ ଭିତରେ କାମରୁ ଅଧିକ ଛୁଟି ବାହାର କରିପାରିବ ?' 'ପାରିବି', ମୁଁ କହିଲି । ମି.କୋ ପୁଣି କହିଲେ, 'ସେ ଆଗରୁ ରାଜି ହୋଇଛନ୍ତି, ତାଙ୍କ ବିନା ତ ମୁଁ ମୋ ସ୍ତ୍ରୀର କବର ବଦଳାଇବା କଥା ଭାବି ବି ପାରିନଥାନ୍ତି ।' 'ତୁମ ପାଖରେ କେତେ ଟଙ୍କା ଅଛି ?' ମୋ ସ୍ତ୍ରୀ ପଚାରିଲା । ମି.କୋ କହିଲେ, 'ମୋ ପାଖରେ ଅଛି ତିନିହଜାର, ତୁମ ବାପା ଦେଇଥିଲେ ଦୁଇହଜାର, ଏମିତି ପାଞ୍ଚହଜାର ।' ମୋ ସ୍ତ୍ରୀ କହିଲା, 'ଠିକ୍ ଅଛି, ବାପାଙ୍କଠାରୁ ଦୁଇହଜାର ନିଅ ନାହିଁ । ମୁଁ ଦୁଇହଜାର ସହ ଆଉ ପାଞ୍ଚହଜାର ଅଧିକ ଦେବି । ତା ମାନେ ତୁମ ପାଖରେ ହେବ ଦଶହଜାର । ଏଥିରେ ତୁମର ଚଳିଯିବ ।'

ସେମାନେ ଘର ଛାଡ଼ିବା ଆଗରୁ ମୋ ସ୍ତ୍ରୀ ଖୁବ୍ ବଡ଼ଧରଣର ରୋଷେଇବାସ କଲା, ପରିବାରର ସମସ୍ତେ, ମି.କୋ ଓ ମିସ୍ ଲାଇ ଓଗେର ବସିଗଲେ ଖାଇବାକୁ । ମିସ୍ ଲାଇ ବହୁତ ଖୁସୀ ଥିଲା । ମୋ ବାପା ଦେଇଥିବା ମିଲିଟାରୀ କପଡ଼ାର ପୋଷାକ ସେ ପିନ୍ଧିଥିଲା । ମୀ ଆଉ ଭୀ ତାକୁ ଚିଡ଼େଇଲେ, 'ଲାଇ ସବୁଠୁ ସୁନ୍ଦରୀ', ମିସ୍ ଲାଇ ନରମ ହସି କହିଲା, 'ନା, ମୁଁ ନୁହେଁ, ତୁମ ମା' ସବୁଠୁ ସୁନ୍ଦରୀ ।' ମୋ ସ୍ତ୍ରୀ ତାକୁ କହିଲା, 'ଦେଖ, ଗାଁକୁ ଯାଇ ଆସିଲାଯାଏଁ ମୋ ଶ୍ୱଶୁରଙ୍କର ପୂରା ଖିଆଲ ରଖିବୁ ।' ମୋ ବାପା କହିଲେ, 'ମୋର ବୋଧେ ନଯିବା ଠିକ୍ ହେବ ?' ମି.କୋ ତତ୍‌କ୍ଷଣାତ୍ ଚିନ୍ତିତ ହୋଇ କହିଲେ, 'ହେ ଭଗବାନ୍, ତୁମେ ଆସୁଛ ବୋଲି ମୁଁ ଟେଲିଗ୍ରାମ ପଠେଇ ଦେଇଛି । ନଗଲେ ତୁମ ଖ୍ୟାତିରେ ଆଞ୍ଚ ଆସିବ ।' ମୋ ବାପା ଦୀର୍ଘଶ୍ୱାସ ପକାଇ କହିଲେ, 'କେଉଁ ଖ୍ୟାତି ମୋର ଆଉ ଅଛି ହରାଇବାକୁ ?'

## ସାତ

ଦିନେ ରବିବାର ସକାଳୁ ସକାଳୁ ମୋ ବାପା ଥାନ୍ ହ୍ୱେ ବାହାରିଗଲେ ମି.କୋ ଆଉ ମିସ୍ ଲାଇ ସାଥିରେ । ସୋମବାର ରାତିରେ ମୁଁ ଟିଭି ଦେଖୁଛି, ବାହାରେ 'ଥପ୍' କରି ଗୋଟେ ଶବ୍ଦ ହେଲା । ବାହାରିଆସି ଦେଖିଲି ମୋ ମାଆ ବଗିଚାର ଗୋଟେ କୋଣରେ ଅଚେତ ହୋଇ ପଡ଼ିଛି । ଗତ ଚାରିବର୍ଷ ଧରି ସେ ଅସହାୟ ହୋଇପଡ଼ିଥିଲା ; ତାକୁ ଖୁଆଇଦେବା, ବାହାରକୁ ନବାଆଣିବା କରାହେଉଥିଲା । ପ୍ରତିଦିନ ମିସ୍ ଲାଇ ତା' କଥା ବୁଝୁଥିଲା, ଆମେ କିଛି ଜାଣୁନଥିଲୁ । ହେଲେ ଆଜି ମିସ୍ ଲାଇ ନଥିବାରୁ, ମୁଁ ତାକୁ

ଖୁଆଇ ଦେଉଥିଲି, କିନ୍ତୁ ପାଇଖାନାକୁ ନେବାକଥା ଭୁଲିଯାଉଥିଲି । ମୁଁ ମାଆକୁ ଉଠାଇ ଘରକୁ ଆଣିଲି, ତା' ମୁଣ୍ଡ ଛାତି ଉପରେ ଓହଳି ପଡ଼ିଥାଏ । ଦେହରେ କେଉଁଠି ଆଞ୍ଚୁଡ଼ା ଦାଗ ବା କ୍ଷତ ଚିହ୍ନ ମୁଁ ଦେଖିଲି ନାହିଁ । ଅଧରାତିଯାଏଁ ତାକୁ ଅନେଇ ମୁଁ ଚେଇଁ ରହିଲି । ତା' ଦେହ ପୂରା ଥଣ୍ଡା ଥିଲା ଆଉ ଆଖିରେ ଥିଲା ଭାରି ଅସହଜ ଚାହାଣି । ମୁଁ ଡରିଯାଇ ମୋ ସ୍ତ୍ରୀକୁ ଡାକିଲି । ଥୁଏ କହିଲା, 'ମାଆ ବୁଢ଼ୀ ହୋଇଯାଇଛନ୍ତି ।' ପରଦିନ ମା' କିଛି ଖାଇଲା ନାହିଁ କି ବାହାରକୁ ଯିବାକୁ ଚେଷ୍ଟାକଲା ନାହିଁ । ମୁଁ ତା' ଲୁଗାପଟା, ମଶିଣା, ଚାଦର, ଧୋଇଦେଉଥିଲି । କେତେ କେତେ ଦିନ ଦଶବାର ଥର ଏଇମିତି ଧୋଇବାକୁ ପଡୁଥିଲା । ଥୁଏ ଆଉ ମୋ ଦୁଇଝିଅ ମଇଳା ସହିପାରନ୍ତି ନାହିଁ । ତେଣୁ ମୁଁ ସବୁବେଳେ ତା' ଲୁଗା ବଦଳାଏ ଆଉ ଧୁଏ – ଘର ଭିତରେ ନୁହେଁ, ପାଖ କେନାଲରେ । ଯାହା ଔଷଧ ଖାଉଥିଲା ସେସବୁ ବି ମାଆ ବାନ୍ତି କରିଦେଉଥିଲା ।

ଶନିବାର ଦିନ ମାଆ ହଠାତ୍ ଠିଆ ହୋଇପଡ଼ିଲା । ସେ ନିଜେ ବଗିଚା ଭିତରେ ବୁଲିଲା । ଖାଇପାରିଲା । ମୁଁ କହିଲି, 'ମାଆକୁ ଦେଖି ଖୁସି ଲାଗୁଛି ।' ମୋ ସ୍ତ୍ରୀ କିଛି କହିଲାନି । ଉପରଓଳିକୁ ଦେଖିଲି ସେ ଦଶମିଟର ଲମ୍ବାର ଧଳା କପଡ଼ା କାଢ଼ି ବାହାରେ ରଖି ବଢ଼େଇବାକୁ ଡାକିଲା । ମୁଁ ପଚାରିଲି, 'ତୁମେ ପ୍ରସ୍ତୁତ ହେଲଣି ?' ସେ କହିଲା, 'ନା' ।

ଦୁଇଦିନ ପରେ ମା' ପୁଣି ବିଛଣା ଧରିଲା, ଖାଇଲା ନାହିଁ, ପୁଣି ତାକୁ ଆଗ ପରି ଟେକି ପାଇଖାନାକୁ ନେବାକୁ ପଡ଼ିଲା । ତା' ଦେହ ଅତି ଖରାପ ଆଡ଼କୁ ପୁଣି ଶୀଘ୍ର ଗତି କଲା । ଦୁର୍ଗନ୍ଧଯୁକ୍ତ ମୋଟା ବାଦାମୀ ତରଳଝାଡ଼ା ବାହାରି ଯାଉଥିଲା । ମୁଁ ତାକୁ କିଛି ଜୀନ୍‌ସେଙ୍ଗ (ଚେରମୂଳି) ରସ ଦେଲି । ମୋ ସ୍ତ୍ରୀ କହିଲା, 'ମା'ଙ୍କୁ ଜୀନ୍‌ସେଙ୍ଗ ଦିଅନାହିଁ, ଏଥିରେ ଦେହ ବେଶୀ ଖରାପ ହେବ ।' ମୁଁ କାନ୍ଦିଲି । ବହୁତ ବର୍ଷ ପରେ ମୁଁ ଏମିତି କାନ୍ଦୁଥିଲି । ମୋ ସ୍ତ୍ରୀ ନୀରବ ଥିଲା, ତାପରେ କହିଲା, 'ତୁମ ଇଚ୍ଛା ।'

ମି.ବୋଙ୍ଗ ଘରକୁ ଆସିଲେ, କହିଲେ, 'ସେ ଯେମିତି ବିଛଣାରେ ପଡ଼ି ଛଟପଟ ହେଉଛି ସହି ହେଉନାହିଁ ।' ତାପରେ ମା'କୁ ପଚାରିଲେ, 'ହେ ଭାଉଜ, ମତେ ଚିହ୍ନିପାରୁଛ ?' ମୋ ମା' କହିଲା, 'ହଁ' । 'ମୁଁ କିଏ ?' ମା' କହିଲା 'ଜଣେ ଲୋକ ।' ମି.ବୋଙ୍ଗ ବଡ଼ପାଟିରେ କହିଲେ, ତାହେଲେ ତୁମେ ହିଁ ମତେ ସବୁଠାରୁ ବେଶୀ ଭଲପାଅ । ଗାଁସାରା ଲୋକ ତ ମତେ କୁକୁର ଭାବନ୍ତି । ମୋ ସ୍ତ୍ରୀ ମତେ 'ବେଡ଼ା' ଡାକେ । ମୋ ପୁଅ ତୁଆଁ ମତେ ଡାକେ 'ବେଇମାନ' । ତୁମେ ହିଁ କେବଳ ମତେ 'ଗୋଟେ ଲୋକ' ବୋଲି ଡାକ ।

ଏଇ ପ୍ରଥମ ଥର ପାଇଁ ଦେଖିଲି ଏ ଅଶାଳୀନ, ଦୁଃସାହସୀ ଶଗଡ଼ିଆଟି ମୋରି ଆଖି ଆଗରେ ଗୋଟେ ଛୋଟପିଲାରେ ବଦଳିଗଲା ।

ଆଠ

ମୋ ମାଆ ମରିଯିବାର ଛଅଘଣ୍ଟା ପରେ ମୋ ବାପା ଆସି ଘରେ ପହଞ୍ଚିଲେ । ମି.କୋ ଆଉ ମିସ୍ ଲାଇ ପୂରା ଭାଙ୍ଗି ପଡ଼ିଥିଲେ । 'ଆମର ସବୁଦୋଷ, ଆମେ ଏଠି ଥିଲେ ଭେଢେ ମା' ମରିନଥାନ୍ତେ ।' 'ନନ୍‌ସେନ୍ସ', କହିଲା ମୋ ସ୍ତ୍ରୀ । ମିସ୍ ଲାଇ କାନ୍ଦିଲା, 'ଓ ଭେଢେ ମା' ତୁମେ ମୋତେ ଠକିଦେଲ ! ତୁମ ଦେଖାରଖା କରିବାକୁ ମତେ କାହିଁକି ସୁଯୋଗ ଦେଲନାହିଁ ?' ମି.ବୋଙ୍ଗ ହସିଲେ, 'ତୁ ତା' ଦେଖାରଖା କରିବାକୁ ଚାହୁଁଥିଲୁ, ଅଥଚ ଗାଁକୁ ପଳେଇଗଲୁ । ମୁଁ ଯାଏଁ କଫିନ୍ ବନ୍ଦକରେ ।' ମୋ ମାଆର ଶବକୁ ସିଧାରଖି ତା'ଉପରେ ବସ୍ତ୍ର ଆଚ୍ଛାଦିତ କଲାବେଳକୁ ମୋ ବାପା ବଡ଼ପାଟିରେ କାନ୍ଦି ମି.ବୋଙ୍ଗକୁ ପଚାରିଲେ, 'ସେ କାହିଁକି ଏତେ ଶୀଘ୍ର ଆମକୁ ଛାଡ଼ି ଚାଲିଗଲା ? ସବୁ ବୁଢ଼ାବୁଢ଼ୀ କ'ଣ ଏଇମିତି ଦୟନୀୟ ଭାବରେ ମରନ୍ତି?' 'ତୁମେ ଜାଣନାହଁ କ'ଣ ତୁମେ କହୁଛ', ମି.ବୋଙ୍ଗ ଉତ୍ତରଦେଲେ, 'ପ୍ରତିଦିନ ଆମ ଦେଶରେ ହଜାର ହଜାର ଲୋକ ମରନ୍ତି ଲଜ୍ଜାରେ, ଯନ୍ତ୍ରଣାରେ ଆଉ ଦୁଃଖରେ । ତୁମ ସୈନ୍ୟମାନଙ୍କ ପାଇଁ ଏହା ଭିନ୍ନ ପ୍ରକାର ; ଗୋଟେ ଗୁଳି–ବ୍ୟାଙ୍ଗ୍–ଅତି ଚମତ୍କାର ଏ ମରିବାର ବାଟ ।'

ମୁଁ ଗୋଟେ ଅସ୍ଥାୟୀ ବିଶ୍ରାମସ୍ଥଳ ବନାଇଥିଲି ଆଉ ବଢ଼େଇକୁ କହିଥିଲି କଫିନ୍‌ଟିଏ ବନେଇ ଦେବାକୁ । ମୋ ସ୍ତ୍ରୀ ଆଗଦିନ କଟାଇଥିବା କାଠଗଦା ଚାରିପଟେ ମି.କୋ ନିଜକୁ ବ୍ୟସ୍ତ ରଖିଥିଲେ । ବଢ଼େଇ ପାଟିକଲା, 'ତମେ କ'ଣ ଡରୁଚ କି ଆମେ କାଠ ଚୋରି କରିନେବୁ ?' ମି.ବୋଙ୍ଗ ପଚାରିଲେ, 'ଏ ବୋର୍ଡ଼ସବୁର ମୋଟେଇ କେତେ ?' ମୁଁ ଉତ୍ତରଦେଲି, 'ଚାରି ସେଣ୍ଟିମିଟର ।' କ'ଣ ! ମି.ବୋଙ୍ଗ ଚକିତ ହୋଇ କହିଲେ, 'ତୁମେ ତ ଏଥିରେ ଗୋଟେ ପୂରା ଘର ସଜେଇଦେବ ! କେବେ କେହି ଏତେ ଭଲକାଠରେ କଫିନ ତିଆରି କରିଛି ? ତୁମେ ଯେତେବେଳେ ସମାଧି ବଦଳାଇବ, ମନେରଖିଥାଅ, ଏ ବୋର୍ଡ଼ଗୁଡ଼ିକ ମତେ ଦେଇଦେବ ।' ମୋ ବାପା ଚୁପଚାପ୍ ବସିରହିଥିଲେ ଆଉ ଭିତରେ ଯେମିତି ଅତି ଦୁଃଖରେ ନଇଁପଡୁଥିଲେ ।

ମି.ବୋଙ୍ଗ ପାଟିକରି ଡାକିଲେ, 'ହେ ଥୁଏ, ମୋ ପାଇଁ ଗୋଟେ କୁକୁଡ଼ା ସିଝେଇ ଦେ ଆଉ ଗଣ୍ଡେ ଚାଉଳ ଫୁଟେଇ ଦେ ?' ମୋ ସ୍ତ୍ରୀ କହିଲା, ''କେତେ ଡଙ୍କି ଭାତ ଦେବି ଦାଦା ?'' ମି.ବୋଙ୍ଗ କହିଲେ, 'ହରେ କୃଷ୍ଣ, ଆଜିଠୁ ତୁ ଏଇମିତି ମିଠା ସ୍ୱରରେ କହିଚାଲିବୁ ନା ?' ଓଃ, ତୁମ ସମ୍ପର୍କୀୟମାନେ କି ଭୟଙ୍କର !' ମୋ ସ୍ତ୍ରୀ ମୋ ଆଡ଼କୁ ବୁଲିପଡ଼ି କହିଲା ।

ମି.ବୋଙ୍ଗ ମତେ ପଚାରିଲେ, 'ଏ ଘରର ଅର୍ଥ ପରିଚାଳନା କିଏ କରେ ?' ମୁଁ କହିଲି, 'ମୋ ସ୍ତ୍ରୀ ।' 'ତାହା ତ ନିତିଦିନିଆ ଖର୍ଚ୍ଚ । ମୁଁ ପଚାରୁଛି ଅନ୍ତ୍ୟେଷ୍ଟିକ୍ରିୟା କର୍ମ

ଖର୍ଚ୍ଚ କିଏ ବୁଝୁଛି ?' ପୁଣିଥରେ ମୁଁ କହିଲି, 'ମୋ ସ୍ତ୍ରୀ ।' ମି.ବୋଙ୍ଗ କହିଲେ, 'ହରି ହେ, ରକ୍ଷାକର, ଆରେ ପୁଅ, ସେମିତି ହୋଇପାରିବ ନାହିଁ ! ସେ ଭିନ୍ନ ରକ୍ତମାଂସର ! ମୁଁ ତୋ ବାପା ସଙ୍ଗେ କଥାବାର୍ତ୍ତା କରେ ।' 'ମୁଁ ବାପାଙ୍କୁ କହୁଛି', ମୁଁ କହିଲି । ମି.ବୋଙ୍ଗ କହିଲେ, 'ମତେ ଚାରିହଜାର ଦିଅ । କେତେ ଟ୍ରେ ଖାଦ୍ୟ ତୁମେ ଅନ୍ତ୍ୟେଷ୍ଟି ଭୋଜନରେ ଦେବାକୁ ଭାବିଛ ?' 'ଦଶ ଟ୍ରେ ।' ମୁଁ କହିଲି । 'ଏତିକିରେ କଫିନ ବୁହାଳିଙ୍କ ପେଟ ପୂରିବ ନାହିଁ । ଯା' ତୋ ସ୍ତ୍ରୀ ସାଙ୍ଗେ କଥାହୋଇ ଆସ । ଏଠି ଚାଳିଶ ଟ୍ରେ ଦରକାର', କହିଲେ ବୋଙ୍ଗ । ମୁଁ ତାଙ୍କୁ ଚାରିହଜାର ଡଙ୍ଗ୍ (ଭିଏତନାମ ଟଙ୍କା) ଦେଇ ଘର ଭିତରକୁ ଆସିଲି, ମୋ ସ୍ତ୍ରୀ କହିଲା, 'ମୁଁ ସବୁ ଶୁଣିସାରିଛି । ଆଠଶହ ହିସାବରେ ତିରିଶ ଟ୍ରେର ଦାମ ହେବ ଚବିଶହଜାର । ଅନ୍ୟ ଖର୍ଚ୍ଚ ଛ'ହଜାର । ମୁଁ ଖାଦ୍ୟ କଥା ଦେଖିବି । ମିସ୍ ଲାଇ ଭୋଜିର ବ୍ୟବସ୍ଥା କରିପାରିବ । ବୋଙ୍ଗ କଥା ଶୁଣ ନାହିଁ । ସେ ଗୋଟେ କୁତ୍ସିତ ବୃଦ୍ଧ ।' ମି.ବୋଙ୍ଗ ତ ମୋଠାରୁ ଚାରିହଜାର ନେଇଗଲେଣି । ମୋ ସ୍ତ୍ରୀ କହିଲା, 'ଓଃ, ତୁମେ ସବୁବେଳେ ମତେ ଏମିତି ହତାଶ କର ।' 'ଠିକ୍ ଅଛି, ମୁଁ ତା'ଠୁ ମାଗି ଆଣିବି', ମୁଁ କହିଲି । ମୋ ସ୍ତ୍ରୀ କହିଲା, "ଯାଉ ସେ ଚାରିହଜାର, ଭାବିନିଅ ଯେ ସେ ଦେଇଥିବା ସେବା ପାଇଁ ଏତକ ଗଲା । ବୁଢ଼ାଟା ଭଲ ଯେ ବିଚରା ଗରିବ ।"

ପାରମ୍ପରିକ ବାଜାବାଲା ଚାରିଜଣ ଆସି ପହଞ୍ଚିଲେ । ସେତେବେଳେ ଅପରାହ୍ଣ ଚାରିଟା । ମୋ ବାପା ଯାଇ ସେମାନଙ୍କୁ ମାଆର ଶବାଧାର ଠିକ୍ ସାମ୍ନାରେ ଭେଟିଲେ । ମି.ବୋଙ୍ଗ ମାଆର ପାଟି ମେଲାକରି ନଅ ଡଙ୍ଗର ମୁଦ୍ରା ତା' ଭିତରେ ଥୋଇଦେଲେ, କହିଲେ, 'ଯାଅ, ତୁମକୁ ଘାଟ ପାରିକରାଇ ଦେବାର ମାସୁଲ ଯେ ।' ତାପରେ ମୁଠାଏ ତାସ୍ କଫିନ ଭିତରେ ଥୋଇଦେଇ ସେ କହିଲେ, 'ଭାଉଜ ସବୁବେଳେ ତାସ୍ ଖେଳୁଥିଲେ ।'

ସେଇ ରାତିସାରା ମୁଁ ମାଆର କଫିନ ପାଖରେ ଜଗିବସିଲି । ମୋ ମନ ଭିତରେ କେତେ ଉଦ୍ଦେଶ୍ୟ ବିହୀନ ଚିନ୍ତାଧାରା ଖେଳିବୁଲୁଥିଲା । 'ମୃତ୍ୟୁ ଆମ ସମସ୍ତଙ୍କ ପାଖକୁ ଆସିବ, ପ୍ରତ୍ୟେକଟି ପାଖକୁ ସୁନିଶ୍ଚିତ ।'

ବାହାର ଚଉତରାରେ, ମି.ବୋଙ୍ଗ ବସି କଫିନବାହକମାନଙ୍କ ସହ ତାସ୍ ଖେଳୁଥିଲେ । ଯେତେବେଳେ ହାରିଯାଉଥିଲେ ଦୌଡ଼ିଆସି ମାଆର କଫିନ ପାଖରେ ନଇଁପଡ଼ି କହୁଥିଲେ, 'ଭାଉଜ, ତୁମକୁ ଅନୁରୋଧ କରୁଛି, ପ୍ଲିଜ୍ ମତେ ସାହାଯ୍ୟ କର ଯେମିତି ସେମାନଙ୍କ ପକେଟ ସାଫ୍ କରିଦେବି ।'

ମୋ ଝିଅ ଦୁଇଟି ମୀ ଆଉ ଭୀ ମୋ ସାଥିରେ ଜଗିବସିଥାନ୍ତି । ମୀ ପଚାରିଲା, 'ମୃତ୍ୟୁର ଡଙ୍ଗାରେ ପାର ହେବାକୁ ତୁମକୁ କାହିଁକି ପଇସା ଦେବାକୁ ପଡ଼େ ?' 'ଆଉ ଜେଜେ ମା' ପାଟିରେ କାହିଁକି ପଇସା ରଖାହେଲା ?' ଭୀ ପଚାରିଲା । ମୁଁ କାନ୍ଦ କାନ୍ଦ

ହୋଇ କହିଲି, 'ତୁମେ ପିଲାଲୋକ, ବୁଝିପାରିବ ନାହିଁ ।' ଭୀ କହିଲା, 'ମୁଁ ବୁଝିଛି, ଜୀବନରେ ଲୋକେ ବୁଝିପାରନ୍ତି ନାହିଁ କେତେ ଟଙ୍କା ତାଙ୍କର ଦରକାର । ମୃତ୍ୟୁରେ ବି ସେଇ ସମାନ କଥା ।'

ମତେ ଭାରି ଏକୁଟିଆ ଲାଗିଲା । ମୋ ଝିଅମାନଙ୍କୁ ବି ସେମିତି ଲାଗୁଥିଲା । ତାସ୍ ଖେଳୁଥିବା ଦଳ ବି ସମାନ ଅନୁଭବ କରୁଥିଲେ । ମୋ ବାପା ବି ଠିକ୍ ସେଇ ନିଃସଙ୍ଗ ଅନୁଭବରେ ପୀଡ଼ିତ ଥିଲେ ।

ନଅ

ସମାଧିସ୍ଥଳ ମୋ ଘରଠାରୁ ସିଧାରେ ପାଞ୍ଚଶହ ମିଟର ହେବ, କିନ୍ତୁ ଗାଁ ମଝିରାସ୍ତାରେ ଗଲେ ଦୁଇ କିଲୋମିଟର । ଏ ବାଟ ବହୁତ ସରୁ, ସେଥିପାଇଁ କଫିନଟିକୁ ବୋହିନେବାକୁ ହେବ । ତିରିଶଜଣ ବାହକ ଏହାକୁ ପାଳିକରି ବୋହୁଥିଲେ, ସେମାନଙ୍କ ଭିତରୁ ଅନେକଙ୍କୁ ମୁଁ ଜାଣିନଥିଲି । ସେମାନେ କଫିନକୁ ଏପରି ବୋହୁଥିଲେ ଯେପରି ସେମାନେ ଶବବାହକ ନଥିଲେ, ଘରର କେଉଁ ଜିନିଷ ଏଠାରୁ ସେଠାକୁ ବୋହୁଥିଲେ । ସେମାନେ ପାନ ଚୋବାଉଥିଲେ, ସିଗାରେଟ ଫୁଙ୍କୁଥିଲେ ଆଉ ଚାଲିଲାବେଳକୁ ଖୁସିଗପରେ ମାତିଥିଲେ । ଯେତେବେଳେ ବିଶ୍ରାମ ନେଉଥିଲେ ତ ଇତସ୍ତତଃ କଫିନ ଚାରିପଟେ ଠିଆହେଉଥିଲେ ବସିପଡୁଥିଲେ । ତାଙ୍କ ଭିତରୁ ଜଣେ ମାଟି ଉପରେ ଗଡ଼ି ବି ପଡ଼ିଲା ଆଉ ସନ୍ତୋଷର ସହ କହିଲା, 'ଆଃ, ଏଠି ପ୍ରକୃତରେ ଥଣ୍ଡା ଲାଗୁଛି, ଆମେ ଯଦି ଏତେ ବ୍ୟସ୍ତରେ ନଥାନ୍ତେ, ମୁଁ ଏଇଠି ରାତିସାରା ଶୋଇପାରନ୍ତି ।' ମି.ବୋଙ୍ଗ ତାକୁ ତରତର କରାଇଲେ; 'ହେ, ଉଠ, ଉଠ, ଚାଲ, ଆମକୁ ଯାଇ ପୁଣି ଭୋଜି ପାଇଁ ଫେରିବାକୁ ହେବ ଠିକ୍ ସମୟରେ ।'

ତାପରେ ଶବ ପଟୁଆର ଚାଲିଲା । ପରମ୍ପରା ଅନୁଯାୟୀ କଫିନ ଆଗରେ ମୁଁ ଗୋଟେ ବାଡ଼ି ସାହାରାରେ ପଛେଇ ପଛେଇ ଚାଲୁଥିଲି । ମି.ବୋଙ୍ଗ କହିଲେ, 'ମୁଁ ଯେତେବେଳେ ମରିବି, ସବୁ କୁଆଡ଼ି ମୋ କଫିନ ବୋହିବାକୁ ଆସିବେ, ଆଉ ମୋ ଅନ୍ତ୍ୟେଷ୍ଟିକ୍ରିୟାରେ ଘୁଷୁରି ମାଂସ ରନ୍ଧା ହେବ ନାହିଁ । କୁକୁର ମାଂସରେ କାମ ଚଳିବ ।' 'ଓଃ, ଭାଇ, ତୁମେ ଏଭଳି ଗୋଟେ ସମୟରେ ପରିହାସ କରୁନାହଁ ତ ?' ମୋ ବାପା ଦୁଃଖରେ କାତର ହୋଇ କହିଲେ । ମି.ବୋଙ୍ଗ କିଛି ବେଳ ଚୁପ୍ ରହିଯାଇ ବଡ଼ ପାଟିରେ କାନ୍ଦି ଉଠିଲେ, 'ହେ ଭାଉଜ, ତୁମେ ଏପରି ହଠାତ୍ ଚାଲିଯାଇ ଆମ ସମସ୍ତଙ୍କୁ ଠକିଦେଲ ... ମୋତେ ତୁମେ ଅନାଥ କରିଗଲ ... ।' ମୁଁ ଭାବିଲି, 'ଠକେଇ କାହିଁକି ? ପ୍ରକୃତରେ କ'ଣ କେହି ମୃତଲୋକ ଜୀବିତ ଲୋକଙ୍କୁ ଠକିବା ସମ୍ଭବ ? ଏହି କବରସ୍ଥଳୀ କ'ଣ କେବଳ ଠକମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଛି ?'

ଶବାଧାର ପୋତା ହୋଇଯିବା ପରେ ସମସ୍ତେ ଘରକୁ ଫେରିଲେ । ଅତିଥିମାନଙ୍କ ପାଇଁ ଅଠେଇଶଟି ଖାଦ୍ୟ ଟ୍ରେ ବାହାରେ ଥୁଆ ହୋଇଥିଲା । ସେସବୁକୁ ଅନେଇଦେଲାକ୍ଷଣି, ମିସ୍ ଲାଇର କାମ ପ୍ରତି ପ୍ରଶଂସାରେ ମୋ ମନ ଭରିଗଲା । ସବୁ ଟେବୁଲରୁ ଉଚ୍ଚସ୍ୱର ଶୁଭୁଥିଲା, 'ମିସ୍ ଲାଇ କାହିଁ ?' 'ଏଇଠି, ଏଇଠି ।' ସେ ତରତର ହୋଇ ମଦ୍ୟ ଓ ମାଂସର ଟ୍ରେ ଧରି ଦୌଡୁଥିଲା । ସଂଧ୍ୟାହେଲା, ସେ ଗାଧୋଇପଡ଼ି ସଫା ଇସ୍ତ୍ରୀ ପୋଷାକ ପିନ୍ଧିପକାଇଲା । ତାପରେ ପରିବାରର ପୂଜାବେଦୀ ପାଖକୁ ଗଲା ଆଉ କାନ୍ଦି ଲାଗିଲା, 'ଓ ଜେଜେମା', ମତେ କ୍ଷମା କରିଦିଅ, କାରଣ ତୁମ ଶେଷ ବିଶ୍ରାମସ୍ଥଳୀକୁ ଗଲାବେଳେ ମୁଁ ତୁମ ପାଖରେ ନଥିଲି ... ସେଦିନ ତୁମେ କଙ୍କଡ଼ା ସୁପ୍ ଖାଇବାକୁ ଚାହୁଁଥିଲ କିନ୍ତୁ ମୁଁ ଅତି ଅଳସୁଆ ହୋଇ ତୁମପାଇଁ ରାନ୍ଧିନଥିଲି । ଏବେ ମୁଁ ମାର୍କେଟ୍ ଗଲେ କାହାପାଇଁ ଖାଇବା ଜିନିଷ ଆଣିବି ... ?' ମତେ ବହୁତ ଖରାପ ଲାଗିଲା ଗତ ଦଶବର୍ଷ କଥା ଭାବି, ମୁଁ ଜାଣିଲି ଯେ ମାଆପାଇଁ ଗୋଟେ ପାଉଁରୁଟି ବନ କିମ୍ୱା ମିଠା ପାକେଟ୍‌ଟିଏ ମୁଁ କେବେ ଆଣିନାହିଁ । ମିସ୍ ଲାଇ କାନ୍ଦି କାନ୍ଦି କହିଲା ; 'ଜେଜେମା', ମୁଁ ଘରେ ଥିଲେ ତୁମେ କ'ଣ ମରିଯାଇଥାନ୍ତ ?' ମୋ ସ୍ତ୍ରୀ କହିଲା, 'କାନ୍ଦ ବନ୍ଦକର ।' ମୁଁ ରାଗରେ ଉତ୍ତରଦେଲି, 'ତାକୁ କାନ୍ଦିବାକୁ ଦିଅ । ବିକଳ କାନ୍ଦ ବିନା ଗୋଟେ ଅନ୍ତ୍ୟେଷ୍ଟି ବାସ୍ତବରେ ଭାରି ଦୁଃଖଦ । ପରିବାରରେ ଆଉ କିଏ ଅଛି ଯେ ମା' ପାଇଁ କାନ୍ଦିବ ?' ମୋ ସ୍ତ୍ରୀ ମୋ କଥାକୁ କାନ ନଦେଇ କହିଲା, 'ବତିଶଟା ଟ୍ରେ । ମୋର ସଠିକ୍ ହିସାବ ଦେଖି ତୁମେ ଖୁସି ନୁହଁ ?'

'ଠିକ୍ କହିଛ', ମୁଁ ଉତ୍ତରଦେଲି । ମି.ବୋଙ୍ଗ କହିଲେ, 'ମୁଁ ଯାଉଛି ଜାତକଟା ଦେଖିନେବି । ତୁମ ମାଆ ଗୋଟେ ଶୁଭଲଗ୍ନରେ ସମାଧିସ୍ଥ ହୋଇନାହିଁ । ତାର ସମାଧି ଥରେ ବଦଳା ହେବ, ଦୁଇଥର ତାର ଶ୍ରାଦ୍ଧ ହେବ, ଗୋଟେ ଥର ପ୍ରବାସ ଗମନ ହେବ । ମନ୍ଦଶକ୍ତିମାନଙ୍କୁ ଘଉଡ଼େଇବାକୁ ତା ପାଖରେ ଯାଦୁକରୀ ତାବିଜ ଥିଲା ତ ?' ଏଥର ମୋ ବାପା ଉତ୍ତରଦେଲେ, 'ତାବିଜଫାବିଜ ସବୁ ମାଙ୍କଡ଼ଙ୍କ କାମ । ମୋ ଜୀବନକାଳ ଭିତରେ ମୁଁ ତିନିହଜାର ଲୋକଙ୍କୁ କବର ଦେଇଛି, ଆଉ ସେମାନଙ୍କ ଭିତରୁ ଜଣକ ପାଖରେ ବି ତାବିଜ ନଥିଲା ।' ମି.ବୋଙ୍ଗ କହିଲେ, 'ସେମାନଙ୍କର ସୁଖମୟ ଅନ୍ତ ହୋଇଛି, ବ୍ୟାଙ୍ଗ୍ ... ଗୋଟେ ଗୁଳି ।' ସେ ନିଜର ତର୍ଜନୀ ଅଙ୍ଗୁଳିଟିକୁ ଶୂନ୍ୟରେ ଉଠାଇ ଗୋଟେ କାଳ୍ପନିକ ଟ୍ରିଗରକୁ ଚାପିଦେଲେ ।

ଦଶ

ସେହି ନୂଆବର୍ଷ ଦିନ ମୋ ପରିବାର ନା କିଣିଲେ କୋଳିଗଛ ନା ପିଠାକରି ସୁନ୍ଦର ଛରି ଘୋଡ଼େଇ ବାଣ୍ଟିଲେ । ଦ୍ୱିତୀୟ ଦିନ ଉପରଓଳି ମୋ ବାପାଙ୍କ ପୁରୁଣା ସେନା ୟୁନିଟ୍ କେତେ ଲୋକଙ୍କୁ ପଠାଇଲେ ମୋ ମାଆର କବରସ୍ଥଳୀ ଦର୍ଶନ କରିଯିବାକୁ । ସେମାନେ ପାଞ୍ଚଶହ ଡଙ୍ଗ୍ (ଟଙ୍କା)ର ଚେକ୍ ଦେଲେ, ବାପାଙ୍କର ଜଣେ ପୂର୍ବତନ ଡେପୁଟୀ ମି.ଚୋଙ୍ଗ୍, ଯିଏ ଏବେ ଜେନେରାଲ ପାହ୍ୟାକୁ ଉନ୍ନୀତ ହୋଇଥିଲେ, କବର ପାଖକୁ ଯାଇ ଧୂପ ଜଳାଇଲେ । କ୍ୟାପ୍ଟେନ୍ ଥାନ୍, ତାଙ୍କ ସହକର୍ମୀ, ନିଜ ପିସ୍ତଲ କାଢ଼ି ତିନିଥର ଶୂନ୍ୟକୁ ଗୁଳିମାରିଲେ । ଗାଁ ପିଲାମାନେ ସାଙ୍ଗେ ସାଙ୍ଗେ ଗାଁସାରା ରାଷ୍ଟ୍ର କରିଦେଲେ ଯେ ସେନାବାହିନୀ ମାଡ଼ାମ ଥୁଆଁଙ୍କ କବର ଦର୍ଶନ କରି ଏକୋଇଶ ତୋପ ସଲାମୀ ଦେଇଥିଲେ । ସେ ଯା'ହେଉ, ମି.ଚୋଙ୍ଗ ମୋ ବାପାଙ୍କୁ ପଚାରିଲେ, 'ଆପଣ କ'ଣ ଆସି ଆପଣଙ୍କ ପୁରୁଣା ୟୁନିଟ୍ ଦେଖିବାକୁ ପସନ୍ଦ କରିବେ ? ମେ ମାସରେ ସୈନ୍ୟମାନଙ୍କର ସଙ୍ଗଠିତ ଗୁଳିଚାଳନା ଅଭ୍ୟାସ ହେବ । ଆମେ ଆପଣଙ୍କ ପାଇଁ କାର ପଠାଇବୁ ।' ବାପା କହିଲେ, 'ଭଲକଥା, ମୁଁ ଆସିବି ।'

ମି.ଚୋଙ୍ଗ୍ ପରିବାରର ଜମିଜାଗା ବୁଲି ଦେଖିଲେ, ମି.କୋ ତାଙ୍କୁ ସବୁ ବୁଝାଉଥାନ୍ତି । 'ଆପଣଙ୍କ ଭୂସମ୍ପତ୍ତି ପ୍ରକୃତରେ ଦେଖିଲାଭଳି, ଗୋଟେ ବଗିଚା ଗଛରେ ଭର୍ତ୍ତି, ଗୋଟେ ପୋଖରୀ ମାଛରେ ଭର୍ତ୍ତି, ଘୁଷୁରି ଖୁଆଡ଼, କୁକୁଡ଼ା ଚାଷ ଆଉ ଗୋଟେ ବିରାଟ ବାସଗୃହ', ମି.ଚୋଙ୍ଗ୍ କହିଲେ ମୋ ବାପାଙ୍କୁ । ବାପା ଉତ୍ତରଦେଲେ, 'ମୋ ପୁଅ ଏସବୁ କରିଛି ।' ତୁମ ପୁଅର ସ୍ତ୍ରୀ ଏସବୁ କରିଛି', ମୁଁ କହିଲି । ମୋ ସ୍ତ୍ରୀ ଯୋଗକଲା, 'ଆଉ ମିସ୍ ଲାଇ ?' ମିସ୍ ଲାଇ ଅପ୍ରତିଭ ହୋଇ ହସିଲା ଆଉ ମୂର୍ଚ୍ଛା ହେଲା ପରି ମୁଣ୍ଡ ହଲେଇ କହିଲା, 'ନା, ସେମିତି କିଛି ନୁହେଁ ।' ମୋ ବାପା ତା କଥା ଉପରେ କହିଲେ, 'ସେ ବହୁତ ଧନ୍ୟବାଦ ପାଇବା କଥା, ଆମ ଘରବାଡ଼ି ଏ ଅଞ୍ଚଳରେ ସମସ୍ତଙ୍କର ଆଦର୍ଶ, ଏଠି ବଗିଚା ଅଛି, ପୋଖରୀ, ପଶୁପାଳନ ଅଛି ।'

ତୃତୀୟ ଦିନ କିଂଚି ଗୋଟେ ରିକ୍ସାରେ ତା' ଝିଅକୁ ଧରି ଆମ ଘରକୁ ଆସିଲା । ମୋ ସ୍ତ୍ରୀ ତାକୁ ନୂଆବର୍ଷ ପାଇଁ ଏକହଜାର ଡଙ୍ଗ୍ ଦେଲା । ମୋ ବାପା ପଚାରିଲେ, 'ତୁଆଁଠାରୁ କିଛି ପାଇଛୁ ?' 'ନା', କିଂଚି କହିଲା । ବାପା କହିଚାଲିଲେ, 'ସବୁଦୋଷ ମୋର, ମୁଁ ଜାଣିନଥିଲି ତୁମର ଝିଅ ହେବ ବୋଲି ।' ମୋ ସ୍ତ୍ରୀ କହିଲା, 'ଏଥିରେ ଜାଣିବାର କ'ଣ ଅଛି ? ଆଜିକାଲି ତ କୁମାରୀ କେଉଁଠି ନାହାନ୍ତି । ମୁଁ ମଝିରୁ କହିଲି, 'ସେମିତି କୁହନି, ଆଜିକାଲି ଗୋଟେ ଝିଅପାଇଁ କୁମାରୀତ୍ୱ ରକ୍ଷାକରିବା ପ୍ରକୃତରେ କଷ୍ଟକର ।' କିଂଚି କାନ୍ଦିପକାଇଲା, 'ଓ ଥୁଆନ୍, ଆମ ସ୍ତ୍ରୀଲୋକଙ୍କ ପାଇଁ ଏହା ଏତେ

ଲଜ୍ଜାକର । ପୁଣି ଝିଅଟିଏ ଜନ୍ମ ଦେଇଥିବା କଥା ମୋ ଭିତରକୁ କାଟି ଖଣ୍ଡ ଖଣ୍ଡ କରିଦେଉଛି ।' 'ମୋର ବି ଦୁଇଟି ଝିଅ ଅଛନ୍ତି', ମୋ ସ୍ତ୍ରୀ କହିଲା । ମୁଁ କହିଲି, 'ତାହେଲେ ତୁମେ ଭାବୁଛ ପୁରୁଷ ହେବାରେ କିଛି ଲଜ୍ଜା ନାହିଁ ?' ମୋ ବାପା ଆଉ ସମ୍ଭାଳିପାରିଲେ ନାହିଁ, କହିଲେ, 'ପୁରୁଷ, ଯାହାର ହୃଦୟ ଅଛି ସେ ଲଜ୍ଜା ଅନୁଭବ କରେ, ଯେତେ ବଡ଼ ହୃଦୟ ସେତେ ଲଜ୍ଜା ।' 'ତୁମେମାନେ ଏମିତି କଥାବାର୍ତ୍ତା କରୁଛ ଯେପରି ପାଗଳ ହୋଇଯାଇଛି, ଯଥେଷ୍ଟ ହୋଇଗଲା । ଆସ ଖାଇବା । କିଂଚି ଆଜି ଆମ ସାଥିରେ ଅଛନ୍ତି, ମୁଁ ଆଜି ପଦ୍ମକେଶର ଦେଇ କୁକୁଡ଼ା ରାନ୍ଧିଛି । ଏହା ମୋ ହୃଦୟରୁ ଆସିଛି । ସବୁଜିନିଷ ପଛ ଆଗ ଖାଇବା ।' ମୋ ସ୍ତ୍ରୀ କହିଲା ।

## ଏଗାର

ଆମ ଘରଠାରୁ ଅଳ୍ପଦୂରରେ ଗୋଟେ ଯୁବକ ରହୁଥିଲା, ତା ନାଁ କନ୍ ଯାହାକୁ ପିଲାଏ କନଫୁସିୟସ୍ ଡାକନ୍ତି । ସେ ଗୋଟେ ମାଛ ଆଚାର କମ୍ପାନୀରେ କାମ କରେ । ସେ କବିତା ବି ଲେଖେ ଆଉ ବଡ଼ ବଡ଼ ନାମୀ ପତ୍ରିକାକୁ ବି ପଠାଏ । କନ୍ ବହୁତ ସମୟରେ ଆମ ଘରକୁ ଆସେ । ସେ କହେ, 'ଅତିବାସ୍ତବ କବିତା ସବୁଠାରୁ ଭଲ ।' ଲୋର୍କା ଆଉ ହ୍ୱିଟମାନଙ୍କ କବିତା ପଢ଼ି ମତେ ଶୁଣାଏ । କନ୍‌କୁ ମୁଁ ଭଲପାଏ ନାହିଁ, ମୋ ମନରେ ସନ୍ଦେହ ଯେ କୌଣସି ଅଧିକ ଉଦ୍ଦୀପକ ଆନନ୍ଦ ପାଇବାକୁ ବୋଧେ ସେ ଆସୁଛି । ଦିନେ ଲକ୍ଷ୍ୟକଲି, ମୋ ସ୍ତ୍ରୀ ଖଟ ଉପରେ ଗୋଟେ ହାତଲେଖା ପାଣ୍ଡୁଲିପି ଅଛି । ମୋ ସ୍ତ୍ରୀ କହିଲା, 'ସେଗୁଡ଼ା କନ୍‌ର କବିତା, ତୁମେ ଦେଖିବ କି ?' ମୁଁ ମୁଣ୍ଡ ହଲେଇ ମନାକଲି । ମୋ ସ୍ତ୍ରୀ କହିଲା, 'ତୁମେ ବୁଢ଼ା ହୋଇଗଲଣି ।' ଗୋଟେ ଆଶାତୀତ କମ୍ପନ ମୋ ଦେହସାରା ଚରିଗଲା ।

ଆଉ ଦିନେ ମୁଁ କାମରେ ବ୍ୟସ୍ତରହି ଡେରିରେ ଘରକୁ ଆସିଲି । ମୋ ବାପା ଗେଟ୍ ପାଖରେ ଥିଲେ ଆଉ ମତେ କହିଲେ, 'ଯୁବକ କନ୍ ସଂଧ୍ୟାବେଳଠୁ ଘରେ ଆସି ବସିଛି । ସେ ଆଉ ତୋ ସ୍ତ୍ରୀ ସେତିକିବେଳଠୁ ଗପୁଛନ୍ତି । ସେ ଯିବା ନାମ ଧରୁନି । ଏହା ସହିବା ମୁସ୍କିଲ ।' 'ବାପା, ଯାଅ ଶୋଇପଡ଼, ଏସବୁ ଆଡ଼କୁ ଧ୍ୟାନଦେଇ ଲାଭ କ'ଣ ? ମୁଁ କହିଲି । ବାପା ମୁଣ୍ଡ ଟୁଙ୍ଗାରି ନିଜ କୋଠରିକୁ ଚାଲିଗଲେ । ମୁଁ ମଟର ବାଇକଟି ଠେଲି ଠେଲି ସଡ଼କ ଉପରକୁ ଆଣିଲି ଆଉ ଲକ୍ଷ୍ୟହୀନ ଭାବରେ ଗଳିମାନଙ୍କରେ ଘୂରିବୁଲିଲି ପେଟ୍ରୋଲ ସରିଲାଯାଏଁ । ଗୋଟେ ପାର୍କ କୋଣକୁ ବାଇକଟି ଠେଲି ଦେଇ ବସିପଡ଼ିଲି ଗୋଟେ ବାସ୍ତୁହରା ପରି ଯାହାର ଯିବାକୁ କୌଣସି ଜାଗା ନାହିଁ । ଝିଅଟିଏ ମେଞ୍ଚେ ପାଉଡ଼ରଲଗା ମୁହଁରେ ମତେ ଚପିଯାଉ ଯାଉ ପଚାରିଲା, 'ହେ, ମୋ ସାଥିରେ ଆସିବ କି ?' ମୁଣ୍ଡ ହଲେଇ ମୁଁ ମନାକଲି ।

କନ୍ ମୋ ପାଖ ମାଡୁନଥିଲା । ମି.କୋ ତାକୁ ଘୃଣା କରୁଥିଲେ, ଆଉଦିନେ ମତେ କହିଲେ, ତୁମେ ଏଇକ୍ଷଣି ଯାଇ ତାକୁ ଭଲକରି ପାନେ ଦେଉନ କାହିଁକି ?' ମୁଁ ତା' କଥାରେ ରାଜିହୋଇଆସୁଥିଲି, ହେଲେ ପୁଣି ଭାବିଲି – 'ଛାଡ଼ ଏସବୁ ।'

ମୁଁ ଲାଇବ୍ରେରୀକୁ ଯାଇ କେତେଗୁଡ଼େ ବହି ଆଣିଲି । ଲୋର୍କା, ହ୍ୱିଟମାନଙ୍କୁ ପଢ଼ି ମୋର ଗୋଟେ ଅସ୍ପଷ୍ଟ ଧାରଣା ହେଲା ଯେ ମହାନ୍ କଳାକାରମାନେ ସବୁଠାରୁ ନିଃସଙ୍ଗ ବ୍ୟକ୍ତି । ହଠାତ୍ ଦେଖିଲି କନ୍ ହିଁ ଠିକ୍ । ତା' ଉପରେ ମୁଁ ରାଗୁଥିଲି ମୋ କୁସଂସ୍କାର ପାଇଁ । କୁସଂସ୍କାର – ସେ ତା' କବିତାଗୁଡ଼ିକୁ ଆଉ କାହାକୁ ପଢ଼ିବାକୁ ନଦେଇ ମୋ ସ୍ତ୍ରୀକୁ କାହିଁକି ଦେଉଥିଲା ?

ମୋ ବାପା କହିଲେ, 'ତୁ ଭାରି ଦୁର୍ବଳମନା । ତୁ ୟାର ମୁକାବିଲା କର, କାରଣ ତୁ ଏକୁଟିଆ ରହିପାରିବୁ ନାହିଁ ।' 'ନା, ସେପରି କିଛି ନାହିଁ । ଜୀବନଟା ଅନେକ ପରିହାସରେ ଭରା', ମୁଁ କହିଲି । 'ତାହେଲେ ତୁ କହୁଛୁ ଜୀବନଟା ଗୋଟେ ଫାର୍ସ ?' ମୋ ବାପା ପଚାରିଲେ । 'ନା, ଏହା ଫାର୍ସ ନୁହେଁ, ହେଲେ ଏହା ବହୁତ ବେଶୀ ଗୁରୁତ୍ୱପୂର୍ଣ୍ଣ ବି ନୁହେଁ ।' ମୁଁ କହିଲି ।

ମୋ ବାପା ଗୁଣୁଗୁଣୁ ହୋଇ କହିଲେ, 'ମତେ କାହିଁକି ଏପରି ଲାଗୁଛି କହିଲୁ, ଯେପରି ମୁଁ ବିଚ୍ଛିନ୍ନ ହୋଇଯାଇଛି ?'

ମୋ ସଂସ୍ଥା କେତେ କାମରେ ମତେ ଦକ୍ଷିଣକୁ ପଠାଇବାକୁ ସ୍ଥିରକଲା । ମୁଁ ମୋ ସ୍ତ୍ରୀକୁ କହିଲି, 'ମୋ ଯିବାଟା ଠିକ୍ ହେବ ତ ? ନା ନାହିଁ ?' 'ନା, ତୁମେ ଯାଅ ନାହିଁ ।' ସେ ଉତ୍ତରଦେଲା । 'ତୁମେ କାଲି ବାଥରୁମ୍ କବାଟଟା ଠିକ୍ କରିଦେବ କି ? ସେଇଟା ଭାଙ୍ଗିଯାଇଛି । ଦିନେ ମୀ ଗାଧୋଉଥିବାବେଳେ, କନ୍ ଗୋଟେ ବାଜେ ବାହାନା କରି ବାଥ୍ରୁମ୍‌ରେ ପଶିଗଲା ଆଉ ମୀକୁ ଏକଦମ ଡରେଇଦେଲା । ସେ ବଦମାସଟା ପାଇଁ ମୁଁ ମୋ ଦୁଆର ବନ୍ଦ କରିଦେଇଛି ।' କାନ୍ଦି ପକେଇବା ଆଗରୁ ସେ ମତେ ବୁଝାଉଥିଲା, 'ସତରେ, ମୁଁ ତୁମକୁ ଆଉ ପିଲାମାନଙ୍କୁ ନିରାଶ କରିଛି ।' ସେ କାନ୍ଦିଲାଗିଲା । ମୁଁ ସହିନପାରି ବାହାରକୁ ପଳେଇଗଲି । ଭୀ ଯଦି ସେଠି ଥାଆନ୍ତା, ହୁଏତ ପଚାରିଥାନ୍ତା, 'ହେ ବାପା, ସେସବୁ କୁମ୍ଭୀରକାନ୍ଦଣା ନା ?'

## ବାର

ମେ ମାସରେ ବାପାଙ୍କ ପୁରୁଣା ସେନାନୀ ତାଙ୍କୁ ନେବାକୁ କାର ପଠାଇଲେ । କ୍ୟାପ୍ଟେନ ଥାନ୍ ଗୋଟେ ଚିଠି ଜେନେରାଲ ଚୋଙ୍ଗଙ୍କଠାରୁ ଆଣିଥିଲେ । ଚିଠି ଖୋଲିଲାବେଳକୁ ମୋ ବାପା ଥରୁଥିଲେ । ମୁଁ ପଢ଼ିଲି '... ଆମେ ବହୁତ ଆଶା କରିଛୁ ଆପଣ ଆସିପାରିବେ

ବୋଲି ... ହେଲେ ଯଦି ସେମିତି କିଛି କାମ ନାହିଁ ଆପଣ ଆସନ୍ତୁ ... ଆମେ ଆପଣଙ୍କୁ ବାଧ କରିବୁ ନାହିଁ ।' ମୁଁ ଭାବିଲି ବାପା ଯିବା ଉଚିତ୍ ହେବ ନାହିଁ, ହେଲେ ଏ ଅସହଜ ମୁହୂର୍ତ୍ତରେ କିଛି କହିବା ସହଜ ନଥିଲା । ମୋ ବାପା ଅବସର ନେବା ପରଠାରୁ ବହୁତ ବୁଢ଼ା ହୋଇଯାଇଥିଲେ । ହେଲେ ଚିଠି ଖଣ୍ଡିକ ହାତରେ ଧରି ସେ କେତେ ଯୁବସୁଲଭ ଆଉ ସତେଜ ଦେଖାଯାଉଥିଲେ । ମୁଁ ବି ଖୁସିଥିଲି । ମୋ ସ୍ତ୍ରୀ କିଛି ଖାଦ୍ୟ ପ୍ରସ୍ତୁତ କରି ପୋଷାକପତ୍ର ସହ ଗୋଟେ ଟ୍ରାଭେଲ ବ୍ୟାଗ୍‌ରେ ରଖିଦେବାକୁ କହିଲା । ବାପା କହିଲେ, 'ସେସବୁ ମୋ ବ୍ୟାଗ୍‌ରେ ରଖିଦିଅ ।'

ମୋ ବାପା ବାହାରିଗଲେ ଆଉ ଗାଁର ସମସ୍ତଙ୍କଠାରୁ ଗୋଟି ଗୋଟି କରି ବିଦାୟ ନେଲେ, ତାପରେ ମୋ ମାଆର ସମାଧି ପାଖକୁ ଗଲେ ଆଉ କ୍ୟାପ୍‌ଟେନ୍ ଥାନ୍‌ଙ୍କୁ କହିଲେ, ଶୂନ୍ୟକୁ ତିନିଥର ଗୁଳିମାରିବାକୁ । ଯିବାଆଗରୁ ମି.କୋକୁ ଡାକି ତାକୁ ଦୁଇହଜାର ଡଙ୍ଗ୍ ଦେଲେ ଆଉ କହିଲେ ଗୋଟେ ସମାଧିଫଳକ ଲେଖାଇ ତା' ସ୍ତ୍ରୀର ସମାଧିରେ ଲଗାଇବାକୁ ଗାଁକୁ ପଠାଇଦେବ । ତାପରେ ମୋ ବାପା ଡାକିଲେ ମିସ୍ ଲାଇକୁ ଆଉ କହିଲେ, 'ମନସ୍ଥିର କରିନେ ଯେ ତୁ ନିଶ୍ଚୟ ବାହା ହୋଇଯିବୁ ।' ମିସ୍ ଲାଇ କାନ୍ଦିପକାଇଲା, 'ମୁଁ ଏତେ ଅସୁନ୍ଦର, ମତେ କେହି ବାହା ହେବ ନାହିଁ । ମୁଁ ଏତେ ସରଳ, ଓଲୁ ।' 'ସୁନାଝିଅ, ଆରେ, ତୁ କ'ଣ ଏତିକି ଆଜିଯାଏଁ ବୁଝିଲୁ ନାହିଁ ଯେ ସରଳତା ଆମକୁ ଜୀଇଁବାକୁ ଶକ୍ତିଦିଏ ।' ମୋ ବାପା କହୁ କହୁ ଆବେଗରେ ଚୁପ୍ ହୋଇଗଲେ । ମୁଁ ସେତେବେଳେ ଜାଣିପାରିନଥିଲି ଯେ ଏ ଶବ୍ଦଗୁଡ଼ିକ ଥିଲା ଏକ ସଙ୍କେତ, ଆଉ ସେ କେବେ ତାଙ୍କର ଏ ଯାତ୍ରାରୁ ଫେରିବେ ନାହିଁ ।

କାର୍‌ରେ ବସିବା ଆଗରୁ, ମୋ ବାପା ତାଙ୍କ ବ୍ୟାଗ୍‌ରୁ ଗୋଟେ ଛୋଟ ଏକ୍ସରସାଇଜ୍ ଖାତା ବାହାରକଲେ ଆଉ ମତେ ଦେଲେ, 'ଏଥିରେ ମୁଁ ଅଳ୍ପ କିଛି ଲେଖିଛି, ତୁ ଦେଖିବୁ, ପଢ଼ିବୁରେ ପୁଅ ।' ସେ କହିଲେ ମୀ ଆଉ ଭୀ ତାଙ୍କ ଜେଜେବାପାଙ୍କୁ ବିଦାୟ ଦେଲେ । ମୀ ପଚାରିଲା, 'ଜେଜେବାପା, ତୁମେ କ'ଣ ଯୁଦ୍ଧ କରିବାକୁ ଯାଉଛ ?' 'ହଁ', ସେ ଉତ୍ତରଦେଲେ । ଭୀ ଗୋଟେ ଗୀତର ପ୍ରଥମ ଧାଡ଼ିଟି ଗାଇଲା, 'ସେଇ ବାଟ ଯାଇ ଯାଇଛି ଯୁଦ୍ଧକ୍ଷେତ୍ରକୁ, ଏ ଋତୁରେ ତାହା ମୋହିତ କରେ ମନକୁ', ତାପରେ କହିଲା, 'ଠିକ୍ ନୁହେଁ ଜେଜେବାପା ?'

'ଦୁଷ୍ଟଝିଅ', ମୋ ବାପା ସସ୍ନେହ ଗାଳିଦେଲେ ।

ତେର

ମୋ ବାପା ଘରୁଯିବାର ଅଳ୍ପଦିନ ପରେ, ଘରେ ଗୋଟେ ମଜା, କୋଳାହଳପୂର୍ଣ୍ଣ ଘଟଣା ଘଟିଲା । ଘଟଣାଟି ଏହିପରି । ମି.କୋ ଆଉ ମି.ବୋଙ୍ଗ ମିଶି ପୋଖରୀରୁ ପଙ୍କ କାଢୁଥିଲେ । ମୋ ସ୍ତ୍ରୀ ମି.ବୋଙ୍ଗଙ୍କୁ ଦିନକୁ ଦୁଇଶ ଡଙ୍ଗ୍ ଆଉ ଖାଇବାକୁ ଦେଉଥିଲା । ସେମାନେ ହଠାତ୍ ଗୋଟେ ପାଣିଜାର୍‌ର ତଳଟି ଉପରକୁ ଉଠିଆସିଥିବା ଦେଖିଲେ । ଉଭୟେ ଆହୁରି ଉତ୍ସୁକ ହୋଇ ଖୋଳି ଚାଲିଲେ, ତାପରେ ଆଉ ଗୋଟିଏ ପାଣି ଜାର୍ ପାଇଲେ । ମି.ବୋଙ୍ଗ ନିଶ୍ଚିତ ଥିଲେ ଯେ ଆଗକାଳରେ ଲୋକମାନେ ନିଜର ଅଳଙ୍କାର ଲୁଚେଇ ରଖିବାକୁ ଜାର ବ୍ୟବହାର କରୁଥିଲେ । ଉଭୟେ ଆସି ମୋ ସ୍ତ୍ରୀକୁ କହିଲେ । ସେମାନେ ପୋଖରୀରୁ ବାହାରି, ଭଲକରି ଦେଖିନେଇ ପହଁରିକି ପୋଖରୀ ଭିତରକୁ ପଶିଗଲେ । ତାଙ୍କୁ ଅନୁସରଣ କଲେ ମିସ୍ ଲାଇ, ମୀ ଆଉ ଭୀ । ସାରାପରିବାର ପଙ୍କରେ ଲଟପଟ ହୋଇଗଲେ । ମୋ ସ୍ତ୍ରୀ ପୋଖରୀରେ ମାଛଥିବା ଅଂଶରୁ ବିଭାଜକଟି କାଢ଼ି ଗୋଟେ ପାଣିପମ୍ପ ଆଣି ଶୁଖାଇଦେଲା । ଚାରିପାଖେ ବାତାବରଣ ଏବେ ଖୁବ୍ ଗମ୍ଭୀର । ମି.ବୋଙ୍ଗ ନିଜ ଉପରେ ଏବେ ଖୁବ୍ ଖୁସି ହୋଇ କହିଲେ, 'ମୁଁ ଯେହେତୁ ଏହାକୁ ଆଗ ଦେଖିଛି, ଯାହା ତୁମକୁ ମିଳିବ ସେଥିରୁ ଗୋଟେ ଜାର୍ ମୁଁ ନେବି ।' ଦିନସାରା ଲାଗିପଡ଼ି ଖୋଳିବାପରେ ଦୁଇଟି ଫଟା ଜାର୍ ମିଳିଲା ଯେଉଁଥିରେ କିଛି ନଥିଲା । ମି.ବୋଙ୍ଗ କହିଲେ, 'ଆହୁରି ଅଧିକ ନିଶ୍ଚୟ ମିଳିବ ।'

ଖୋଳା ଚାଲୁରହିଲା । ଆଉ ଗୋଟିଏ ଜାର୍ ଆବିଷ୍କୃତ ହେଲା । ଏହା ବି ଭାଙ୍ଗିଯାଇଥିଲା । ପରିବାରବର୍ଗ ସମସ୍ତେ ଥକିପଡ଼ିଥିଲେ । କେହି ଖାଇନଥିଲେ । ମୋ ସ୍ତ୍ରୀ କିଛି ପାଉଁରୁଟି ବରାଦ କରି ମଗାଇ ଆଣିଲା ତାହେଲେ ସେମାନେ ନିଜ ଶକ୍ତି ପୁଣି ଫେରିପାଇବେ । ଖୋଳାଚାଲିଲା । ପ୍ରାୟ ଦଶମିଟର ଗଭୀରତାରେ ସେମାନେ ଗୋଟେ ପୋର୍ସିଲେନ୍ ପାତ୍ର ଉଦ୍ଧାର କଲେ । ସମସ୍ତେ ଏଥର ଆନନ୍ଦରେ ବିହ୍ୱଳ ହୋଇଗଲେ ଆଉ ଭାବିଲେ ଯା'ହେଉ ଶେଷରେ ସେମାନେ ସୁନାଖଣିର ସନ୍ଧାନ ପାଇଛନ୍ତି । ଯେତେବେଳେ ଏହାକୁ ସେମାନେ ଖୋଲିଲେ, ଦେଖିଲେ ବୋ'ଦାଇ ଅମଳର ଢଙ୍କଲଗା କିଛି ମୁଦ୍ରାର ଗୋଟିଏ ମାଳା ଆଉ ଗୋଟିଏ ଚେପ୍ଟା ପଦକ । ମି.ବୋଙ୍ଗ କହିଲେ, 'ଅଦ୍ଭୁତ ହୋଇଗଲା, ମତେ ମରିଗଲା ପରି ଲାଗୁଛି । ଏବେ ମୋର ମନେପଡୁଛି, ବହୁବର୍ଷ ତଳେ, ସେଇ ଡାକୁ ନାନ୍ ସାଙ୍ଗେ ମିଶି ହାନ୍-ତିନ୍ ଘରୁ ମୁଁ ଚୋରି କରିଥିଲି । ଆମକୁ ପଛରୁ ଲୋକେ ଗୋଡ଼ାଉଥିଲେ ଆଉ ନାନ୍ ଚୋର ଏଇ ପାତ୍ରଟିକୁ ପୋଖରୀ ଭିତରକୁ ଫିଙ୍ଗିଦେଇଥିଲା । ସମସ୍ତେ ହସି ହସି ଗଡ଼ିଗଲେ । ନାନ୍ ଗୋଟେ ବଦମାସ୍ ଚୋର ହୋଇ ସହର ବାହାରେ ରହୁଥିଲା ଆଉ ହାନ୍-ତିନ୍ ଫ୍ରେଞ୍ଚ କର୍ଣ୍ଣେଲ-ଆର୍ମିରେ ଗୋଟେ ଜର୍ମାନ ବିରୋଧୀ ଆନ୍ଦୋଳନରେ

ଯୋଗଦେଇଥିଲେ ପ୍ରଥମ ବିଶ୍ୱଯୁଦ୍ଧବେଳେ । ଏବେ ସେ ଦି'ଜଣଯାକ ମୃତ ବନ୍ଧୁକାଳୁ । ମି.ବୋଙ୍ଗ କହିଲେ, 'ଏବେ ଏ ଗାଁସାରା ଲୋକ ମରିଗଲେ ବି କିଛି ଯାଏଆସେ ନାହିଁ । ମୋ ପାଖରେ ତଥାପି ବହୁତ ଟଙ୍କା ଥିବ ପାଟିରେ ଘାଟ–କଉଡ଼ି ଦେବାକୁ ।'

ପରଦିନ ଭୋରୁ ମୁଁ ଶୁଣିଲି ଗେଟ୍ ପାଖରେ କିଏ ଡାକୁଛି । ଉଠିପଡ଼ି ଯାଇ ଦେଖିଲି କନ୍ ଗେଟ୍ ବାହାରେ ଠିଆହୋଇଛି, ମନେମନେ ଭାବିଲି, 'ବାଷ୍ଟାର୍ଡ଼ ଶଳା ! ୟାଠାରୁ ଅଧିକ ଖରାପ ସୂଚନା ଆଉ କିଛି ନାହିଁ ।' କନ୍ କହିଲା, 'ଥୁଆନ୍, ତୁମର ଟେଲିଗ୍ରାମ ଆସିଛି । ତୁମ ବାପା ମରିଯାଇଛନ୍ତି ।'

## ଚଉଦ

ଟେଲିଗ୍ରାମଟି ଆସିଥିଲା ଜେନେରାଲ ଚୋଙ୍ଗଠାରୁ : 'ମେଜର ଜେନେରାଲ ନୂୟେ ଥୁଆନ୍ କର୍ତ୍ତବ୍ୟରତ ଥିବାବେଳେ ମୃତ୍ୟୁବରଣ କଲେ, ସମୟ ... ସ୍ଥାନ ... ତାରିଖ ... । ଯୁଦ୍ଧକ୍ଷେତ୍ରର ସମାଧିସ୍ଥଳରେ ତାଙ୍କୁ କବର ଦିଆଯିବ ସମୟ ... ସ୍ଥାନ ... ତାରିଖ ।' ମୁଁ ହତବୁଦ୍ଧି ହୋଇଗଲି । ମୋ ସ୍ତ୍ରୀ ସାଙ୍ଗେ ସାଙ୍ଗେ ସବୁ ବନ୍ଦୋବସ୍ତ କରିପକାଇଲା । ମୁଁ ଯାଇ ଗୋଟେ କାର୍ ଭଡ଼ାରେ ଆଣି ଫେରିଲାବେଳକୁ ଦେଖିଲି ସବୁ ପ୍ରସ୍ତୁତ । ମୋ ସ୍ତ୍ରୀ କହିଲା, 'ଘରେ ତାଲା ପକାଇଦିଅ । ମି.କୋ ଏଠି ରହନ୍ତୁ ।'

ରାଜପଥ ଏକରେ ଆମେ ସିଧାରାସ୍ତା ଧରି କାଓ ବାଙ୍ଗ୍ ଆଡ଼କୁ ମୁହାଁଇଲୁ । ହେଲେ ଆମେ ପହଞ୍ଚିଲାବେଳକୁ ମୋ ବାପାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଦୁଇଘଣ୍ଟା ଆଗରୁ ସରିଯାଇଥିଲା ।

'ଆପଣଙ୍କ ପରିବାର ପାଖରେ ଆମେ କ୍ଷମା ଚାହୁଁଛୁ', କହିଲେ ଜେନେରାଲ ଚୋଙ୍ଗ । 'ନା, ଏହାହିଁ ତାଙ୍କ ଭାଗ୍ୟରେ ଲେଖାଥିଲା', ମୁଁ କହିଲି । 'ତୁମ ବାପା ବହୁତ ଉଚ୍ଚ ସମ୍ମାନର ଯୋଗ୍ୟ', ଜୋର୍‌ଦେଇ କହିଲେ ମି.ଚୋଙ୍ଗ୍ । 'ତାହେଲେ ଆପଣ ତାଙ୍କୁ ସୈନିକର ସମ୍ମାନ ଦେଇ ସମାଧିସ୍ଥ କରିଛନ୍ତି ତ ?' ମୁଁ ପଚାରିଲି । ସେ ଉତ୍ତରଦେଲେ, 'ହଁ' । 'ଧନ୍ୟବାଦ ସାର୍', ମୁଁ କହିଲି । ଜେନେରାଲ ଚୋଙ୍ଗ୍ କହିଲେ, 'ତୁମ ବାପା ଯେତେବେଳେ ବି ଯୁଦ୍ଧ କ୍ଷେତ୍ରରେ ଥିଲେ, ଯୁଦ୍ଧ ଯେଉଁଠି ହେଉଥିବ ସେଇଠି ହିଁ ସବୁବେଳେ ରହୁଥିଲେ ।' ମୁଁ କହିଲି, 'ସେକଥା ମୁଁ ଜାଣେ, ମତେ ଆଉ ଅଧିକ କହିବା ଦରକାର ନାହିଁ ।'

ମୁଁ ଏମିତି କାନ୍ଦିଲି ଯେମିତି ଆଗରୁ କେବେ କାନ୍ଦି ନଥିଲି । ଏବେ ମୁଁ ଜାଣିଲି ଗୋଟେ ବାପାର ମୃତ୍ୟୁର କାନ୍ଦିବାଟା କ'ଣ ଜିନିଷ । ମତେ ଲାଗିଲା, ଏହାହିଁ ଗୋଟେ ଲୋକର ଜୀବନରେ ସବୁଠାରୁ ବଡ଼ ବିଳାପ ।

ମୋ ବାପାଙ୍କ ସମାଧି ଯୁଦ୍ଧକ୍ଷେତ୍ରର ସମାଧିସ୍ଥଳରେ ସେଇଠି ସ୍ଥାନିତ ହୋଇଥିଲା

ଯେଉଁ ଜାଗା ନାୟକମାନଙ୍କ ପାଇଁ ସଂରକ୍ଷିତ ଥିଲା । ମୋ ସ୍ତ୍ରୀ ଗୋଟେ କ୍ୟାମେରା ଆଣି କେତେଗୁଡ଼ିଏ ଫଟୋ ଉଠାଇଲା । ପରଦିନ ଆମେ ବିଦାୟ ଆଣି ଫେରିଆସିଲୁ, ଯଦିଓ ଜେନେରାଲ ଚୋଙ୍ଗ ଆମକୁ ରହିବାକୁ କହୁଥିଲେ ।

ଫେରିବା ବାଟରେ ମୋ ସ୍ତ୍ରୀ ମତେ ଧୀରେ ଗାଡ଼ି ଚଳାଇବାକୁ କହିଲା କାରଣ ମି.ବୋଙ୍ଗ ପାଇଁ ଏହା ଥିଲା ପ୍ରଥମ କାର୍ ଯାତ୍ରା, ଆଉ ତାଙ୍କୁ ବହୁତ ଭଲ ଲାଗୁଥିଲା । ସେ ଉଲ୍ଲସିତ ହୋଇ କହିଲେ, 'ଆମ ଦେଶ ପ୍ରକୃତରେ ଗୋଟେ ଛବି ପରି ସୁନ୍ଦର । ଏବେ ମୁଁ ଜାଣୁଛି ଆମେ କାହିଁକି ଆମ ଦେଶକୁ ଭଲପାଇବା ଉଚିତ୍ । ରାଜଧାନୀ ପାଖାପାଖି ଯଦିଓ ଆମ ଗାଁ, ତଥାପି ସେଠି କିଛି ଭଲପାଇବାକୁ ଅଛି ବୋଲି ମୁଁ ଜମା ଅନୁଭବ କରିପାରେ ନାହିଁ । କାହିଁକି ?' 'ତାର କାରଣ ତୁମେ ଗାଁକୁ ଅତି ଭଲକରି ଜାଣିଛ ।' ମୋ ସ୍ତ୍ରୀ କହିଲା, 'ଅନ୍ୟ ଜାଗାରେ ବି ଲୋକମାନେ ସମାନ, ସେମାନେ ସେଇ ହାନୋଇକୁ ହିଁ ଭଲପାଆନ୍ତି ।'

ମି.ବୋଙ୍ଗ କହିଲେ, 'ତାହେଲେ ଚାରିପଟେ ବୁଲିବୁଲି ସେଇ ଗୋଟିଏ ଜାଗାରେ ହିଁ ପହଞ୍ଚିବା ଗୋଟେ ମ୍ୟାଜିକ୍ ଲଣ୍ଠନରେ ସଂଖ୍ୟା ବୁଲିଲା ପରି । ଏଠା ଲୋକେ ସେଠାରେ ଏହାକୁ ଭଲପାଆନ୍ତି ଆଉ ସେଠା ଲୋକ ଏଠାରେ ଏହାକୁ ଭଲପାଆନ୍ତି; ଏସବୁକୁ ମିଶାଇ ଫେଣ୍ଟିଦିଅ ଆଉ ତାହାହିଁ ଆମ ଦେଶ, ଆମ ଲୋକ । ଚିରକାଳ ପାଇଁ ଆମ ଜନ୍ମଭୂମି ! ଲୋକମାନେ ଚିରକାଳ ପାଇଁ ! ମ୍ୟାଜିକ୍ ଲଣ୍ଠନ ହୁର୍‌ରେ !'

## ପନ୍ଦର

ଏଇଠି ମୋ କାହାଣୀ ସାରିଦେବା ବୋଧେ ଉଚିତ ହେବ । ମୋ ବାପାଙ୍କ ମୃତ୍ୟୁ ପରେ ପରିବାରରେ ସେପରି ଜୀବନ ଫେରିଆସିଲା ଯେପରି ଜୀବନ ତାଙ୍କ ଅବସର ନେବା ପୂର୍ବରୁ ଥିଲା । ମୋ ସ୍ତ୍ରୀ ଆଗପରି କାମକୁ ଗଲା । ମୁଁ ମୋର ଗବେଷଣା କାମ ସମ୍ପୂର୍ଣ୍ଣ କଲି । ମି.କୋ ଧୀରେ ଚୁପ୍‌ଚାପ୍ ହୋଇଗଲେ କାରଣ ମିସ୍ ଲାଇର ଅବସ୍ଥା ଦିନକୁ ଦିନ ଖରାପ ହେଉଥିଲା । କିଛି କାମ ନଥିବାବେଳେ ମୋ ବାପା ଦେଇଥିବା ଏକ୍ସରସାଇଜ ନୋଟ୍‌ବୁକ୍‌ଟି କାଢ଼ି ସେ ନୋଟ୍ କରିଥିବା ଭାବନାଗୁଡ଼ିକୁ ମୁଁ ପଢ଼େ । ମତେ ଲାଗେ ଯେପରି ଏହାଦ୍ୱାରା ତାଙ୍କୁ ଅଧିକ ଭଲକରି ମୁଁ ବୁଝିପାରିବି ।

ଯାହାସବୁ ଏଠି ବିଶୃଙ୍ଖଳିତ ଭାବରେ ମୁଁ ଲେଖିଛି ତାହା ଆମ ଜୀବନରେ ସେଇ ବର୍ଷ ଘଟିଥିଲା ଯେବେ ମୋ ବାପା ଅବସର ନେଇ ଆସିଥିଲେ । ତାଙ୍କୁ ମନେପକାଇବା ଭିତରେ ଏଇ ଧାଡ଼ିଗୁଡ଼ିକୁ ଜଳିଉଠିଥିବା ଧୂପକାଠିର ସୁଗନ୍ଧ ବୋଲି ମୁଁ ବିଚାର କରେ । କେହି ସହୃଦୟ ଯଦି ତାର ହୃଦୟବତ୍ତା ଦେଇ ଏହାକୁ ପଢ଼ନ୍ତି, ମୋତେ କ୍ଷମା କରିଦେବେ ।

# ନଳବଣରେ ଦୁଇ ବୃଦ୍ଧ

## ଗୁୟେଁ ଖାଇ

ଗୋଟେ ଛୋଟ ମୋଟରଭୁଟଭୁଟି ଆମକୁ ତାନ୍ ଥାନ୍ ଜିଲ୍ଲାର ମୁଖ୍ୟ ସହରରୁ ଡୁଙ୍ଗ ଭାନ ଡୁଙ୍ଗ କେନାଲରେ ବୋହି ନେଇଚାଲିଥିଲା ଡଙ୍ଗଥାପମୋଇ ଆଡ଼କୁ । ଆମ ସାଥିରେ ଥିଲେ ରାଜ୍ୟ ସଂସ୍କୃତି ବିଭାଗର ଜଣେ ମୂଳକର୍ମଚାରୀ ମିଷ୍ଟର ତୁ । ତାଙ୍କର ସାହିତ୍ୟ ଓ କଳାଜଗତ ପ୍ରତି ଥିଲା ବେଶ୍ ଆକର୍ଷଣ । ସେ ନିଜେ ବି ଥିଲେ ଜଣେ ଲେଖକ ଯଦିଓ କୌଣସି ଲେଖା ତାଙ୍କର ପ୍ରକାଶିତ ହୋଇନଥିଲା । ସେ କହୁଥିଲେ : ‘‘ମୋ ଲେଖା କେବଳ ମୋ ଦ୍ୱାରା ଓ ମୋ ବନ୍ଧୁମାନଙ୍କ ଦ୍ୱାରା ପଢ଼ାହେବାକୁ ଉଦ୍ଦିଷ୍ଟ ।’’

ବର୍ଷାଦିନର ଆରମ୍ଭ କାଳ ; ମଝିରେ ମଝିରେ ବର୍ଷା ଆସିଯାଉଥାଏ, କେତେବେଳେ ସକାଳେ ତ କେତେବେଳେ ସଂଧ୍ୟାରେ । କେନାଲର ପାଣି ଥିଲା ଅତି ସ୍ୱଚ୍ଛ : ସବାତଳେ ପଡ଼ିଥିବା ଛୁଞ୍ଚି ବି ତୁମେ ଦେଖିପାରିବ । ହେଲେ ଏହି ଜଳ ଚାଷ ବା ମାଛଚାଷ ପାଇଁ ଉପଯୁକ୍ତ ନଥିଲା, ଏବେ ବର୍ଷାଜଳ ଦ୍ୱାରା ଧୋଇହୋଇ କ୍ଷାରମୁକ୍ତ ହେବା ଏହାପାଇଁ ନିତାନ୍ତ ଜରୁରୀ ଥିଲା । କେତେ ଘଣ୍ଟା ଯାଏଁ ଭୁଟଭୁଟି ଆଗେଇଚାଲିଲା ସେଇ ଅଞ୍ଚଳ ଦେଇ ଯେଉଁଠାରେ ବ୍ୟାପିଥିଲା ଇଉକାଲିପଟାସର ସୁଗନ୍ଧି, କେନାଲ କଡ଼େ କଡ଼େ ଠିଆ ହୋଇଥିଲା ଇଉକାଲିପଟାସ୍ ତେଲର କାରଖାନା । ସ୍ଥାନୀୟ ଲୋକମାନଙ୍କ ପାଇଁ ଏହି ତେଲ ବନାଇବା ଥିଲା ସବୁଠାରୁ ଲାଭଜନକ ଏକ ପାର୍ଶ୍ୱ–ବୃତ୍ତି ।

ଜଙ୍ଗଲରେ ଇଉକାଲିପଟାସ୍ ବୃକ୍ଷ ଖୁବ୍ ବଢ଼େ ; ତାହାର ଫୁଲ ସବୁ ଧଳା ରଙ୍ଗର । ଏ ଗଛର ଗଣ୍ଡି ଦଶବର୍ଷ ଧରି ପାଣିରେ ବୁଡ଼ିରହିଲେ ଏତେ ଟାଣ ହୋଇଯାଏ ଯେ ନିର୍ମାଣ କାର୍ଯ୍ୟରେ ବ୍ୟବହୃତ ହୁଏ । ଆମ ନଜରରେ ପଡ଼ିଲା କେନାଲ କୂଳେ କୂଳେ ଗାଓଗଛର ଧାଡ଼ି । ଏହା କଦଳୀ ଗଛ ପରି ଗୋଟେ ଗଛ । ଏହାର ଧଳା ଡାଳସବୁ ତଳକୁ ନଇଁଆସି ମାଟିରେ ଚେର ବିସ୍ତାର କରିଥାଏ । ଆଉ ଗୋଟେ ପ୍ରକାର ଗଛ ହେଲା କା–ନା, ଧଳା ଫୁଲ ଆଉ ସ୍ୱାଦିଷ୍ଟ ଫଳ । ଲୋକେ କହନ୍ତି କା–ନା ଗଛରେ ପାରମାଣବିକ ବିକିରଣ ବିରୁଦ୍ଧରେ ସୁରକ୍ଷା ଦେବାର ଶକ୍ତି ଅଛି । ସାଇଗନ୍‌ରୁ

ବେପାରୀମାନେ ଆସି ଏହାକୁ କିଣି ନେଉଥିଲେ ଆଉ ପୁଣିଥରେ ଅତ୍ୟଧିକ ଦାମ୍‌ରେ ବିକ୍ରିକରି ପ୍ରଚୁର ଅର୍ଥ ରୋଜଗାର କରୁଥିଲେ । ବୃକ୍ଷର ଏହି ସ୍ୱାଭାବିକ ଗୁଣ ଉପରେ ରିପୋର୍ଟମାନ ପଢ଼ି ସାଧୁଲୋକମାନେ ବୋକା ବନୁଥିଲେ । ଏହିସବୁ ରିପୋର୍ଟ ଆଧାରରେ ଅନେକ ଧର୍ମ ବି ପ୍ରତିଷ୍ଠିତ ହୋଇଥିଲା, କେତେକର ଲକ୍ଷ ଲକ୍ଷ ପ୍ରଶଂସକ ଥିଲେ । ଅନ୍ୟ କେତେକ ଧର୍ମର ସ୍ୱୟଂ ପ୍ରତିଷ୍ଠାତାଙ୍କ ସାଙ୍ଗସାଥୀ, ବନ୍ଧୁବାନ୍ଧବଙ୍କ ଭିତରୁ ଶହଶହ ତାଙ୍କର ଅନୁଗାମୀ ହୋଇଥିଲେ । ଛତୁଫୁଟିଲା ପରି ଧାର୍ମିକ-ସଂଭ୍ରାନ୍ତଙ୍କ ସଂଖ୍ୟା ବଢ଼ି ଚାଲିଥିଲା । ଏଇସବୁ ମିଛ ରିପୋର୍ଟ କ୍ରମାଗତ ଅବିଚଳିତ ଭାବରେ ବଢ଼ିଚାଲିବା ଦେଖାଇ ଦେଉଥିଲା ଲୋକମାନେ କେତେ ଗଭୀର ଭାବରେ ଶାନ୍ତି ଚାହୁଁଥିଲେ କାରଣ ଏ ଦେଶ ଯୁଦ୍ଧର ଏକ ଚିରସ୍ଥାୟୀ ଭୟରେ ଗତ କେତେବର୍ଷ ଧରି ବଞ୍ଚିରହିଥିଲା ଆଉ ଏହି ରିପୋର୍ଟଗୁଡ଼ିକ ଜନମାନସରେ ଗୋଟେ ସ୍ଥିର ଭବିଷ୍ୟତର କ୍ଷୀଣ ଆଶା ଜଗାଇବାରେ ସମର୍ଥ ହୋଇଥିଲା ।

''ଏ ଲୋକମାନେ କେତେ ସରଳ, କେତେ ଅକପଟ ! ଏମାନେ ଦଣ୍ଡପାଇବାଠାରୁ ଦୟାର ଅଧିକ ଯୋଗ୍ୟ । ହେଲେ ଏମାନଙ୍କୁ ଠିକ୍ ବାଟରେ ଚଳାଇବା କାଠିକର ପାଠ'', ଧୀରସ୍ୱରରେ କହିଲେ ମିଷ୍ଟର ଡୁ । ଚାଳିଶ ବର୍ଷୀୟ ଏହି ବ୍ୟକ୍ତିଙ୍କ ବ୍ୟବହାରରେ ଥିଲା ବୌଦ୍ଧିକତାର ଛାପ ଆଉ ସେ ଯେ ଦୀର୍ଘ ତଥା ଉଜ୍ଜ୍ୱଳ ବୃତ୍ତିଗତ ଜୀବନ ବିତାଇଥିଲେ ତାହା ସ୍ପଷ୍ଟ ଜଣାପଡୁଥିଲା ।

ମୁଁ କିନ୍ତୁ ପ୍ରଥମଥର ପାଇଁ କେନାଲ ଯାତ୍ରା କରୁଥିଲି । ସବୁଜିନିଷ ମତେ ନୂଆ ଲାଗୁଥିଲା । କୂଳକୁ ଅନାଇ ମୁଁ ଦେଖିଲି କେବଳ ବୃକ୍ଷ-ଲତା-ଉଦ୍ଭିଦର ଘନ ସବୁଜିମା; ସାରା କେନାଲଟି ଥିଲା ଗୋଟେ କୋଳାହଳମୟ ଗଳି ପରି । ଛୋଟ ଡଙ୍ଗାମାନଙ୍କରେ ଲଦା ହୋଇଥିଲା ଦୋକାନମାନ, ସେଠାରେ ସବୁଜିନିଷ ବିକ୍ରି ହେଉଥିଲା, ମାଠିଆ, କାଚଜିନିଷ, ଲୁଗାପଟା, ପାନୀୟ, କଫି, ପନିପରିବା ଇତ୍ୟାଦି । ଗୋଟେ ଲୋକ ଖୁବ୍ ବଡ଼ ଗୋଟେ ଗୋଲ ଟୋପି ପିନ୍ଧି ଗୋଟେ ଛୋଟ ଡଙ୍ଗାରେ ପେଡ଼ାଲ ମାରି ଚାଲିଥିଲା, ଡଙ୍ଗା ଅଗ୍ରଭାଗରେ ଗୋଜିଆ ଅଂଶରେ ତା' ସ୍ତ୍ରୀ ବସିଥିଲା ଗୋଟେ ରଙ୍ଗୀନ ଛତାତଳେ ନିଜର କୋଳଶିଶୁଟିକୁ ଧରି । ଆଉ ତା' ବଡ଼ ପୁଅଟି ଡଙ୍ଗା ଉପରେ ଶୋଇ ତଳକୁ ଗୋଡ଼ ଝୁଲେଇ ପାଣି ଚବର ଚବର କରୁଥିଲା । ମୁଁ ମନେ ମନେ ଆଶ୍ଚର୍ଯ୍ୟ ହେଲି, ସେଇ ଗୋଟିଏ ଦେଶର ହୋଇ ବି ଏଠାର ଜୀବନ ଏତେ ଅଦ୍ଭୁତ କାହିଁକି ମନେହେଉଥିଲା ମତେ !

ଏହି ଜଳଯାତ୍ରା ଆରମ୍ଭ ଆଗରୁ ମିଷ୍ଟର ଡୁ ମୋତେ କହିଦେଇଥିଲେ ଯେ 'ଡଙ୍ଗ-ଥାପ-ମୋଇ'ରେ ମୁଁ ନିଶ୍ଚୟ ମି.ବା'ଙ୍କୁ ଭେଟିବା ଉଚିତ । ମି.ବା' ଷାଠିଏରୁ ଊର୍ଦ୍ଧ୍ୱ ବୟସର ପୌଢ଼ ଆଉ 'ଚିଏଁ ଥାଙ୍ଗ ସମବାୟ ଉତ୍ପାଦନ ସଂଘ'ର ଟ୍ରାକ୍ଟର-ଷ୍ଟେସନ ମୁଖ୍ୟ । ଏଭଳି ଏକ ପରିଚୟକୁ ମୁଁ ସେତେବେଳେ ପସନ୍ଦ କରିନଥିଲି । ଆଉ ମୋର ଏ

ଲେଖାରେ ସମସ୍ତ ଘଟଣା ଯେହେତୁ ଆକସ୍ମିକ ଘଟିଯାଉଥିଲା, ସମସ୍ତ ଧାରଣା ବି ସେହିପରି ମୋ ମୁଣ୍ଡକୁ ଅକସ୍ମାତ୍ ହିଁ ଆସୁଥିଲା । ଆଗରୁ ମୁଁ କେବେ ବି ଭାବିନଥିଲି ଏଇ ବୃଦ୍ଧଙ୍କ ବିଷୟରେ କିଛି ଲେଖା ମୁଁ ଲେଖିପାରିବି ।

ଖରାବେଳକୁ ଆମେ ଟ୍ରାକ୍ଟର ଷ୍ଟେସନରେ ପହଞ୍ଚିଗଲୁ । ଏ ଘରେ ବାରଣ୍ଡାଟି ତିନିଭାଗରେ ବିଭକ୍ତ ହୋଇ କେନାଲଆଡ଼କୁ ମୁହଁ କରିଥିଲା । ଆଉ ଗଛପଟଟି ଛୋଟ ଛୋଟ କୋଠରିରେ ପୂର୍ଣ୍ଣ ଥିଲା । ଅଗଣାର ଆଉ ଗୋଟେ ପଟେ, ଗୋଟିଏ ଗାଓ ଗଛ ପାଖରେ ଥିଲା ଟିଣ ଛାତଟିଏ ଯାହା ତଳେ ଥିଲା ପାଞ୍ଚଟି ଟ୍ରାକ୍ଟର । ଟ୍ରାକ୍ଟରର ବଡ଼ ବଡ଼ ଚକାରୁ ମୁନିଆ କଣ୍ଟାମାନ ବାହାରିଥିଲା କାଦୁଅ ପଙ୍କରେ କାମ କରିବାକୁ । ବାଉଁଶବୁଦା ଛାଇମୂଳେ ଦୁଇଟି ଛୋଟ ଟ୍ରାକ୍ଟର ଥିଲା ; ପାଖରେ ମାଟି ଟେଳା ଭାଙ୍ଗିବା କୃଷିଯନ୍ତ୍ର, ବଳକା ଚକା ଆଉ ପେଟ୍ରୋଲ ଡବାମାନ ଏପଟ ସେପଟ ବିକ୍ଷିପ୍ତ ହୋଇ ପଡ଼ିଥିଲା । ଏହା ଥିଲା ଗୋଟେ ଟ୍ରାକ୍ଟର ଷ୍ଟେସନ, ଉତ୍ତରଦିଗର କୌଣସି ଜିଲ୍ଲାର ବଡ଼ ଷ୍ଟେସନଟି ପରି ।

ଆମକୁ ସ୍ୱାଗତ କଲେ ମି.ବା' । ବୃଦ୍ଧଙ୍କ ମଥାରେ ଥିଲା ଧଳାବାଳ ଆଉ ଦେହ ଖୋଲା ; ତାଙ୍କ ବଳିଷ୍ଠବାହୁ ସୂଚାଇଦେଉଥିଲା ଯେ ସେ ଦୀର୍ଘଦିନ ବଞ୍ଚିରହିବେ ।

ସେ ମିଷ୍ଟର ତୁଙ୍କୁ ପଚାରିଲେ, "ଆପଣ କ'ଣ ମୋ ସମବାୟ ଦେଖିବାକୁ ସାଥିରେ ସାମ୍ବାଦିକ ଆଣି ଆସିଛନ୍ତି ?"

ତୁ ଉତ୍ତରଦେଲେ, "ବ୍ୟକ୍ତିଗତ ଦର୍ଶନ ପାଇଁ ଆସିଛି । ଆମର ଭୟ ଥିଲା କାଳେ ଆପଣ ନଥିବେ, କୁଆଡ଼େ ଯାଇଥିବେ ।"

"କାଲି ମୁଁ ମୋ ପାଳିତପୁତ୍ରର ବିବାହ ପାଇଁ ଜିଲା ସହରକୁ ଯିବି ।"

"ହାଓ ? କାହାକୁ ସେ ବିବାହ କରୁଛି ?"

"ହାଇ ଦୁଙ୍ଗ୍‌ର ଝିଅକୁ । ଏଠି ତିନିନମ୍ବର ଘରେ ରହୁଛି । ତୁମେ ତାକୁ ଜାଣିନାହିଁ ।"

ସେତେବେଳେ ଜିଲାର ମୁଖ୍ୟ ବିଷୟ ଥିଲା କୃଷକମାନଙ୍କ ଭିତରେ ଜମି ପୁନର୍ବଣ୍ଟନ । ଏହା କରିବା ଜରୁରୀ ଥିଲା । ହେଲେ ଜମି ଥିଲା କୃଷକର ଅତି ପ୍ରିୟ ; ତା ନିଜ ପୁଅଠାରୁ ଅଧିକ ପ୍ରିୟ, ଏପରିକି ଯୁଦ୍ଧବେଳେ ବି ସେ ମାଟିକାମୁଡ଼ି ପଡ଼ିରହେ । ଆଉ ଏବେ ଏହାକୁ କାଟି ଖଣ୍ଡ ଖଣ୍ଡ କରି ଅନ୍ୟ ଲୋକଙ୍କ ଭିତରେ ବାଣ୍ଟିଦେବା ତା' ପାଇଁ କିପରି ହୃଦୟ ବିଦାରକ ହେଉଥିବ ?

"ଆପଣଙ୍କର ଆଉ କେତେ ଏକର ଜମି ଅଛି ?" ମିଷ୍ଟର ତୁ ପଚାରିଲେ ବା'ଙ୍କୁ ।

"ଆମ ହାତରେ ଏବେ ପାଞ୍ଚ ଏକର ଅଛି । ଖାଲି ପାଦରେ ଏଠାକୁ ଆସିବା ଆଗରୁ, ଇଚ୍ଛା ମୁତାବକ ଜମି ସଫାକରିବାର ସ୍ୱାଧୀନତା ଆମର ଥିଲା । ଆମେ ଯଦି ଜଙ୍ଗଲରେ ଶହେ ମିଟର ଚଉଡ଼ା ଆଉ ହଜାର ମିଟର ଲମ୍ବା ଖଣ୍ଡେ ଖଣ୍ଡେ ଜମି ହଳ କରିଥାନ୍ତୁ, ଅତି ସହଜରେ ଦଶ ଏକର ଜମି ଚାଷ କରିପାରିଥାନ୍ତୁ ।"

ତାଙ୍କ ପତ୍ନୀ, ବେଶ୍ ବଳିଷ୍ଠ ଆଉ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ଜଣେ ମହିଳା ଭିତର ଘରୁ ବାହାରି ଆସି କହିଲେ, "ଆପଣ ଏପରି ଏକ ସମୟରେ ଆସି ପହଞ୍ଚିଛନ୍ତି, ଯେତେବେଳେ ଏଠି ଖାଦ୍ୟାଭାବ ଅଛି । ମାଟି ଏଠି କ୍ଷାରଯୁକ୍ତ, ମାଛ ବଞ୍ଚୁନାହାନ୍ତି । ଆପଣ କ'ଣ ଚାଷ ବିଷୟରେ ଲେଖିବାକୁ ଆସିଛନ୍ତି ? ଆମର ଏ ବିଷୟରେ ବହୁତ କଥା କହିବାର ଅଛି ।"

ସେ ତାଙ୍କ ସ୍ୱାମୀଙ୍କ ପାଖରେ ବସି ଆମକୁ ସିଧା ଅନେଇଲେ । ତାଙ୍କ ସହ ମୋର ପୂର୍ବରୁ ପରିଚୟ ଥିଲା । ସେ ଓ ତାଙ୍କ ସ୍ୱାମୀ ଗୁପ୍ତ ସ୍ଥାନରେ ଲୁଚି କାମ କରୁଥିବାବେଳେ ମୁଁ ତାଙ୍କୁ ଭେଟିଥିଲି । ତାଙ୍କ କାମ ଥିଲା ତୃଣମୂଳ ସଦସ୍ୟମାନଙ୍କୁ ଆଶ୍ରୟଦେବା, ଖାଦ୍ୟଦେବା ଆଉ ସେମାନଙ୍କୁ ସମ୍ପୂର୍ଣ୍ଣ ବିଶ୍ୱାସ କରିବା, ଏପରିକି ନୂଆ ଆସିଥିବା ସଦସ୍ୟମାନଙ୍କ ସହାୟତା କରିବା ।

ସେ କହିଚାଲିଥିଲେ : "ଆମେ ଯେତେବେଳେ ପ୍ରଥମ ବାସିନ୍ଦା ଭାବରେ ଏଠାକୁ ଆସିଥିଲୁ ସେତେବେଳେ ଜୀବିକା ନିର୍ବାହ ପାଇଁ ଆମକୁ କଠିନ ପରିଶ୍ରମ କରିବାକୁ ପଡ଼ିଥିଲା, ଆମର ବି ବହୁତ ପିଲା ଥିଲେ । ସେମାନଙ୍କ ଯତ୍ନ ନେଇପାରୁନଥିଲୁ । କାଉ କା'କରିବାବେଳଠାରୁ ସଂଜ ଗଡ଼ିଲା ଯାଏଁ କାମ କରି, ଝାଳନାଳ ହୋଇ, ଆମେ ପିଲାମାନଙ୍କୁ କେବଳ ଲ୍ୟାମ୍ପ ଆଲୁଅରେ ଶୋଇଥିବାର ଦେଖୁଥିଲୁ । ଗୋଟେ ମୁହୂର୍ତ୍ତର ବିଶ୍ରାମ ଆମର ନଥିଲା ; ଆମେ ଜମି ଉପରକୁ ଟ୍ରାକ୍ଟର ନେଇ ଯାଉନଥିଲୁ, କାଦୁଅ ପଙ୍କରେ ହଳ କରି କରି ଯାଉଥିଲୁ ଖୋଜିବାକୁ କେଉଁଠି ମାଟିରେ ହୁଙ୍କା ଅଛି ଆଉ ତାକୁ ସାଙ୍ଗେ ସାଙ୍ଗେ ସଫା କରୁଥିଲୁ ; ଏବେ ଯେ ଏଗୁଡ଼ିକ ସମତଳ ଦିଶୁଛି ଏହା ହଠାତ୍ ହୋଇଯାଇନାହିଁ ।"

ମି.ବା' ପତ୍ନୀଙ୍କୁ ସତର୍କ କରାଇଦେଲେ : "ଆମ ଅତିଥିମାନେ ବି କୃଷକ ଶ୍ରେଣୀର । ସେମାନେ ବି ଏକଦା କଷ୍ଟ କରି ଜୀବନ ନିର୍ବାହ କରିଛନ୍ତି ଆମରି ପରି ।"

ପତ୍ନୀ କହିଚାଲିଲେ : "ପୁରୁଷଭାବରେ ସେମାନେ ସେମାନଙ୍କ ଜମି ଅନ୍ୟକୁ ଦାନ କରିଦେବାର ବିପତ୍ତିରେ ବି ଆତ୍ମସଂଯମ ରଖିପାରିବେ ; ଆମେ ସ୍ତ୍ରୀମାନେ ସେପରି କରିପାରିବୁ ନାହିଁ । ଆମେ ଆମ ପିଲାଙ୍କୁ ସୀମାନ୍ତ ଯୁଦ୍ଧକୁ ପଠାଇଦେଲେ ବି ସେମାନଙ୍କର ଫେରିଆସିବାର ସମ୍ଭାବନାକୁ ମନରେ ଜୀଆଁଇ ରଖିଥାଉ, ହେଲେ ଜମି ଥରେ ଅନ୍ୟକୁ ଦେବାପରେ ଏହା ତ ସବୁଦିନ ପାଇଁ ଚାଲିଯାଏ !"

ମି.ବା' ପତ୍ନୀକୁ ସାନ୍ତ୍ୱନା ଦେଲେ : "ଆମେ ସେହିପରି କରିବା ଉଚିତ ଯାହା ବିପ୍ଳବ ଆମଠାରୁ ଚାହେଁ ; ଏହା ଚାହେଁ ଆମେ ଆମ ପିଲାମାନଙ୍କୁ ଦେଇଦେବା, ଆମେ ଦେଲେ ; ଏହା ଚାହେଁ ଆମେ ଆମ ଜମି ଦେଇଦେବା, ଆମେ ଏହାର ଅନୁରୋଧ ରକ୍ଷାକଲେ ; ଆଗରୁ ଏହା ଚାହିଁଥିଲା ଆମେ ସହରକୁ ଯାଇ କାମ କରିବା, ବିନା ଅଭିଯୋଗରେ ଆମେ ଜମି ଛାଡ଼ିଦେଇ ସେଠାରେ ଦଶବର୍ଷ ରହିଥିଲେ ।"

ସ୍ତ୍ରୀ ହସିଲେ, "ମୁଁ କେବଳ ଥଟ୍ଟା କରୁଥିଲି । ବିପ୍ଳବ ପାଇଁ ଆମେ ଜୀବନକୁ ବଳି ଚଢ଼େଇ ଦେଇଛେ, କେତେଖଣ୍ଡ ଜମିପାଇଁ କାହିଁକି ଅଭିଯୋଗ କରିବା ?"

ମୁଁ ମନେ ମନେ ଭାବିଲି : ଏମାନେ ଗୋଟେ ସୁଖୀ ଦମ୍ପତି । ଏଇ ଝଞ୍ଜା ବତାସ ଦିନମାନଙ୍କରେ, ଏପରି ଲୋକଙ୍କୁ ଭେଟିବା ମୁସ୍କିଲ ଯିଏ ଏମାନଙ୍କ ପରି ବିପ୍ଳବ ପାଇଁ ଏପରି କଟୀବଦ୍ଧ ହୋଇ କାମ କରିଛନ୍ତି । ମି. ବାଙ୍କୁ ମୁଁ ପଚାରିଲି ସେ ସହରରେ କରିଥିବା ଗୋପନ କାର୍ଯ୍ୟକଳାପର ଦଶବର୍ଷ ମନେରଖିଛନ୍ତି ନା ନାହିଁ । ସେ କହିଲେ, "କେବଳ କେତୋଟି ମଜା ଘଟଣାକୁ ଛାଡ଼ିଦେଲେ ଆଉ ସବୁ ଭୁଲିଯାଇଛନ୍ତି । ପ୍ରଥମଦିନ ମୁଁ ଯେତେବେଳେ ସାଇଗନ୍‌କୁ ଫେରିଆସିଲି, ଆଗ ଚେଷ୍ଟାକଲି ଗୋଟେ ସାଥୀ ଖୋଜି ବାହାର କରିବାକୁ, ଯିଏ ମତେ ଆଶ୍ରୟ ଦେଇପାରିବ । ନିର୍ଦ୍ଦେଶନାମା ସ୍ପଷ୍ଟ ନଥିବା ହେତୁ, ଘର ଖୋଜିବା କଷ୍ଟକର ଥିଲା । ଏ ଘରର ଗୋଟିଏ ଝର୍କାରେ ଏପରି ରଙ୍ଗ ଲାଗିଥିଲା ଯେ ମୁଁ ସାଙ୍ଗେ ସାଙ୍ଗେ ଘରଟି ଚିହ୍ନିଦେଲି, କିନ୍ତୁ ମୋର ଯେତେଦୂର ମନେପଡୁଛି ଘର ନମ୍ବର ଭୁଲ୍ ଥିଲା : ଇଂରାଜୀ ୬୯ ବଦଳରେ ୯୬ କୁହାଯାଇଥିଲା । ମୁଁ ଆଉ ବେଶୀ ପଚରାଉଚରା ନକରି ହତାଶ ହୋଇ ଭୂତଳ ଗୃହକୁ ଚାଲିଆସିଲି । ଜଣେ ସାଥୀ ମତେ ପଚାରିଲା, "ତୁମେ ଘର ନମ୍ବର କିପରି ପଢ଼ିଲ ?"

"ଦକ୍ଷିଣରୁ ବାମକୁ ।"

ଯେତେ ସେଠି ଜମିଥିଲେ ସମସ୍ତେ ହସିଉଠିଲେ ।

"ତୁମେ ବାମରୁ ଡାହାଣକୁ ପଢ଼ିବା ଉଚିତ, ଚାଇନିଜଙ୍କ ପରି ନୁହେଁ ।" ସେମାନେ କହିଲେ । "ସେହି ଦିନଠାରୁ ମୁଁ ଅକ୍ଷର ଶିଖିବାକୁ ଆପ୍ରାଣ ଉଦ୍ୟମ ଜାରି ରଖିଛି ।"

"ସାଇଗନ୍‌ରେ ମତେ ସମସ୍ତେ ଡାକୁଥିଲେ 'ବାମୁ' । 'ମୁ'ର ଅର୍ଥ ରବରଜାତୀୟ ଗଛର କ୍ଷୀର ବା ଗୋଟେ କୃତ୍ରିମ ବସ୍ତୁ କାରଣ ମୁଁ କୃତ୍ରିମ ରବର ବିକୁଥିଲି । ଆମେ ରବର କଞ୍ଚାମାଲବୁହା କାଠ ଡାବଲରେ ବାରୁଦ ବା ଅସ୍ତ୍ରଶସ୍ତ୍ର ଲୁଚାଇ ସହରକୁ ପଠାଉଥିଲୁ, ଏହାଦ୍ୱାରା ନିରାପଦରେ ସୈନ୍ୟ ଜଗୁଆଳି ପୋଷ୍ଟଗୁଡ଼ିକୁ ଅତିକ୍ରମ କରି ହେଉଥିଲା । କିନ୍ତୁ ରବରକୁ ସମତଳ ଛୋଟ ଚାଦର ଖଣ୍ଡରେ ପରିଣତ କରିବା ପ୍ରକ୍ରିୟାବେଳେ ଶ୍ରମିକମାନେ ଏଥିରୁ ବାରୁଦ ଗନ୍ଧ ପାଉଥିବା ଅଭିଯୋଗ କରିଥିଲେ । ଥରେ ଗୋଟେ ଲରୀରୁ ମାଲ୍ ବାହାର କରୁଥିବାବେଳେ, ମୋ ସ୍ତ୍ରୀ ଦେଖି ପକେଇଲା ରବରଡାବଲ ଫାଟଦେଇ ଗୋଟେ ବନ୍ଧୁକ ନଳୀ ବାହାରି ଆସିଛି ; ସେ ତରତର ହୋଇ ଦୌଡ଼ିଯାଇ ଡାବଲ ଉପରଟାକୁ ମଶିଣାରେ ଘୋଡ଼ାଇ ତା ଉପରେ ବସିପଡ଼ିଲା । ତାପରେ ସେ ମୋ ସାଥିରେ କଳି ବି କଲା ଯେ ମୋର କୁଆଡ଼େ ମୋ ରକ୍ଷିତା ସହ ରହିବା ଅଭିପ୍ରାୟ ଥିଲା, ଆଉ ସେଥିପାଇଁ ତାର କ୍ଷତି କରିବାର ମନ୍ଦ ଇଚ୍ଛା ମୋ ମନକୁ ଆସିଥିଲା । ଦିନେ ମୋ ସାନପୁଅ ମତେ ପଚାରିଲା, "ତୁମର କ'ଣ ଆଗରୁ ଗୋଟେ ରକ୍ଷିତା ଥିଲା କି ?"

ମୁଁ କହିଲି, ''ପୁଅରେ, ଯଦି ମୋର ସେପରି ଥାଆନ୍ତା, ତୋ ମାଆ ମତେ ଶାନ୍ତିରେ ରଖେଇ ଦେଇନଥାନ୍ତା ।''

''ତାହେଲେ ଯା ଉପରେ ଏତେ ପାଟିତୁଣ୍ଡ ସେ କରୁଛି କାହିଁକି ?''

– ''ଆଉ ଗୋଟେ ମଜାକଥା, କୋଡ଼ିଏ ବର୍ଷ ତଳର, ଙ୍ଗୋଦିନ୍ ଦୀଏମଙ୍କ ଅମଳର ଘଟଣା । ଦିନେ ତାନଦୀନ୍ ଚର୍ଚ୍ଚ ସାମ୍ନାରେ କଫି ପିଉଛି, ଗୋଟେ ନିରାପତ୍ତାରକ୍ଷୀ ମୋ ପାଖକୁ ଆସି ମତେ ପଚାରିଲା : ''ତୁମେ ଏଠି କେତେ ଦିନ ରହି ବେପାର କରୁଛ ? ବିଦ୍ରୋହ କାମ ଛାଡ଼ିଦେଲଣି କି ?''

''ମୁଁ ହସିହସି କହିଲି, 'ତୁମେ କ'ଣ ବିଦ୍ରୋହ ଠାରୁ ଦୂରରେ ଅଛ ? ମୁଁ କିନ୍ତୁ ଏହା ଭିତରେ ଅଛି ।' ତା' ଆଖି ବଡ଼ ବଡ଼ ହୋଇଗଲା, ନିଜେ ନିଜକୁ ଗୁଣୁଗୁଣୁ ହୋଇ କହିଲା, 'କେଡ଼େ ଅସାବଧାନ ଏ ଲୋକଟା' !''

''ମୁଁ ତାକୁ ପଚାରିଲି, ''ତୁମେ ନିଶ୍ଚୟ ତ୍ରାନ୍–ଚାନ–ଥାନ୍‌ର ବିପ୍ଳବୀ ଦଳ (ଗୋଟେ ନାମକରା ଦେଶଦ୍ରୋହୀ ଦଳ)ରେ ଯୋଗ ଦେଇନାହଁ ?''

– ''ମୁଁ ଭାବୁଛି ତୁମେ ଜାତୀୟ ବିପ୍ଳବ ଆନ୍ଦୋଳନର ଜଣେ ସଦସ୍ୟ ।''

– ''ସଂକ୍ଷେପରେ, ମୁଁ ବିଦ୍ରୋହ ଅବ୍ୟାହତ ରଖିଛି, ବୁଝିଲ ?''

– ''ତୁମେ ସେଇ କାର୍‌ଟା ଚଳାଉଛ କି ?''

– ''ତୁମେ ଜାଣିଛ ଏଇଟା କାହା କାର ?''

– ''ମୁଁ ଜାଣେ ଏହା ପ୍ରେସିଡ଼େନ୍ସିର ଜଣେ ମନ୍ତ୍ରୀଙ୍କର ।''

– ''ମି. ନୂୟେଁ ଦୀନ ଥୁଆଁଙ୍କ ଏଇ ମଟରକାର୍‌ର ଡ୍ରାଇଭର ମୁଁ ।''

– ''ତୁମେ ତାଙ୍କୁ ଆଣିବାକୁ ଯାଉଛ ?''

– ''ନା, ମୁଁ ଯାଉଛି ମଧ୍ୟଭିଏତ୍‌ନାମ ପୁଲିସ ହେଡ଼କ୍ୱାଟର୍ସର ଉପାଧ୍ୟକ୍ଷ ତୋଙ୍ଗ ଭାନ୍ ହୀଏଁଙ୍କୁ ଆଣିବାକୁ ।''

– ''ମୁଁ ସେମାନଙ୍କ ପାଇଁ କାମ କରିବାକୁ ଘୃଣା କରେ । ହେଲେ ମଧ୍ୟ ଭିଏତ୍‌ନାମର କାଉନ୍‌ସେଲର୍ ହ୍ୟୁଏଙ୍କ ଠାରୁ ଯେତେବେଳେ ଆଦେଶ ମିଳେ ତାଙ୍କ ସେବା କରିବାକୁ, ମୁଁ ତାଙ୍କ ଆଦେଶ ପାଳନ କରେ ।

– ''ତୁମେ କ'ଣ ମଧ୍ୟଭିଏତନାମ୍‌ର କାଉନ୍‌ସେଲର୍‌ଙ୍କୁ ଜାଣିଛ ?''

– ''ସେ ମୋ ମାମୁ ।''

ମୁଁ ତାକୁ ଯାହାସବୁ କହିଥିଲି ସତ୍ୟ କହିଥିଲି । ମୁଁ ପ୍ରେସିଡ଼େନ୍ସିରେ କାମ କରିଥିଲି ନୂୟେଁ ଥାନ୍ ଉତୁରିପଡ଼ିଲାଯାଏଁ, ତାପରେ ମୁଁ ମୋ ପେଶା ଗୋଟେ ରବର–କ୍ଷୀର ବିକ୍ରେତାକୁ ବଦଳାଇ ଦେଲି । ପ୍ରେସିଡ଼େନ୍ସିରେ କାମ କଲାବେଳେ ମୋ ପରିଚୟ କିନ୍ତୁ ମୁଁ ଲୁଚାଇ ରଖିଥିଲି ।

"ମତେ ଚିହ୍ନିଥିବା ଗୋଟେ ଏଜେଣ୍ଟକୁ ମୁଁ ବଞ୍ଚିରହିବାକୁ ଦେଇପାରିନଥାନ୍ତି ; ଶୀଘ୍ର ହେଉ ବା ଡେରିରେ, ସେ ପ୍ରକାଶ୍ୟରେ ମୋର ନିନ୍ଦା କରିଥାଆନ୍ତା । ଅଳ୍ପଦିନ ପରେ ଆମେ ତାକୁ ଆମ ଗୁପ୍ତ ସ୍ଥାନକୁ ସସମ୍ମାନେ ନେଇଆସିବାକୁ ସମର୍ଥ ହୋଇଥିଲୁ ।

"ଆଉ ଗୋଟେ କାହାଣୀ : ସେପ୍ଟେମ୍ବର ସ୍ୱାଧୀନତାର କେତେ ମାସ ପରର କଥା, ଆମ ଅନୁରୋଧ ରକ୍ଷା ହୋଇଥିବା କାରଣରୁ, ଆମେ ଆମ ଭିଟାମାଟିକୁ ଫେରିଆସିଲୁ । ମୋ ବାପା ବହୁତ ବୁଢ଼ା ଆଉ ଦୁର୍ବଳ ହୋଇଯାଇଥିଲେ । ଅଧିକାଂଶବେଳେ କହୁଥିଲେ, ସେ ବରଂ ନିଜ ମାଟିରେ ମରିବେ ପଛେ କେବେ ଗୋଟେ ଦୂର ଜାଗାରେ ଯାଇ ଶେଷ ନିଃଶ୍ୱାସ ନେବେ ନାହିଁ । ସେ ଫେରିବାର ଦୁଇମାସ ପରେ ସାମାନ୍ୟ ଜ୍ୱର ରୋଗରେ ଚାଲିଗଲେ ଆଉ ଆମ ଘର ପଛ ପାଖରେ ତାଙ୍କୁ କବର ଦିଆଗଲା, ମୋ ଜେଜେ ମା' ଆଉ ବଡ଼ଭାଇଙ୍କ ପାଖରେ । ତାଙ୍କ ଇଚ୍ଛା ପୂରଣ ହେଲା ।"

"ଆମେ ଫେରିଆସିବା ମାତ୍ରେ ବିନା କାଗଜପତ୍ରରେ ମୁଁ ସ୍ଥାନୀୟ ଅଧିକାରୀଙ୍କୁ ମୋ ଫେରିବା କଥା ଜଣାଇଦେଲି । ଲୋକ କମିଟିର ପ୍ରେସିଡ଼େଣ୍ଟ, ପ୍ରାୟ ପଚିଶବର୍ଷର ଜଣେ ବ୍ୟକ୍ତି, ମୋତେ ଠିଆକରାଇ ଉଦ୍ଧତ ଭାବରେ ପ୍ରଶ୍ନକଲେ :

'ତୁମେ ସାଇଗନ୍‌ରେ କି କାମ କରୁଥିଲ ?'

'ସବୁପ୍ରକାର କାମ ।'

'ତୁମେ ଆମେରିକାନ ଆଉ ଖେଳଣାସରକାର ପାଇଁ କାମ କରୁଥିଲ କି ?'

'ମୋ ରବରବେପାରରୁ ମୁଁ ଢେର ପଇସା ରୋଜଗାର କରୁଥିଲି ଆଉ ସେମାନଙ୍କ ପାଇଁ କାମକରିବା ଦରକାର ନଥିଲା ।'

'ତୁମେ ତ କୃଷକ ସଂଘର ଜଣେ ସଦସ୍ୟ, ଏଇଠି ରହି ପ୍ରତିରୋଧରେ ଭାଗନେଲନି କାହିଁକି ?'

'ମୋ ନିଜର ବ୍ୟବସାୟ କରିବାର ଥିଲା ।'

"ଅଳ୍ପଦିନ ପରେ ଜଣେ ଲୋକ ଆସି ମୋ ଠାରୁ ମୋଟର ବୋଟ୍‌ଟି ମାଗି ନେଇଗଲା ; ସେ କହିଲା ଯେ ଡଙ୍ଗାଟି ଗ୍ରାମ ପ୍ରଶାସନ ପାଇଁ କେତେଦିନ କାମ କରିବ । ହେଲେ ମାସେ ପରେ ବି ଫେରିନଥିଲା । ପଚାରିବାରୁ ମୋତେ ପ୍ରଚ୍ଛନ୍ନ ଧମକ ସହ କୁହାଗଲା ଯେ ଶତ୍ରୁ ସହ ମିଶି ମୁଁ ବହୁତ ଧନୀ ହୋଇଯାଇଛି ଅଥଚ ଏବେ ଗୋଟେ ସାମାନ୍ୟ ଭୁଟଭୁଟିକୁ ନେଇ ପ୍ରଶାସନ ପାଖରେ କଂଜୁସୀ ଦେଖାଉଛି । ମୋ ସ୍ତ୍ରୀ ରାଗିଯାଇ ସମସ୍ତ କାଗଜାତ ଦେଖାଇ ସତକଥା କହିଦେବାକୁ କହିଲା, ପ୍ରକୃତରେ ଏ ବିପ୍ଳବ ପାଇଁ କ'ଣ ମୁଁ କରିଛି । ହେଲେ ମୁଁ ଭାବିଲି ଦେଶର ସେବା ମୋର କର୍ତ୍ତବ୍ୟ, ଏଥିରୁ ଫାଇଦା ଉଠାଇବା ବା ଲାଭ ପାଇବାକୁ ମୁଁ ଚାହେଁ ନାହିଁ । ଗୋଟେ ସ୍ୱାଧୀନ ଦେଶର ନାଗରିକ ହୋଇପାରିବା ମୋ ପାଇଁ ଥିଲା ବଡ଼କଥା, ଏଥିପାଇଁ ମୁଁ ଗର୍ବ ଅନୁଭବ କରୁଥିଲି । ମୁଁ

ଯାହାସବୁ କରୁଥିଲି, ବିପ୍ଳବୀ ସଂସଦ ଜାଣିଥିଲେ । ମୋ ପରିବାର ଜାଣିଥିଲେ । ଏଇ କେତେଦିନ ଭିତରେ, ଜିଲା ଓ ପ୍ରାଦେଶିକ ସ୍ତରରୁ ବହୁ ବନ୍ଧୁ ଆସି ମତେ ଦେଖାକରିବାରୁ, ଅଧିକାରୀ ପରିଚୟ ପଚାରିଲେ, ସେମାନେ କିଏ ? ମୁଁ ଉତ୍ତରଦେଲି ଯେ ସାଇଗନ୍‌ରେ ସେମାନଙ୍କ ବୈପ୍ଳବିକ କାର୍ଯ୍ୟରେ ମୁଁ ସହାୟତା କରିଥିଲି ।''

ମି. ବା'ଙ୍କ ସହିତ କଥାହେଲାବେଳେ ଦେଖିଲି, ଜଣେ ଅତି ପତଳା, କୁଜା ଲୋକ ଅତି ଚିପା ବାଦାମୀରଙ୍ଗର ଟ୍ରାଉଜର ପିନ୍ଧି ଆସି ପହଞ୍ଚିଲେ । ସେ ଏକପ୍ରକାର ପ୍ରଣାମ କଲାପରି ଢଙ୍ଗରେ ଚାଲୁଥିଲେ । ସେ ଆସି ଗୋଟେ ଖଟ ଉପରେ ବସିପଡ଼ିଲେ ଯେଉଁଠି କେତେ ଖାତାପତ୍ର ଜମା ହୋଇଥିଲା । ମୁଁ ଅନୁମାନ କଲି, ସେ ନିଶ୍ଚୟ ମି.ହାଇ, ଟ୍ରାକ୍ଟର ଷ୍ଟେସନ ପରିଚାଳନାରେ ମି. ବା'ଙ୍କୁ ସାହାଯ୍ୟ କରନ୍ତି । ଦୁଇ ବୃଦ୍ଧ ଏଭଳି ଏକ ସମୟର ବ୍ୟବସାୟ ବିଷୟ ଆଲୋଚନା କରୁଥିଲେ ଯେତେବେଳେ ସେ ଅଞ୍ଚଳରେ ବିପୁଳ ପରିବର୍ତ୍ତନ ଘଟୁଥିଲା ।

ଏହା ଥିଲା ଗୋଟେ ବିଚିତ୍ର ଦୃଶ୍ୟ, ମୁଁ ବୁଲିଥିବା କୌଣସି ଜାଗାରେ ଏପରି ମୁଁ ଦେଖିନଥିଲି । ଖରାବେଳେ ସାମାନ୍ୟ ବିଶ୍ରାମ ନେଇ ମୁଁ ଉଠିପଡ଼ିଲି ଆଉ ଦେଖିଲି ମି.ହାଇ ଢେର ଆଗରୁ ଆସି ନିଜ ଟେବୁଲରେ ତାଙ୍କ କାମରେ ବ୍ୟସ୍ତ । ମୁଁ ପଚାରିଲି, ''ଏଇଟା ତ ଗୋଟେ ଛୋଟିଆ କେନ୍ଦ୍ର, ତଥାପି ଆପଣଙ୍କର ଏତେ ଖାତା ବହି ?''

ମି.ହାଇ ନିଜ ଚଷମା ଖୋଲିଲେ, ଟେବୁଲ ଉପରେ ଥୋଇଲେ, ମତେ ଅନେଇଲେ ଆଉ କହିଲେ, ''ହଁ ସାର୍, ଆମକୁ ବହୁତ ହିସାବ ଠିକ୍ କରି ରଖିବାକୁ ହୁଏ : ଟ୍ରାକ୍ଟର ଭଡ଼ାରେ ଆଣିବା, ଶ୍ରମିକଙ୍କ ମଜୁରି, ବ୍ୟବହାରଜନିତ କ୍ଷୟକ୍ଷତି ପାଇଁ ଅର୍ଥଜମା, ପ୍ରତି ଟ୍ରାକ୍ଟରର ତେଲଖର୍ଚ୍ଚ ଆଉ ଭିନ୍ନ ଭିନ୍ନ କିସମର ଜମିପାଇଁ ଅଲଗା ଅଲଗା ବ୍ୟୟ ଅଟକଳ । ଆମେ ତ ବୁଢ଼ା ହେଲୁଣି, ସେଥିପାଇଁ ଦିନସାରା କାମ ଚାଲିଥାଏ ।''

''ମୁଁ ଯାହା ଦେଖୁଛି, ଆପଣ ତ ଏ ଜାଗାର ଲୋକ ନୁହଁନ୍ତି ?''

''ମୁଁ ନୀନ୍‌ବିନ୍‌ରୁ ଆସିଛି ଆଉ ତିରିଶଦଶକରୁ ଦକ୍ଷିଣରେ ରହିଛି ।''

ତାଙ୍କ ସ୍ୱର ଆଉ ବ୍ୟବହାରରୁ ଜଣାପଡୁଥିଲା ସେ ଜଣେ ବୁଦ୍ଧିଜୀବୀ କର୍ମଚାରୀ କିମ୍ବା ଜଣେ ଶିକ୍ଷକ, କିନ୍ତୁ କୃଷକ ନୁହଁନ୍ତି । ସେ ଯେତେବେଳେ ସିଗାରେଟ୍ ବଳିବା ଆରମ୍ଭ କଲେ, ମୁଁ ଗୋଟେ ନୂଆ ଫିଲଟର ସିଗାରେଟ୍ ପ୍ୟାକେଟ୍ ଖୋଲି ତାଙ୍କୁ ଯାଚିଲି ; ସେ ସମ୍ମାନର ସହ ଗୋଟିଏ ନେଲେ, ଡିଆସିଲି ଜଳାଇ ଏପରି ଏକ ଦୀର୍ଘ ସୁଦୁକା ଟାଣିଲେ ଯେପରି କେଉଁକାଳୁ ଏହାର ସ୍ୱାଦ ତାଙ୍କ ପାଟିରେ ବାଜିନାହିଁ ।

''ଆପଣ ଆଉ ମି. ବା' କ'ଣ ବହୁକାଳୁ ପରିଚିତ ? ମୁଁ ଜିଜ୍ଞାସୁ ହୋଇ ପଚାରିଲି ତାଙ୍କ ଜୀବନ ବିଷୟରେ ଟିକେ ଅଧିକ ଜାଣିବା ପାଇଁ । କାରଣ ଏଇ ଲୋକଟି ଭିତରେ କିଛି ଅସାଧାରଣ ମୁଁ ଦେଖିଲି ଯାହା ମୋ ମନରେ ଦୟା ଜାଗ୍ରତ କରାଇଥିଲା ।''

ନାହିଁ ଆଜ୍ଞା, ମୁଁ ତାଙ୍କୁ ଏଇ ଦୁଇମାସ ହେଲା ଜାଣିଛି । ମୁଁ କାନ୍ ଥୋରେ ରହୁଥିଲି ଆଉ କାନ୍ ଥୋ ୟୁନିଭର୍ସିଟିରେ ଫରାସୀ ସାହିତ୍ୟ ପଢ଼ାଉଥିଲି । ହେଲେ ବାରବର୍ଷରୁ ଊର୍ଦ୍ଧ୍ୱ ହେବ ମୁଁ ପେନ୍‌ସନ୍ ଅର୍ଥରେ ଚଳୁଛି । ବର୍ତ୍ତମାନ ମୋତେ ସତୁରିବର୍ଷ, ମି.ବା'ଙ୍କଠାରୁ ଅଳ୍ପ କେତେ ବର୍ଷ ବଡ଼ । ମି.ବା' ତଥାପି ଟାଣୁଆ ଅଛନ୍ତି ଯେତେବେଳେ ମୁଁ ଦୁର୍ବଳ ହୋଇଯାଇଛି, ଜାଣେ ନାହିଁ, ଆଉ କେତେକାଳ ମୁଁ ବଞ୍ଚିବି !

ଉପରଓଳି ମିସେସ୍ ବା' ତାଙ୍କ ଝିଅ ସହିତ ପଛ ଘରେ ଖାଉଥିଲେ, ମି.ବା', ତାଙ୍କ ସେକ୍ରେଟାରୀ ଆଉ ମୁଁ ସାମ୍ନା କୋଠରିରେ । ଆମେ ଟେବୁଲ ପାଖରେ ବସି ସାରିଥିଲୁ, ହେଲେ ମି.ହାଇ ତଥାପି ଚାଲୁଥିଲେ, ମି.ବା' ତାଙ୍କୁ କହିଲେ : ଆମ ସାଥିରେ ବସିପଡ଼ନ୍ତୁ ମି.ହାଇ, ଉତ୍ ବାକି କାମ କରିନେବ ।

ତାପରେ ହିଁ କେବଳ ସେ ଧୀରେ ଆସି ମୋ ପାଖରେ ବସିଲେ । ସେ ଅନ୍ୟମାନଙ୍କୁ ସବୁ କାମ ଆଗ କରିବାକୁ ଛାଡ଼ି ଦେଉଥିଲେ ଆଉ କେବେ କିଛି ଆଗଦୁରା କରୁନଥିଲେ : ଜଂସାଟେ ଧରିନେବା, ଖାଦ୍ୟ ନେଇଆସିବା, ଖାଇବା । ତାଙ୍କୁ ସମସ୍ତେ ଶିଷ୍ଟାଚାର ଦେଖାଉଥିବା ଭଦ୍ରଲୋକଟିଏ ଭାବୁଥିଲେ । ହେଲେ ମୁଁ ତାଙ୍କ ବ୍ୟବହାରରେ କିଛିଟା ଅସହଜ ଭାବ ଲକ୍ଷ୍ୟ କଲି । ସେ ଥିଲେ ଏପରି ଏକ ବ୍ୟକ୍ତି ଯିଏ ସବୁକଥାରେ ଅନ୍ୟଉପରେ ନିର୍ଭର କରୁଥିଲେ । ମୁଁ ତାଙ୍କ ମାନସିକ ଅବସ୍ଥାକୁ ବୁଝିପାରିଲି କାରଣ ମୁଁ ଯୁବକ ଥିଲାବେଳେ ଏଇ ଏକାପ୍ରକାର ଅପ୍ରୀତିକର ଅବସ୍ଥାରେ ଦିନାକେତେ ପଡ଼ିଥିଲି : ସାଙ୍ଗସାଥୀ, ସମ୍ପର୍କୀୟମାନଙ୍କ ଘରେ ରହି, ଯେତେ କଠିନ ପରିଶ୍ରମ କଲେ ବି ସବୁବେଳେ ମୁଁ ହସୁଥିଲି, କାରଣ ମୁଁ ଡରୁଥିଲି କାଳେ ସେମାନେ ବିରକ୍ତ ହେବେ । ହେଲେ ଖାଇବାଟା ସବୁବେଳେ ଗୋଟେ ସ୍ପର୍ଶକାତର ସମସ୍ୟା : ତୁମ ପେଟପୂର୍ଣ୍ଣ ଥିଲେ ଏହା ତୁମକୁ ଜୀଇଁବାର ଆନନ୍ଦ ଦିଏ, ହେଲେ ଏହା ତୁମକୁ ଲଜ୍ଜାରେ ବି ମକଚି ଦିଏ ଯେତେବେଳେ କେହି ମନ୍ତବ୍ୟ କରେ ଯେ ତୁମେ ଗୋଟେ ଘୁଷୁରି ପରି ଖାଉଚ ବା ମାଛ ପରି ପିଇଚାଲିଛ । ସେଥିପାଇଁ ଖାଦ୍ୟ ଯେତେ ସୁସ୍ୱାଦୁ ଥିଲେ ବି ଆଉ ମୁଁ ଯେତେ ଭୋକିଲା ହୋଇଥିଲେ ବି, ପୂରାପେଟ ଖାଇବାରୁ ତଥାପି ନିଜକୁ ମୁଁ ସଂଯତ କରୁଥିଲି ।

ଖାଇସାରି ମି.ବା' ତାଙ୍କ କାମରେ ବୋଟ ଚଳାଇ ଚାଲିଗଲେ, ମୋ ସାଙ୍ଗମାନେ ଗଲେ ଦୁଆର ଦୁଆର ବୁଲି ଅବସ୍ଥା ଦେଖିବାକୁ, ଆଉ ମୁଁ ଘରେ ରହିଲି ମି.ହାଇଙ୍କ ସାଥିରେ ଚା' ପିଇବାକୁ ।

"ଆପଣଙ୍କୁ ଭଲ ନିଦ ହେଉଛି ? ମୁଁ ତାଙ୍କୁ ପଚାରିଲି ।"

"ମୁଁ ଗୋଟେ କାଠଗଡ଼ ପରି ଶୁଏ ସାର୍, ମୃତ୍ୟୁ ବି ସହଜରେ ଆସେ ନାହିଁ ।"

"ଜୀଇଁରହିବା କଷ୍ଟକର, କିନ୍ତୁ ମରିଯିବା ସହଜ ।"

"ଆପଣ ଠିକ୍ କହିଛନ୍ତି, ହେଲେ ମୋ ପାଇଁ ମରିବା ବି କଷ୍ଟକର, ଜୀଇଁରହିବା

କଷ୍ଟକର । ଅନେକଥର ମୁଁ ଆତ୍ମହତ୍ୟା କରିବାକୁ ଭାବିଛି, ବହୁକାରଣରୁ ସେପରି କରିବାରୁ ନିବୃତ୍ତ ହୋଇଛି । ଯା'ହେଲେ ବି ଗୋଟେ ମଣିଷର ଜୀବନ ତ ଆଉ ଚିରକାଳ ଚାଲିପାରିବନି, ଶୀଘ୍ର ବା ବିଳମ୍ବରେ ଏହା ନିଶ୍ଚୟ ସମାପ୍ତ ହେବ ।''

''ସେମିତି ଯଦି ଆପଣ ଭାବୁଛନ୍ତି, ତାହେଲେ ଯେକୌଣସି ପରିସ୍ଥିତିରେ ମାନସିକ ଶାନ୍ତି ପାଇପାରିବେ ।''

''ଏବେ ଯେତେବେଳେ ମୋ ସ୍ତ୍ରୀ ଆଉ ଝିଅ ଜୀବିତ ନାହାନ୍ତି, ମୋର ଘରଦ୍ୱାର ନାହିଁ, ମୁଁ ଗରିବ ଆଉ ମୋର କିଛି ଦାୟିତ୍ୱ ବି ନାହିଁ, ମୁଁ ସମ୍ପୂର୍ଣ୍ଣ ଶାନ୍ତିରେ ବଞ୍ଚିପାରିବି ।''

ଚା' ପିଇବା ଆଉ ସିଗାରେଟ୍ ଟାଣିବା ଭିତରେ ସେ କହି ଚାଲିଲେ : ''ଜୀବନର ବିପର୍ଯ୍ୟୟମାନଙ୍କୁ ଭେଟିବାରେ ମୁଁ ପ୍ରଥମ ବା ଶେଷ ଲୋକ ନୁହେଁ, ହେଲେ ମୋର ଧ୍ୱଂସ ସମ୍ପୂର୍ଣ୍ଣ ହୋଇଛି, ବିନା କ୍ଷତିପୂରଣରେ । ସତୁରି ବର୍ଷର ଉତ୍ଥାନ ପତନ ପରେ ମୋର ଯାହା ବଳକା ଅଛି ତାହା ମୋର ଦେହ, ଗୋଟାଏ ଦେହ ଯାହା ମାଟିରେ ପୋତା ହୋଇଗଲା ପରେ, ଏହା ଯେପରି କେବେ ପୃଥିବୀରେ ନଥିଲା ସେପରି ବିଚାର ହେବ ।''

ମୁଁ କିଛି କହିଲି ନାହିଁ, ସିଗାରେଟ୍‌ଟିଏ ଲଗାଇଲି ଆଉ ତାଙ୍କ କାନ ଓ ମୁହଁକୁ ନିରିଖେଇ ଦେଖିଲି । ତାଙ୍କ କାନଦୁଇଟି ଥିଲା ବଡ଼ ଆଉ ମୁହଁ ଉଜ୍ଜ୍ୱଳ, ମୁଁ ଆଶ୍ଚର୍ଯ୍ୟ ହେଲି କାହିଁକି ସେ ଏତେ ହତଭାଗ୍ୟ ; କାହିଁକି ନିଜ ଜୀବନ ଶେଷରେ ସେ ଏପରି ଭାଗ୍ୟ କବଳରେ ପଡ଼ି ଉପହସିତ ହେଉଛନ୍ତି, ଏକାକୀ ବଞ୍ଚିବା, କେହି ଯତ୍ନନେବାକୁ ନଥିବା ଆଉ କେହି ତାଙ୍କ କଥା ଶୁଣିବାକୁ ନଥିବା ।

''ମୁଁ ଗୋଟେ ସ୍ୱଚ୍ଛଳ ପରିବାରରେ ଜନ୍ମ ହୋଇଥିଲି'', ସେ ନିଜେ ଜୀବନକଥା କହିବାକୁ ବ୍ୟାକୁଳ ଥିଲେ । ''ନାନ୍ ଦୀନ୍‌ରେ ସେକେଣ୍ଡାରୀ ଶିକ୍ଷା ସମାପ୍ତ କରି ମୁଁ ସାଇଗନ୍ ଚାଲିଯାଇଥିଲି ଆଉ ସେଠାରୁ ଜାହାଜରେ ଗଲି ଫ୍ରାନ୍ସ ଉଚ୍ଚଶିକ୍ଷା ପାଇଁ । ସେଠାରେ ଡିଗ୍ରୀ ଲାଭ କଲି, ସର୍‌ବୋନ୍‌ରେ ଉଚ୍ଚଶିକ୍ଷା ଅବ୍ୟାହତ ରଖିଲି । ଅଣଚାଳିଶ ବର୍ଷରେ ଫେରିଆସିଲି ଏ ଦେଶକୁ, ଆଉ ସାଇଗନ୍‌ରେ କଲି ଶିକ୍ଷାଦାନ, ତାପରେ କାନ୍ ଥୋ । ବିଳମ୍ବରେ ବିବାହ କରିଥିଲି ଆଉ ମୋର ଝିଅଟିଏ ଜନ୍ମ ହୋଇଥିଲା । ସ୍ନେହୀ ସ୍ତ୍ରୀଟିଏ, ଭଲ ଝିଅଟିଏ, ରହିବାକୁ ଗୋଟେ ଘର, ଚଳିବାକୁ ଗୋଟେ ଚାକିରୀ, ମୋ ଭାଗ୍ୟକୁ ନେଇ ମୁଁ ସନ୍ତୁଷ୍ଟ ଥିଲି । ତାପରେ ମୁଁ ଅବସର ନେଲି । ମୋ ଝିଅ ଯେଉଁ ଯୁବକକୁ ବିବାହ କଲା ତାର ପରିବାର ନଥିଲା । ମୁଁ ତାକୁ ମୋ ପୁଅପରି ଦେଖିଲି । ଏଇସବୁ ଥିଲା ମୋର ବାର୍ଦ୍ଧକ୍ୟର ଆନନ୍ଦ । ହଠାତ୍ ବିପର୍ଯ୍ୟୟ ଲଗାତାର ଆସି ମୋତେ ନିରାଶା ଜର୍ଜରିତ କରିପକାଇଲା । ପ୍ରଥମେ, ମୋ ସ୍ତ୍ରୀ ମୋଟରକାର ଦୁର୍ଘଟଣାରେ ଆହତ ହୋଇ ପରଦିନ ମୃତ୍ୟୁବରଣ କଲା । ମୋ ଝିଅ ସେତେବେଳେ ତିନିମାସର

ଗର୍ଭବତୀ, ସ୍ୱାମୀର ମୃତ୍ୟୁରେ ପାଗଳପ୍ରାୟ ହୋଇଗଲା ସେ ଓ ତାର ଗର୍ଭପାତ ଘଟିଲା । ତା' ଦେହ ବେଳୁବେଳ ଗୁରୁତର ହେଲା, ଆମେ ଆମର ସବୁଜିନିଷ ବିକିଦେଇ ତାକୁ ସାଇଗନ୍ ନେଇଆସିଲୁ ଚିକିତ୍ସା ପାଇଁ । କିନ୍ତୁ ସେ ରହିଲା ନାହିଁ, ତିରିଶ ବର୍ଷ ବି ହୋଇନଥିଲା ତାକୁ, ସେ ମରିଗଲା । ଆମର ଜଣେ ପରିଚିତ ବ୍ୟକ୍ତି ସହ 'ବୁ-ଡୋପ୍' ଆସି ଖଣ୍ଡେ ଜମି କିଣିଲୁ । ସବୁଜିନିଷ ଭଡ଼ାରେ ଆଣି କରିବା କଥା, ମାଟିଚେଳା ଭାଙ୍ଗିବାଠାରୁ ଘାସବଛା, ଅମଳଯାଏ । ଚାରିମାସ ପରେ, ଆମେ କେବଳ କେତେ ଡଜନ କିଲୋଗ୍ରାମର କାସାଭାଗଛ ଉପାଡ଼ିଲୁ, କାରଣ ମୂଷା ଆମର ସବୁ ଶସ୍ୟ ଖାଇଦେଇଥିଲେ । ଝିଅକୁ ହରାଇ, ସମ୍ବଳହୀନ ହୋଇ, ବେପାରରେ କ୍ଷତି ସହି କିପରି ଶେଷଜୀବନରେ ଆମେ ସେହି ଦୁର୍ଜ୍ଜୟ ଯନ୍ତ୍ରଣା ସହିପାରିଥାନ୍ତୁ ? ମୋ ସ୍ତ୍ରୀ ରୋଗାକ୍ରାନ୍ତ ହୋଇ ଅଳ୍ପଦିନରେ ମତେ ଛାଡ଼ି ଆରପାରିକୁ ଚାଲିଗଲା ।

ତା' ଶୁଦ୍ଧିକ୍ରିୟା ପରେ, ମୋର ଯାହାକିଛି ଜିନିଷ ଥିଲା, କଡ଼େଇ ଡେକ୍‌ଚି ସହିତ ସବୁ ଦେଇଦେଲି : ଏକୁଟିଆ ମୁଁ ଯେଉଁଠି ହେଲେ ଖାଇଦେଇ ପାରିବି, ଶୋଇ ବି ପାରିବି । ଗଳିମୁଣ୍ଡ, ଛକ ହେଲା ମୋର ଘର, ଜନଗହଳି ମୋ ପରିବାର । ଏତିକିରେ ମୋ ଦୁର୍ଭାଗ୍ୟ ସରିନଥିଲା । ଦିନେ ସକାଳୁ ଉଠି ମୋ ଲୁଗା ସଫାକରୁଛି, ସାଙ୍ଗଟିଏ ଆସି କଫି ପିଇବାକୁ ଡାକିଲା । ଓଦାଲୁଗା ବାଲ୍‌ଟିଟି ଖଟ ତଳେ ଥୋଇଦେଇ ମୁଁ ବାହାରିଗଲି । ଫେରିଲାବେଳକୁ ଦେଖିଲି କୋଠରି ଖାଲି, ଏପରିକି ମୋ ଶୋଇବା ସପଖଣ୍ଡିକ ବି ନଥିଲା ; କେବଳ ଓଦାଲୁଗା ବାଲ୍‌ଟିଟି ଥିଲା । ଓଦାଲୁଗାତକ ଶହେ ଡଙ୍ଗ୍‌ରେ ବିକିଦେଇ ସାଇଗନ୍ ଫେରିଆସିବାକୁ ମନସ୍ଥିର କରିନେଲି । ମୋ କୋଠରିର ଦ୍ୱାର ଖୋଲାରଖି ରାସ୍ତାକୁ ଦୌଡ଼ିଆସି ଭେଟିଲି ଗୋଟିଏ ଆର୍ମିଟ୍ରକ । ଡ୍ରାଇଭରକୁ ପଚାରିଲି ମତେ ସାଇଗନ୍‌ଯାଏଁ ନେଇଯିବ କି । ରାତି ହୋଇଆସିଲାବେଳକୁ ଆମେ ସହରରେ ପହଞ୍ଚିଲୁ । ଡ୍ରାଇଭର ମତେ ପଚାରିଲା କେଉଁଠି ମୁଁ ଓହ୍ଲାଇବି । ମୋର ତ ଘର ନଥିଲା । ତେଣୁ ମତେ ବେନ୍‌ଥାନ୍ ବଜାରରେ ଓହ୍ଲାଇ ଦେବାକୁ କହିଲି । ଓଦାଲୁଗା ବିକା ଟଙ୍କା ମୋର ଦୁଇଦିନ ଚଳିବାକୁ ଢେର୍ ଥିଲା, ତାପରେ ମୁଁ ଆତ୍ମହତ୍ୟା କରିଦେବି । ସାଇଗନ୍‌ରେ ଆତ୍ମହତ୍ୟା କଲେ କେହି ଜାଣିବାର ବାଟ ନାହିଁ । ମୁଁ 'କାନ୍‌ହୋଇ' ସେତୁ ଉପରେ ଠିଆହୋଇ ତଳେ ନଦୀକୁ ଚାହିଁଲି । ହଠାତ୍ ମୁଁ ଭୟରେ ଛଡ଼ସଡ଼ ହୋଇଗଲି । ଏ ଭୟ ଥିଲା ସେତୁର ଉଚ୍ଚତାର ଭୟ, ନିଃସଙ୍ଗତାର ଭୟ, ଚାରିପାଖ ପରିବେଶର ଭୟ ଆଉ ମୋର ନିଜ ଜୀବନ ନିଜେ ନେବାକୁ ପ୍ରୟାସର ଭୟ । ଏ ଭୟାନକ ଚିନ୍ତାରୁ ସଙ୍କୁଚିତ ହୋଇ ମୁଁ ଫେରିଆସିଲି ବେନ୍‌ଥାନ୍ ବଜାରକୁ । ଗୋଟେ ଫାଙ୍କା ଷ୍ଟାଣ୍ଡରେ ସ୍ତବ୍ଧ ରାତିଟି କଟାଇଲି । ମୋ ପାଖରେ ଥିବା ଅର୍ଥରେ ଆଉ ଗୋଟିଏ ଦିନ ମୋର ଚଳିଯିବ । ତୁମେ ଯେତେବେଳେ ସମ୍ପୂର୍ଣ୍ଣ ନିଃସ୍ୱ ହୋଇଯାଅ କେବଳ ସେତିକିବେଳେ

ମରିଯିବା ପାଇଁ ତରତର ହୁଅ । ଏଣୁ ମୁଁ ଆଉଥରେ ମୋତେ ମାରିଦେବା କଥା ଭାବିଲି । ଏଥର ଗୋଟେ ମୋଟରଗାଡ଼ି ତଳେ ନିଜକୁ ଚପେଇ ଦେବାକୁ ମନଥିଲା । ତଥାପି ଆତ୍ମହତ୍ୟା ଧାରଣାଟା ମତେ କମ୍ପାଇ ଦେଉଥିଲା । ଯଦି ନମରି ମୋ ଗୋଡ଼ହାତ ଭାଙ୍ଗିଯାଏ ଆଉ ଅପରେସନ୍ ଦରକାର ପଡ଼େ ତ ମୁଁ କ'ଣ କରିବି ? ଏହା ତ ମୃତ୍ୟୁଠାରୁ ବି ଭୟଙ୍କର ହୋଇଯିବ ।

ଏମିତି ଭାବୁ ଭାବୁ ମୁଁ ନିଘୋଡ଼ ନିଦରେ ଶୋଇପଡ଼ିଲି । ପରଦିନ ସକାଳେ ମୁଁ ଖାଲିପେଟରେ ଉଠିଲି ଆଉ ଭିକ ମାଗିବାକୁ ବାଧ ହେଲି । ମତେ ପାଞ୍ଚଡଙ୍ଗ୍ ଦେଇ, ଜଣେ ମୋ ବିଷୟରେ ଜାଣିବାକୁ ଚାହିଁଲେ । ତାଙ୍କର ମୋ ଉପରେ ଦୟା ଆସିଲା ଆଉ ସେ ପଚାରିଲେ ମୁଁ ତାଙ୍କ ସାଥିରେ 'ଡଙ୍ଗ୍ଥାପ୍ମୋଇ' ଯାଇ ତାଙ୍କ ପୁଅକୁ ଫରାସୀ ଭାଷା ଶିଖାଇ ଦେବି କି ? ଡଙ୍ଗ୍ଥାପମୋଇରେ ପହଞ୍ଚିଲାବେଳକୁ ଲୋକଟିର ଘରେ ପଙ୍କକାଢ଼ିବା ଯନ୍ତ୍ରଲଗା ନୌକାଟିଏ ଥୁଆହୋଇଛି, ଲୋକ କାମରେ ଲାଗିଛନ୍ତି । ମୁଁ କିଛି ବୁଝିନପାରି ଏକୁଟିଆ ଠିଆ ହୋଇଥିଲାବେଳେ ଭାଗ୍ୟକୁ ମି.ବା'ଙ୍କୁ ଭେଟିଲି, ସେ ମୋତେ ଟ୍ରାକ୍ଟର ଷ୍ଟେସନର ହିସାବରକ୍ଷକ କରି ନେଇଆସିଲେ । ପରେ ତାଙ୍କ ସାଙ୍ଗମାନଙ୍କୁ କଥା ପ୍ରସଙ୍ଗରେ ସେ ପ୍ରାୟ କହନ୍ତି : "ମୋର ଭାଗ୍ୟ ଭଲ ମୁଁ ମି. ହାଇଙ୍କୁ ପାଇଛି । ତାଙ୍କ ସହଯୋଗ ମୋର ଅଧାବୋଝ କମାଇ ଦେଇଛି ।" ଆଉ ଶେଷଜୀବନରେ ମି.ବା'ଙ୍କ ପରି ଦୟାଳୁ ଲୋକଟିକୁ ଭେଟି ମୁଁ ନିଜକୁ ଭାଗ୍ୟବାନ ମନେକରୁଛି ।

ଆମ ଭାବନା ଉପରେ ଲଗାମ ଦେଇ ନୀରବରେ ବସି ଆମେ ସିଗାରେଟ୍ ଟାଣିଲୁ, ଚା' ପିଇଲୁ । ତାପରେ ମି.ହାଇ ପୁଣି କହିଲେ : "ମୋତେ କ୍ଷମା କରିବେ ସାର୍, ବିଶ୍ୱାସରେ ଜୀବନକଥା ସବୁ କହିଦେଲି । ସତୁରିବର୍ଷର ଦୁଃଖସୁଖଭରା ଜୀବନ ଜୀଇଁସାରି, ଏବେ ମୁଁ ମୋର ଭାଗ୍ୟର ତିକ୍ତସ୍ୱାଦ ଚାଖୁଛି : ଯେତେବେଳେ ବି ଖାଇବା ଥାଳିଟି ଧରୁଛି, ଜୀବନର କଠୋରତା ଆଉ ଜୀବନର ବଦାନ୍ୟତା କଥା ଭାବି ଆଖିରୁ ଲୁହ ନଗଡ଼ାଇ ରହିପାରୁ ନାହିଁ ।

ପରଦିନ ସକାଳୁ ଆମେ ବା' ପରିବାରରୁ ବିଦାୟ ନେଲୁ । ମି. ବା' ଆମ ଆଗରୁ ଉଠି ସ୍ତ୍ରୀଙ୍କୁ ଆମ ପାଇଁ ରାନ୍ଧି ଦେବାକୁ କହିଥିଲେ, ହେଲେ କମ୍ୟୁନାଲ କମିଟିରେ କେହି ନଥିଲେ ଆମକୁ କିଛି ଖାଦ୍ୟ ଦେବାକୁ ।

କେନାଲ କୂଳଯାଏଁ ମୋ ସାଥିରେ ଆସି ମି.ହାଇ ସନ୍ତର୍ପଣରେ ମତେ କହିଲେ : "ଆଉ ଥରେ ଯଦି ଏ ଅଞ୍ଚଳକୁ ଆପଣଙ୍କର ଆସିବାର ହୁଏ ତାହେଲେ ଆମକୁ ଦେଖିଯିବାକୁ ଭୁଲିବେ ନାହିଁ । ଆପଣଙ୍କ ସାଙ୍ଗେ କଥାହୋଇ ମୁଁ ବହୁତ ଖୁସି ହୋଇଛି ।"

ମୋଟରଚାଳିତ ଡଙ୍ଗାଟିର ଇଞ୍ଜିନ୍ ଷ୍ଟାର୍ଟ ହେଲା ଓ ଟ୍ରାକ୍ଟର ଷ୍ଟେସନ୍‌ଠାରୁ ଦୂରକୁ ଦୂରକୁ ଆଗେଇ ଚାଲିଲା, ଗାଓଗଛ ଧୀରେ ଛୋଟରୁ ଛୋଟ ଦେଖାଗଲା, ତଥାପି

ଏହା ଇଉକାଲିପଟାସ୍ ଜଙ୍ଗଲ ଉପରେ ଆଧିପତ୍ୟ ବିସ୍ତାର କରିଥାଏ । ଗୋଟେ ଜେଟି ଉପରୁ, ମି.ହାଇଙ୍କ ଉଦାସ ଆଖି ଆମକୁ ଅନୁସରଣ କରୁଥାଏ, ତାପରେ ସେ ଆସି ମି.ବା'ଙ୍କ ପାଖରେ ଠିଆହେଲେ । ଉଭୟଙ୍କ ମଧ୍ୟରେ ବୈଷମ୍ୟ ସ୍ପଷ୍ଟ ଦେଖାଯାଉଥାଏ । ଦୁଇଟି ଲୋକ, ଦୁଇଟ ଭାଗ୍ୟ : ଜଣଙ୍କର ଅଛି ଏକ ନିରାପଦ ଭବିଷ୍ୟତ, ସେ ଆତ୍ମବିଶ୍ୱାସୀ ଆଉ ତାଙ୍କ ମୁହଁ ଉଜ୍ଜ୍ୱଳ, ଅନ୍ୟଜଣକ ନିଜ ଜୀବନର ମର୍ମନ୍ତୁଦ ଉତ୍‌ଥାନ ପତନର ସାମ୍ନାକରି ହତାଶ ହୋଇ ଏହା ଅନିବାର୍ଯ୍ୟ ବୋଲି ଧରିନେଇଛି । ସେମାନଙ୍କ ଭେଟଭାଟ, ଯଦିଓ ବାହାରକୁ ସାଧାରଣ ଲାଗୁଥିଲା, ବାସ୍ତବରେ ଦୁହିଁଙ୍କ ମନରେ ସୃଷ୍ଟି କରୁଥିଲା ଅପାର ଆନନ୍ଦ, ଯାହା କେବଳ ବୁଢ଼ାଲୋକମାନେ ହିଁ ସମ୍ପୂର୍ଣ୍ଣ ବୁଝିପାରିବେ ।

୧୦

# ଲିସଁର ରସୁଣ ଚାଷ

## ଗୁୟେଁ ଥାନ୍ ଲଙ୍

ବଢ଼ିଉଠୁଥିବା କ୍ୱେନନ୍ ସହରର ଗଳିମାନ ବାଲିରେ ଭର୍ତ୍ତି ହୋଇଯାଇଥିଲା । ଉପକୂଳ ପାଖାପାଖି ହାୱା ଥିଲା ହାଲ୍‌କା ଆଉ ସତେଜ, ହେଲେ ବି ଥିଲା ଅତି ଶାନ୍ତ ଆଉ ନିର୍ବିକାର । ପୂବେଇ ପବନ ଖୁବ୍ ଜୋର୍ ବୋହି ଉପରକୁ ବାଲି ଉଠେଇ ଆଣୁଥିଲା, ଯାହା ବଜାରଦୋକାନ ଟପି, ଦୁଇ-ତିନି ମହଲା ପୁରୁଣା କୋଠା ଉପରେ ଉଡ଼ି, ଶେଷରେ ଆସି ସଡ଼କ ଉପରେ ଜମାହେଉଥିଲା । ହେଲେ ଆମେ ଯଦି ହାତରେ ରାସ୍ତା ସଫା କରିବାକୁ ବସିଯାଉଥିଲୁ ତ ସଡ଼କର କଳା, ଚିକ୍କଣ ପରିସର ଆମ ନଜରରେ ପଡୁଥିଲା ଯାହାକୁ ଆମେ କୋଡ଼ିଏ ବର୍ଷ ତଳେ ଛାଡ଼ିଯାଇଥିଲୁ । ସେଇ ଏକାଜିନିଷ ଘଟୁଥିଲା ଭିନ୍‌ଥାନ୍, ତ୍ରାବଂଗ, ବିନ୍‌ଜିଆ, ଭାନ୍‌ତୋଙ୍ଗ୍, ବୁଲାଂଅନ୍ ଆଉ ଲିସଁ ଅଞ୍ଚଳରେ ବି ... । ଭୁଲିଯାଇଥିବା ଅତୀତରୁ ଆଉ ପୁରୁଣାବସ୍ତିର ବ୍ୟସ୍ତଜୀବନରୁ ସମସ୍ତ ଧୂଳି ସଫା କରିଦେଉଥିଲେ, ଆଉ ତଥାପି ନିଜର ଦୈନନ୍ଦିନ ରୁଟି ପାଇଁ ଆଜି ସଂଗ୍ରାମ କରୁଥିଲେ ..., ସତେ ଯେପରି ଆମ ବୀରଭୂମି ପୁଣି ଖୁବ୍ ଶୀଘ୍ର ଆମ ଆଗରେ ଉଭା ହୋଇଯିବ ।

ବିଚିତ୍ର ସ୍ଥିତି ୟେ । ଜଣେ ଯାହା ସାଥିରେ ତୁମେ ଗୋଟିଏ ବେଞ୍ଚରେ ବସିଛ ସେ ଆଜି ଗୋଟେ ବିପ୍ଳବୀ କ୍ୟାଡ଼ର କର୍ମୀ ହୋଇପାରେ, ହେଲେ ଅତୀତର ଉତ୍‌ଥାନ-ପତନ ଭିତରେ ସେ ନିଜକୁ ଗୋଟେ ମୂଲିଆ, ପତ୍ରବାହକ ବା ଘରୋଇ ଚାକର ରୂପେ ଲୁଚାଇ ରଖିବାକୁ ବାଧ ହୋଇଥିଲା । କୋଡ଼ିଏ-ତିରିଶ ବର୍ଷ କାଳ ଲୁଚି ଲୁଚି ବିପ୍ଳବ କାର୍ଯ୍ୟକ୍ରମ କରିବା ଭିତରେ ଏଇ ଲୋକମାନେ ଆଉ ଜାଗାଗୁଡ଼ିକର ନାଁ ମନେପକାଇ ପାରୁନଥିଲେ, ଏପରିକି ନିଜପାଇଁ ବ୍ୟବହାର କରୁଥିବା ଛଦ୍ମନାମଗୁଡ଼ିକ ମଧ୍ୟ ସେମାନଙ୍କ ସ୍ମୃତିରେ ଆଉ ନଥିଲା । ଘରକୁ ଫେରି ଯେଉଁମାନଙ୍କୁ ସେମାନେ ଗୋଟି ଗୋଟି କରି ଭଲପାଉଥିଲେ ଆଉ ଯେଉଁ ଗାଁ ଲୋକଙ୍କ ସାଙ୍ଗେ ପୂରା ମିଶିଯାଉଥିଲେ ସେ ସମସ୍ତଙ୍କ ପାଇଁ ବିପ୍ଳବୀମାନଙ୍କ ଅତୀତ ଗୋଟାଏ ଛାୟା ବ୍ୟତୀତ ଆଉ କିଛି ନଥିଲା, କାରଣ ଏମାନେ ସମସ୍ତଙ୍କ ପାଇଁ କ'ଣ କରିଥିଲେ ସବୁ ଭୁଲି ହୋଇଯାଇଥିଲା ।

ସ୍ୱାଧୀନତା ପରଠାରୁ ପ୍ରାୟ ଦୁଇବର୍ଷ ଭିତରେ ମୋର ଭଉଣୀ ଘରକୁ ଆସିବା ଏଥରକୁ ମିଶାଇ ତୃତୀୟ ଥର ହେଲା । ସେଦିନ ସଂଧ୍ୟାରେ ମୋର ଭାବନା ଓ ଅନୁଭବମାନଙ୍କୁ ମୁଁ ସ୍ୱଷ୍ଟ କରିଦିଏ । ଗତ ଦୁଇଥରର ଭଉଣୀ ପରିବାରପକ୍ଷର ସମସ୍ତ ଆନ୍ତରିକତା ସତ୍ତ୍ୱେ ମୋ ମନରୁ ସଙ୍କୋଚ ସମ୍ପୂର୍ଣ୍ଣ ଦୂର ହୋଇପାରିନଥିଲା । ମୋ ଭଉଣୀ ପ୍ରତି ଗୋଟେ ପ୍ରକାର ଅସ୍ୱାଭାବିକ ଧାରଣା ମୋ ଭିତରେ ଚାପିହୋଇ ରହିଥିଲା । ସେ ଅତି ଧନୀ ଆଉ ଉଦ୍ଧତ ଯଦିଓ ନଥିଲା ତେବେ ବେଶ ଅର୍ଥଶାଳୀ ଥିଲା, ହେଲେ ତା' ଜୀବନଧାରାକୁ ମୁଁ ପସନ୍ଦ କରେ ବୋଲି ଧାରଣା ଦେବାକୁ ଚାହୁଁନଥିଲି । ଭଉଣୀ ନିଶ୍ଚୟ ମୋ ମନକଥା ଜାଣିପାରିଥିଲା କିନ୍ତୁ ମତେ କିଛି ଜଣେଇ ଦେଉନଥିଲା । ହେଲେ ଦୁଇବର୍ଷ ପରେ, ଏଇ ତୃତୀୟ ସାକ୍ଷାତରେ, ଗୋଟିଏ ଫଟୋ ମତେ ଦେଖାଇବାକୁ ସେ ମନରେ ସ୍ଥିର କରିନେଇଥିଲା । ପ୍ରକୃତି ଓ ଆକୃତି ମିଶି ଶହ ଶହ ସଂଖ୍ୟାରେ ଫଟୋ କାଚ ବନ୍ଧେଇ ହୋଇ ସେ ଘର କାନ୍ଥରେ ଏମୁଣ୍ଡୁ ସେମୁଣ୍ଡ ଟଙ୍ଗା ହୋଇଥିଲା । ଏଇ ନିର୍ଦ୍ଦିଷ୍ଟ ଫଟୋଟିକୁ ମୁଁ କେତେଥର ଦେଖିଛି ହେଲେ ଏତେ ପାଖରୁ କେବେ ଦେଖିନଥିଲି । ଭଉଣୀ କହିଲା : "ଦେଖ୍, ତୋ ଭଣଜା–ଭାଣିଜୀ, ଝିଆରୀ–ପୁତୁରାଙ୍କ ସାଙ୍ଗେ ତୋର ଏ ଫଟୋଟି କୋଡ଼ିଏ ବର୍ଷ ତଳେ ଉଠା ହୋଇଥିଲା ।"

ମୁଁ ଚମକି ପଡ଼ିଲି । ସେଇଠି ଥିଲା ଫଟୋଟି । ପିଲାମାନଙ୍କ ସହ ମୋ ଫଟୋ । ପ୍ରକୃତରେ ଯେଉଁଦିନ ମୁଁ ଏ ଜାଗା ଛାଡ଼ିଯାଇଥିଲି ସେଇଦିନ ମୋର ସବୁ ଭଣଜାଭାଣିଜୀ, ଏପରିକି ମାସେ, ପନ୍ଦରଦିନର ଚିଆଁଗୁଡ଼ା ବି ମୋ ବେକ, କାନ୍ଧ, ପେଟ ଉପରେ ଲଦି ହୋଇଯାଇଥିଲେ । ପୁଅଝିଅଙ୍କ ଫଟୋ ମଝିରେ ଏ ଫଟୋଟି ଥିଲା, ଦଳେ ଝିଅଙ୍କର ଫୁଲ ଫୁଟିବାକୁ ଅପେକ୍ଷା କରିବା, ଆଉ ଦମ୍ପତିଙ୍କର ଚନ୍ଦ୍ରୋଦୟକୁ ଲକ୍ଷ୍ୟ କରିବା ଫଟୋ ଦୁଇଟି ମଝିରେ । ସେତେବେଳେ ଦକ୍ଷିଣର ରାଜନୈତିକ ହାଓ୍ୱା ଯେପରି ଥିଲା, ସେଥିରେ ମା'ଟିଏ ପୁଅର ବା ସ୍ତ୍ରୀ ତା' ସ୍ୱାମୀର ଫଟୋ ରଖିବା ଅର୍ଥ କେବଳ ବିପଦକୁ ଡାକିବା ଭଳି ଥିଲା । ନହେଲେ, ଶତ୍ରୁପକ୍ଷ ଏଥିରୁ ବେଶ୍ କିଛି ଅର୍ଥ ବା ପାଞ୍ଚ–ଦଶ ତୋଳା ସୁନା କରିବାର ସମ୍ଭାବନା ଥିଲା । ସେତେବେଳେ ମୁଁ ବିଶେଷ ଭାବରେ ହାନୋଇ ରେଡ଼ିଓର ରାତ୍ରି କାର୍ଯ୍ୟକ୍ରମରେ ଅଧିକାଂଶବେଳେ ଆସୁଥିଲି । ମୋର କାମ ଥିଲା ଶତ୍ରୁପକ୍ଷର ଯୋଜନାକୁ ଗାଳିଦେଇ ଭର୍ତ୍ସନା କରିବା ଆଉ ଲୋକଙ୍କ ଭିତରେ ଆଶା ଜଗାଇ ରଖିବା ଉଦ୍ଦେଶ୍ୟରେ ଉତ୍ସାହବାଣୀ ଉଦ୍‌ଘୋଷିତ କରିବା । ଅତି ଧୈର୍ଯ୍ୟର ସହିତ ଏ କାମ ମୁଁ ନିଆବୀନ୍ ମୁକ୍ତ ହେବାଯାଏଁ କରିଆସିଥିଲି ।

"କାହିଁକି, ତତେ କ'ଣ ଡରମାଡୁନଥିଲା ?" ମୋ ସ୍ୱରର କମ୍ପନ ଚାପିବାକୁ ମୁଁ ଆଉ ସମର୍ଥ ନଥିଲି । ଚକିତଭାବ, ବେଦନା, ଯନ୍ତ୍ରଣା ମୋ ଛାତିତଳ ଓଦା କରିଦେଉଥଲା ।

ମୋ ଭଉଣୀ ଟିକେ ଥତମତ ହୋଇଗଲା । ପୁଣିଥରେ ଦେଖାହେଲାବେଳକୁ ଆମ

ଦୁହିଁଙ୍କ ବୟସ ପଚାଶ ଟପି ଷାଠିଏ ଆଡ଼କୁ ଆଗଉଥିଲା । ଭଉଣୀ ତ ବେଶୀ କିଛି ପାଠ ପଢ଼ିନଥିଲା । ସାରାଜୀବନ ସ୍ନେହୀ ମା'ଟିଏ, ସ୍ତ୍ରୀଟିଏ ହୋଇ ଘରକାମ କରିବା ଛଡ଼ା ସେ ଆଉ କିଛି ଜାଣିନଥିଲା । କେହି ବି ତାକୁ କେବେ ତା' ମନକଥା ବିଶଦଭାବେ ବୁଝାଇ କହିବାକୁ ଏପରି ପ୍ରଶ୍ନ ପଚାରିନଥିଲେ । ତା' ସ୍ମୃତିର ଝର୍କା ଖୋଲିଦେବାକୁ, ବିପଦ ଆଉ ଭୟ ଆଗରେ କୋଡ଼ିଏ ବର୍ଷ ଧରି ଭାଇର ଫଟୋଟିକୁ ସାଇତି ରଖିବା ବିଷୟରେ ଭାଇକୁ କହିବା ପାଇଁ ସେ ଶବ୍ଦ ଖୋଜୁଥିଲା, ସେଇ ଭାଇ ଯିଏ ଦୁଇବର୍ଷ ପରେ ଫେରିଥିଲା, ଆଉ ଏ ବାବଦରେ କିଛି ଜାଣିନଥିଲା କି କେବେ ପଚାରି ବି ନଥିଲା ... । ଓଲଟା ମୋର ଏକଚାଟିଆ ଭାବନା ଯୋଗୁଁ, ତାଠାରୁ ଦୂରତା ରଖି ତା' ଆବେଗକୁ ମୁଁ ଆଘାତ କରିଥିଲି – ଏଇସବୁ ମିଶିଯାଇ ମୋ ଭଉଣୀକୁ ସବୁକଥା ଖୋଲି କହିଦେବାକୁ ବାଧକଲା ।

"କ'ଣ ତୁ କହୁଛୁ ? ଅବଶ୍ୟ ମୁଁ ଡରିଯାଇଥିଲି । ଭୟରୁ ମୁକୁଳିବା ପାଇଁ କାହା ଉପରେ ନିର୍ଭର କରିପାରିନଥାନ୍ତି ବୋଲି ଭାବୁଛୁ ? ଏସବୁ ପାରିବାରିକ ବନ୍ଧନ ଯୋଗୁଁ ମୁଁ କରିଛି ବୋଲି କହିବାର ଅର୍ଥ କିଛି ନାହିଁ । ସେମାନଙ୍କର ତ ଆବେଗ ଘରଟି ଶୂନ । ଆଉ ଏହାର ମୂଲ୍ୟ ? ହଁ ଅବଶ୍ୟ ଏହା ଟିକେ ଦାମିକା ହୋଇପାରେ, କାରଣ ଏହା ଗୋଟେ କୁଶଳୀ ପେସାଦାର ଦ୍ୱାରା ଉଠା ହୋଇଥିଲା, ହେଲେ ସେମାନେ ଆମଠାରୁ ଦଶତୋଳା ସୁନା ନେଇପାରିବେ ବୋଲି ଭାବିବାଠାରୁ ତ ଆଉ କିଛି ଅଧିକ ଦାମୀ ହୋଇପାରିବ ନାହିଁ । ସତ ହେଲା ଏୟା ଯେ ଏଇଟି ମତେ ସୁନ୍ଦର ଲାଗେ, ତେଣୁ ଏହାକୁ ହଜେଇବାକୁ କେବେ ମୁଁ ଚାହିଁନାହିଁ । ଏକଥା କ'ଣ କହି ମୁଁ ପ୍ରକାଶ କରିବି ? ଆଜିକୁ ଦଶବର୍ଷ ହେଲା ମୁଁ ଏପରି ଆଉ ଗୋଟେ ସୁନ୍ଦର ଫଟୋ ଉଠାଇପାରି ନାହିଁ । ଏଇଟି ହେଉଛି ଗୋଟେ ସୁଖୀ ପରିବାରର ଆଦର୍ଶ ପ୍ରତିକୃତି, ଦେଖୁଛୁ ତ ? ଆସନ୍ତାକାଲି କ'ଣ ତୋର ଏପରି ଗୋଟିଏ ଫଟୋ ମୁଁ ନେଇପାରିବି ? ଏତିକି କେବଳ ହେବ ଯେ, ତୋର କେହି ଜଣେ ବି ସାଙ୍ଗ ତତେ ଚିହ୍ନିପାରିବେ ନାହିଁ । ପ୍ରତିଟି ଦିନ ମୁଁ ଡର, ଭୟ, ଆତଙ୍କରେ ବଞ୍ଚିଛି, ହଁ ଆତଙ୍କରେ, ହେଲେ ..."

ମୋ ପାଟିରୁ ପଦେ ବି କଥା ବାହାରିଲା ନାହିଁ, ମୁଁ ଆଉଟିକେ ଆଉଜି ପଡ଼ିଲି ସେ କ'ଣ କହୁଛି ଶୁଣିବାକୁ ।

"ପ୍ରଥମେ ପ୍ରଥମେ ମୁଁ ଭାବୁଥିଲି ଏଇଟି ତ ମୋ ଭାଇର ଫଟୋ କିଏ ଦେଖିଲେ କ'ଣ ଅଛି । ସମସ୍ତଙ୍କର ଅଛନ୍ତି ବାପା-ମା', ଭାଇଭଉଣୀ, ହେଲେ ଯଦି ଶତ୍ରୁ ଆସି ପହଞ୍ଚିଯାଏ ହଠାତ୍, ଏ ସମ୍ପର୍କ କିଛି କାମ ଦେବ ନାହିଁ, ମୁଁ ଜାଣିଥିଲି ଏହା ବିପଜ୍ଜନକ । ଯଦି ମୁଁ ଏହା ନଷ୍ଟ କରିଦିଏ, ତାହେଲେ ମୋ ପିଲାଙ୍କୁ କି ଉତ୍ତରଦେବି ଯେତେବେଳେ ସେମାନେ ୟା ବିଷୟରେ ପଚାରିବେ ? ଯଦି ମୁଁ ଏହାକୁ କେଉଁଠି ଲୁଚାଇଦିଏ, ଏହା

ଆହୁରି ବିପଜ୍ଜନକ ହେବ । ତେଣୁ ଫଟୋ ଗହଳିରେ ଥୋଇଦେଇ ଏବାବଦରେ କିଛି ନଜାଣିବାର ଛଳନା ମୁଁ କରିଚାଲିଲି । ପୁଣି ମୋ ଘରେ ଆଉ ଜଣେ ବି ଥିଲା ।''

ମୁଁ ନିଃଶ୍ୱାସ ବନ୍ଦକରି ଅପେକ୍ଷା କଲି, କିଛି କହିଲି ନାହିଁ । ମୁଁ ଜାଣିଥିଲି ଯେ ମୋ ଭଉଣୀ ସେଇମାନଙ୍କ ଭିତରୁ ଜଣେ ଯିଏ ଥରେ କଥା ଆରମ୍ଭ କଲେ, ହୃଦୟ ଖୋଲି ସବୁ ଅଜାଡ଼ି ପକାଇବ ।

''ମୋ ଘରେ ଜଣେ ଥିଲା, ଗୋଟେ ଚାକରାଣୀ, ଯାହାକୁ ତୁମ ଉତ୍ତରାଞ୍ଚଳରେ କହନ୍ତି କାମବାଲୀ, ସାହାଯ୍ୟକାରୀ । ସେ ହାଟ କରୁଥିଲା, ପିଲାଙ୍କ ଯତ୍ନ ନେଉଥିଲା, ଦୁଆର ଝରକା ଖୋଲୁଥିଲା ଆଉ ବନ୍ଦ କରୁଥିଲା, ଲୁଗାସଫା କରୁଥିଲା ଆଉ ଆମ ଦୋକାନ ଉପରେ ବି ନଜର ରଖୁଥିଲା ... ସେ ଥିଲା ପ୍ରାୟ କୋଡ଼ିଏ ବର୍ଷର ଝିଅଟିଏ । ଦେଖିବାକୁ ସୁନ୍ଦର ଆଉ ଆଚରଣରେ ବି ନମ୍ର । କଠିନ ପରିଶ୍ରମୀ ଆଉ ଗୁଣବତୀ ଝିଅଟି । ଆମ ପରିବାର ସାଙ୍ଗେ ସେ ବିଶେଷଭାବେ ମିଶିଯାଇଥିଲା ଆଉ କେହି ବି ତାକୁ ଗାଳି ଦେଉନଥିଲେ । ସେବର୍ଷ ମୁକ୍ତିବାହିନୀ ହଠାତ୍ ଭିଏତକଙ୍ଗ ପ୍ରାସାଦ ଉପରେ ଆକ୍ରମଣ କରି ସମ୍ପୂର୍ଣ୍ଣ ଧ୍ୱସ୍ତ କରିଦେଲେ । ଉତ୍ତରାଞ୍ଚଳ ବିରୁଦ୍ଧରେ ସେମାନଙ୍କ ଦୁଃସାହସିକ କାର୍ଯ୍ୟର ସତର୍କ ଘଣ୍ଟି ସ୍ୱରୂପ ଏହା ଏଠାରେ ଥିଲା ୟୁ.ଏସ୍.ଜି.ଆଇର ଗୋଟେ ମୁଖ୍ୟ ଆଶ୍ରୟ ସ୍ଥଳ । ଆଉ ନନ୍‌ସହର ଗୋଟେ ସକ୍ରିୟ ଆଗ୍ନେୟଗିରି ପରି ଭୟଙ୍କର ଭାବରେ ଦୋହଲିଗଲା । ହେଲେ ମୋର ଭଲକରି ମନେଅଛି ଯେ ଝିଅଟି ସେଇକ୍ଷଣି କେଉଁଠୁ ଫେରିଆସିଥିଲା । ତା' ମୁହଁ ଲାଲ ପଡ଼ିଯାଇଥିଲା । ସେ ମୋ ପାଖରେ ଠିଆହେଲା ଆଉ ଯେତେବେଳେ ତାକୁ ପଚାରିଲି କାହିଁକି ସେ ଏତେ ଜୋର୍ ନିଃଶ୍ୱାସ ନେଉଛି, ସେ କ'ଣ କହିବ ଜାଣିପାରିଲା ନାହିଁ, ଆଉ ଗୋଟେ ମେଲେରିଆ ରୋଗୀ ପରି ଶେଥା ଦିଶିଲା । ତା ପରେ ପରେ ହଠାତ୍ ଗୋଟେ ବିସ୍ଫୋରଣ ସାରା ପୃଥିବୀକୁ ଯେପରି ଖଣ୍ଡ ଖଣ୍ଡ କରିପକାଇଲା : ଆମ ଟେବୁଲ ଉପରେ ଥିବା ପ୍ଲେଟ୍-ଗ୍ଲାସ୍ ତଳେ ପଡ଼ି ଚୂନା ହୋଇଗଲା ।

''କେହି ଜାଣିନଥିଲେ କ'ଣ ଘଟିଥିଲା ଆଉ ସମସ୍ତେ ଥିଲେ ଭୟଭୀତ, ହେଲେ ସେ ଯିଏ ସବୁବେଳେ ଭାବପ୍ରବଣ, ପିଲାଙ୍କୁ କୁଣ୍ଢେଇ ଧରି, ମୁଣ୍ଡ ପଛକୁ କରି ହସିଲାଗିଲା ଆଉ କ'ଣ ଗୋଟେ ମନେପକାଇ ହଠାତ୍ ଚୁପ୍ ହୋଇଗଲା । ପୁଣି ତାର ସେ ଶୂନ୍ୟ ଚାହାଣି ଫେରିଆସିଲା । ଭିଏତକଙ୍ଗ୍ କୋଠା ଧୂଳିସାତ୍ ହେବା ଯୋଗୁଁ ଅନେକ ଆମେରିକୀୟ ସୈନ୍ୟ ମୃତ୍ୟୁବରଣ କଲେ, ସେନାବାହିନୀରେ ଚରମ ବିଶୃଙ୍ଖଳା ଦେଖାଦେଲା, ଆଉ ଲୋକେ କେତେ ପ୍ରକାର କଥା କହିଲେ । ବିସ୍ଫୋରଣ ମୁହୂର୍ତ୍ତରେ ପ୍ରତିଟି ଲୋକ କେଉଁଠି ଥିଲେ ବଡ଼ପାଟିରେ କହିଲାବେଳେ ବହୁତ ସତର୍କ ହୋଇ କହୁଥିଲେ । ମୁଁ ବି କହିଥିଲି : ''ମୁଁ ରୋଷେଇ ଘର ପାଖରେ ପିଲା ଆଉ ଚାକରାଣୀକୁ ଧରି ଠିଆ ହୋଇଥିଲି ... ।''

ମୁଁ ନିଜେ ଆଶ୍ଚର୍ଯ୍ୟ ହେଉଥିଲି, କାହିଁକି ମୁଁ ଘରଭିତରେ ତା' ଉପସ୍ଥିତିକୁ ଏତେ ଗୁରୁତ୍ୱ ଦେଇ କହିଥିଲି । ରାତିରେ ଖଟରେ ଶୋଇ, ସବୁଭାବନାକୁ ଏକାଠି କରିବାକୁ ମୁଁ ଚାହୁଁଥିଲି ଆଉ ଶେଷରେ ଅନୁଭବ କଲି ଯେ 'ନନୀ' ଥିଲା ଗୋଟେ ମୁକ୍ତି ଯୋଦ୍ଧା । ହେଲେ ସେ ମୋ ଘରେ ରହୁଥିଲା, ତାହେଲେ ମୁଁ କ'ଣ କରିବା ଉଚିତ୍ । ଯଦି ତାକୁ ମୁଁ ବାହାର କରିଦିଏ ତ ମୋ ବିବେକ ଉପରେ ଏହା ଗୋଟେ ବୋଝ ହୋଇ ସବୁଦିନ ପାଇଁ ରହିଯିବ ଯେ ସେ ମୋରି ପରି ଗୋଟେ ସାଧାରଣ ସ୍ତ୍ରୀଲୋକ ଯାହାକୁ ମୁଁ ମୋ ଭଉଣୀ ପରି ଚଳେଇ ନେଇପାରିଥାନ୍ତି । ମୁଁ କେବଳ କିଛି ନଜାଣିଲା ପରି ଛଳନା କରିପାରିଲି । ହେଲେ ଯଦି ଆମେରିକୀୟମାନେ ତାକୁ ଧରିନେଇଥାନ୍ତେ ତାହା ମୋର ଅନ୍ତର କାରଣ ହୋଇଥାନ୍ତା ଆଉ ମୋ ପିଲାମାନେ ଅନାଥ ହୋଇଯାଇଥାନ୍ତେ । କି ବିଚିତ୍ର ସ୍ଥିତି ! ଶେଷରେ ମୁଁ ସ୍ଥିରକଲି, ଯା' ହେବାର ହେଉ ପଛେ ସେ ଏଇଠି ରହିବ ! ସେଇଦିନଠାରୁ ଆମ ଭିତରେ ବିନା ବାକ୍ୟ ବ୍ୟୟରେ ଗୋଟେ ଗୋପନ ବୁଝାମଣା ହୋଇଯାଇଥିଲା । ଏହାର ଫାଇଦା ନେଇ ସେ କେତେ ରାତି ଘର ବାହାରେ କଟାଉଥିଲା ; ବେଳେବେଳେ ସେ ଏଇଘରେ, ଏଇଠି ମିଟିଂ ଡକାଉଥିଲା, ଏହା ମୋତେ ଖୁବ୍ ଡରାଇ ଦେଉଥିଲା । ଦିନେ ଠିକ୍ ମିଟିଂ ପରେ ପରେ ସେ ଘର ଛାଡ଼ିଯିବା ପାଇଁ ମୋ ଅନୁମତି ମାଗିଲା । 'ତୁ ଘର ଛାଡ଼ି ଯିବାକୁ ଚାହୁଁଛୁ କାହିଁକି ? ମୁଁ କ'ଣ ତୋ ସାଥିରେ ବେଶୀ ଖରାପ ବ୍ୟବହାର କରୁଛି କି ? ମୁଁ ଅପ୍ରସ୍ତୁତ ହେଲି । ସେ କହିଲା, 'ତୁମେ ବହୁତ ଡରିଯାଇଛ, ହେଲେ ଆମେ ଜାଣୁ ଯେ ତୁମେ ଆମ ପକ୍ଷରେ ଅଛ ; ଆମ ସଙ୍ଗଠନରୁ ଯଦି କେହି ଆସେ, ତୁମେ ତାକୁ ଏଠି ରହିବାକୁ ଅନୁମତି ଦେବ ଯେମିତି ମତେ ଦେଇଥିଲ । ଯଦି କୌଣସି କାରଣରୁ ଏହା ନକରିପାରିବ, ପିଲାଙ୍କ ସହିତ 'ବା'ର ଏଇ ଫଟୋଟିକୁ ଲୁଚାଇଦେବ, ଆମ ଲୋକ ବୁଝିଯିବେ । ତୁମେ ଜାଣ, ଆମେ ଏଇ ଫଟୋଟିକୁ ଆମ ସଙ୍କେତ ରୂପେ ଆଜିଯାଏଁ ବ୍ୟବହାର କରିଆସିଛୁ । ଏଇ ଫଟୋ ଲାଗି ମୁଁ ଏଠାକୁ ଆସିଥିଲି ଜାଣ ।'

ଦକ୍ଷିଣାଞ୍ଚଳଟି ସେଇମିତି । ସଂଧ୍ୟାଲୋକରେ ଭରିଯାଇଥିବା ସେଇ କୋଠରିଟିରେ ମୁଁ କେତେବେଳଯାଏଁ ବସିରହିଲି, ମୋ ଭାବନା ଲକ୍ଷ୍ୟହୀନ ହୋଇ ଘୂରିବୁଲୁଥାଏ । ମୁଁ ଭାବୁଥାଏ ସେଇ ଲୋକଟି କଥା ଯିଏ ନୀରବରେ ଏହି ଫଟୋଟି ଭିତରେ ଗତ କୋଡ଼ିଏ ବର୍ଷ ଧରି ବସି ରହିଥିଲା, ଆଉ ଏଇଲେ ସେଠାରୁ ବାହାରି ଆସିଛି ଏଠିକି ଫେରିବାକୁ । ଭାବୁଥାଏ ସେଇ ଝିଅଟିର କଥା ଯିଏ ଏଠି ରହୁଥିଲା ଆଉ ମୋତେ ବାଛିଥିଲା ବିଶ୍ୱସ୍ତତାର ସ୍ୱର୍ଣମଣି ରୂପେ, ମୋ ଭଉଣୀର ଆନୁଗତ୍ୟର ପ୍ରତୀକ ରୂପେ । ପୁଣି ଭାବୁଥିଲି କେଉଁଠାରେ ଏବେ ଥିବ ସେ, ଜୀବନର ଝଞ୍ଜା ତାକୁ କେଉଁଠାକୁ ଉଡ଼ାଇ ନେଇଥିବ । ପୁଣିଥରେ (ପ୍ରଥମ ଥର ପାଇଁ ନୁହେଁ) ମୁଁ ଅନୁଭବ କଲି ଯେ ହଠାତ୍ ଆତଙ୍କ ଭଳି କିଛି ଗୋଟେ

ଜିନିଷକୁ ମୁଁ ଏଇକ୍ଷଣି ଅତିକ୍ରମ କରିଆସିଛି, ଯେମିତି ମୁଁ ଜାଣିଛି ଲଜ୍ଜାହୀନ ଭାବରେ କିମିତି ବଞ୍ଚିବାକୁ ହୁଏ ।

ମୁଁ ମନରେ ସ୍ଥିର କରିନେଲି ଝିଅଟିକୁ ଯେମିତି ହେଲେ ଖୋଜି ବାହାର କରିବି । କ'ଣ ପାଇଁ ପଚାରିଥିଲି ହୁଏତ ମୁଁ ଉତ୍ତର ଦେଇପାରିନଥାନ୍ତି । ହୋଇପାରେ, ଏହା ମୋର କୃତଜ୍ଞତାର ନିଦର୍ଶନ, ସାମାନ୍ୟ ବିବେକଥିବା ଲୋକ ଏଇଭଳି କରିବା ଉଚିତ ବୋଲି ଗୋଟେ ଦୃଢ଼ ବିଶ୍ୱାସ ମୋ ଭିତରେ ହୁଏତ ଦାନା ବାନ୍ଧୁଥିଲା ; କାରଣ ଅଧିକାଂଶବେଳେ ଆମେ କୃତଜ୍ଞତାକୁ ଗୋଟେ ବଡ଼ ଆବଶ୍ୟକତା ରୂପେ ଗ୍ରହଣ କରିଥାଉ ।

ବାଲଂଆନ୍ ଅଞ୍ଚଳଟି ମତେ ସବୁବେଳେ ଅତୀତର କଥା ମନେପକାଇ ଦେଉଥିଲା, ଆଉ ବର୍ତ୍ତମାନ : ଦୈନନ୍ଦିନ ଜୀବନର ମୁହଁ ଉପରେ ଏହା କେବଳ ଗୋଟେ ଉପରଠାଉରିଆ ଆଞ୍ଚୁଡ଼ା ଦାଗ ଯାହାକୁ ଟିକିଏ ଉଖାରିଦେଲେ ଜନ୍ମଭୂମିର ବୀରୋଚିତ ଅନ୍ତଃସ୍ଥଳ ଆବରଣମୁକ୍ତ ହୋଇଯିବ । ଏକାସାଥିରେ ସବୁପ୍ରକାର ନୌକା, ଜାହାଜ, ପୋତ, ଡଙ୍ଗା ଗହଳିରେ ଏହା ଜଗାଉଥିଲା ମୁକ୍ତିର ଦୀର୍ଘକାଳୀନ ପ୍ରସବବେଦନାର ଯନ୍ତ୍ରଣା ଯେତେବେଳେ ମୁଖ୍ୟ ବିନ୍‌ସନ୍ ଭୂଖଣ୍ଡ ଅତିମାତ୍ରାରେ ପୂର୍ଣ୍ଣ ହୋଇଥିଲା ଆମେରିକୀୟ ଆଉ ଦକ୍ଷିଣକୋରିଆ ସୈନ୍ୟମାନଙ୍କ ଦ୍ୱାରା । ଯେଉଁ ନାଉରୀଟି ତାର ବାର୍ଦ୍ଧକ୍ୟ ଯୋଗୁଁ ନଦୀ ପାର କରାଇଦେବାକୁ ତୁମକୁ ଏତେ ସମୟ ଅପେକ୍ଷା କରାଉଥିଲା, ତୁମେ ଜାଣ, ସେ ବି ବୀର ଏ ମାଟିର !

ଲିସଁ ମୂଳଭୂଖଣ୍ଡଠାରୁ ତିରିଶ ମାଇଲ ଦୂରରେ, ଉପକୂଳଠାରୁ ଦୂରରେ ବିଚ୍ଛିନ୍ନ ହୋଇ ରହିଥିବା ଏକ ଦ୍ୱୀପ ହେଉଛି ବାଲଂଆନ । ମୂଳଅଞ୍ଚଳରେ ଶତ୍ରୁମାନଙ୍କୁ ଆକ୍ରମଣ କରିବା ପାଇଁ ପ୍ରତି ରାତିରେ ଗରିଲାମାନେ ଏକଦା ଏଇ ପଥଟିକୁ ବାଛି ନେଇଥିଲେ । ଆମ ଜନ୍ମଭୂମି କେତେ ସୁନ୍ଦର ! ପୁଣିଥରେ ମୁଁ ସେଇ ଗଭୀର ଉଜ୍ଜ୍ୱଳ ମର୍କତମଣି ରଙ୍ଗର ଜଳରାଶି ଉପରେ ଠିଆହୋଇ ତଳକୁ ଚାହିଁଲି । ଏହା ଏତେ ସ୍ୱଚ୍ଛ ଥିଲା ଯେ ମୁଁ ସମୁଦ୍ରର ପୂରା ତଳ ଦେଖିପାରୁଥିଲି । ତରଙ୍ଗମାନଙ୍କ ଉପରେ ସୂର୍ଯ୍ୟର ପ୍ରତିବିମ୍ବ, ପତଳା-ଚଉଡ଼ା ମାଛମାନେ ପାଣିରେ ପହଁରୁଥାଆନ୍ତି । ମୁଁ ଭାବିଥିଲି ହାଲଂ ଉପକୂଳରୁ ବିଚ୍ଛିନ୍ନ ମିନ୍-ଚାଉ ଦ୍ୱୀପ ଦେଖିସାରିବା ପରେ ଦ୍ୱିତୀୟ ବାର ଆଉ ଏପରି ସୁନ୍ଦରତା କେବେ ମୋ ନଜରକୁ ଆସିବ ନାହିଁ । ହେଲେ ଏଠି ମୋ ଆଖି ଆଗରେ ସେହି ଶୋଭା ଯେପରି ସଜା ହୋଇସାରିଥିଲା । ମୋ ଆଖି ଲୁହରେ ଭରିଗଲା ।

ଲିସଁ ହେଉଛି ରସୁଣର ପେଣ୍ଠସ୍ଥଳୀ । ଦୂର ଗୋଟେ ପାହାଡ଼ର ଗଡ଼ାଣି ଛାତିରେ ମୁଁ ଚକ୍‌ଚକ୍ ରୂପେଲି ଚକଡ଼ାମାନ ଦେଖିପାରିଲି । ପ୍ରକୃତରେ ତାହା ଥିଲା ଧାଡ଼ି ଧାଡ଼ି ରସୁଣ, ଯାହା ରଖାହୋଇଥିଲା ଖରାରେ ଶୁଖିବା ପାଇଁ । ଲିସଁରେ ଧାନଚାଷ ହୁଏ ନାହିଁ, କେବଳ ରସୁଣ ଆଉ ମକା ଉତ୍ପାଦିତ ହୁଏ । ବାତାବରଣରେ ସେଥିପାଇଁ ସବୁବେଳେ

ଗୋଟେ ପ୍ରକାର ଓଜନିଆ, ଉଗ୍ର ଆଉ ରସୁଣ ଅମଳର ବାସ୍ନା ଭରି ରହିଥାଏ ।

ଶାନ୍ତି ଫେରିଆସିଥିଲେ ବି ଦ୍ୱୀପଟିରେ ତଥାପି ଥିଲା ଅନେକ କଷ୍ଟଦାୟକ ସମସ୍ୟା ଯାହା ଗୋଟେ ପରିବର୍ତ୍ତନ କାଳରେ ସାଧାଣତଃ ଦେଖାଯାଇଥାଏ । ସ୍ଥାନୀୟ ପ୍ରଶାସନ ଏବେ ଏବେ ଗୋଟେ ନିର୍ଦ୍ଦେଶନାମା ଜାରି କରିଥିଲେ ଯେ ମୋ ବେପାରୀମାନେ ରସୁଣ କିଣିବାକୁ ଆଉ ଏ ଦ୍ୱୀପକୁ ଆସିପାରିବେ ନାହିଁ, ଆଉ ରସୁଣ ବେପାରୀମାନଙ୍କୁ ପ୍ରବର୍ତ୍ତାଉଥିଲେ ଯେ ସେମାନେ ତାଙ୍କ ଉତ୍ପାଦନ କେବଳ ସେଇଠି ଆଞ୍ଚଳିକ ଦ୍ରବ୍ୟ ବିନିମୟ କେନ୍ଦ୍ରରେ ବିକିପାରିବେ । ଏହା ଥିଲା ଏକ ନ୍ୟାୟିକ ପଦକ୍ଷେପ ; କାରଣ ବିପଣନ କେନ୍ଦ୍ର ହିଁ ସାରା ଦ୍ୱୀପକୁ ସାର, ବିହନ, ପୋକମରା ଔଷଧ, ଆଉ ଅଳ୍ପ ମୂଲ୍ୟରେ ଚାଉଳ ଯୋଗାଉଥିଲା । ଆଗକାଳରେ ଯେତେବେଳେ ବି କଳାବଜାର ଆଉ ସରକାରୀ ମୂଲ୍ୟ ଭିତରେ ବ୍ୟବଧାନ ବଢୁଥିଲା ସେତେବେଳେ ଯାବତପ୍ରକାର ଅବୈଧ କାରବାର ବଢ଼ିଯାଉଥିଲା ।

ବନ୍ଦର ପାଖରେ ଦୁଇଜଣ ସ୍ତ୍ରୀଲୋକଙ୍କୁ ମୁଁ ଭେଟିଲି, ଜଣେ ଥିଲା ବିପଣନ କାର୍ଯ୍ୟାଳୟର ମୁଖ୍ୟ ମିସ୍ ମୁଇ ଆଉ ଅନ୍ୟଜଣକ ଅପେକ୍ଷାକୃତ ଅଳ୍ପବୟସର-ମାଇ । ମୋ ସହିତ ଉଭୟେ ପରିଚିତ ହେଲେ । ମାଇ ଅଧିକ କାର୍ଯ୍ୟଦକ୍ଷ ଜଣାପଡୁଥିଲା, ତା ଟ୍ରାଉଜର ଗୋଡ଼ ଜଙ୍ଘଯାଏଁ ମୋଡ଼ା ହୋଇଥିଲା କାରଣ ସେ ଆଣ୍ଠୁଏ ପାଣିରେ ଚବର ଚବର ଚାଲି ବିନା ଅନୁମତିରେ ଡଙ୍ଗାରେ ଲଦା ହୋଇଥିବା ରସୁଣ ବସ୍ତାଗୁଡ଼ିକୁ ପାଣିରୁ ଉଦ୍ଧାର କରିବା ଚେଷ୍ଟାରେ ଲାଗିଥିଲା ଆଉ ଅନବରତ କହିଚାଲିଥିଲା : "ହେ, ତୁମେମାନେ କ'ଣ ଆଇନକାନୁନ ଜାଣିନାହଁ ? ଏମିତି ତୁମେମାନେ ରସୁଣ ନେଇଯାଇପାରିବ ନାହିଁ, ଜାଣିଛ । ତୁମେ ରାଜ୍ୟସରକାରଙ୍କୁ ଏହା ବିକିବା ପାଇଁ କଥା ଦେଇଛ, ତାହେଲେ କାହିଁକି ଏମିତି ବେପାରୀମାନଙ୍କୁ ବିକୁଛ ? ଗତ ଦୁଇବର୍ଷ ଭିତରେ ତୁମେ ଚାଉଳ କିଲୋ ବୟାଳିଶ ହାଓରେ ପାଇଛ ନା ନାହିଁ ? ପୁଣି ସାର ଆଉ କୀଟନାଶକ ସରକାରୀ ଦାମ୍‌ରେ କିଣିଛ ନା ନାହିଁ ? ତାହେଲେ ଏମିତି ପୁଣି କରୁଛ କାହିଁକି ?" ତର୍କ କଲାବେଳେ ସେ କେବଳ ଅତି ସରଳ ଶବ୍ଦ ବ୍ୟବହାର କରୁଥିଲା : "ସମାଜବାଦ କେବେ ବି ଏକଚାଟିଆ ପୁଞ୍ଜିବାଦୀ କାରବାରକୁ ପସନ୍ଦ କରେ ନାହିଁ । ଏ କାରବାର ହେଉଛି ଏଠାରୁ ଦୁଇ ଡଙ୍ଗ୍‌ରେ ଜିନିଷ କିଣି ସାଇଗନ୍‌ରେ କୋଡ଼ିଏ ଡଙ୍ଗ୍‌ରେ ବିକିବା । ସମାଜବାଦ ବି ପସନ୍ଦ କରେ ନାହିଁ ସାଇଗନ୍‌ରେ କୋଡ଼ିଏ ଡଙ୍ଗ୍‌ରେ ମିଳୁଥିବା ଜିନିଷ କ୍ୱାଙ୍ଗ୍‌ନାଇରେ ତିରିଶ ଡଙ୍ଗ୍‌ରେ ବିକ୍ରି ହେବା, ତାପରେ ବାଲଂଆନ୍‌ରେ ପଇଁତିରିଶ ଡଙ୍ଗ୍ ଆଉ ଲିସଁରେ ଅଠତିରିଶ ଡଙ୍ଗ୍‌ରେ ବିକ୍ରିହେବା । ପୁଣି ଲିସଁର ଏଇ ଅଞ୍ଚଳରେ କେଉଁଠି କେଉଁଠି ସେଇ ଏକା ଜିନିଷ ଚାଳିଶ ଡଙ୍ଗ୍‌ରେ ବିକାହେବା । ଦୁଇ ଡଙ୍ଗ୍‌ରୁ ମୂଲ୍ୟ ବଢ଼ି ବଢ଼ି ଚାଳିଶ ଡଙ୍ଗ୍‌ରେ ପହଞ୍ଚିବା କ'ଣ ଶୋଷଣ ନୁହେଁ ? ଏହା ତୁଚ୍ଛା ଡକାୟତି, ତୁମେମାନେ କ'ଣ

ଦେଖିପାରୁନାହିଁ ? ସମାଜବାଦ କୌଣସି ପ୍ରକାର ଶୋଷଣକୁ ପ୍ରଶ୍ରୟ ଦିଏ ନାହିଁ । ସରକାର ଯଦି କୌଣସି ଜିନିଷ ଦୁଇଡଙ୍ଗ୍‌ରେ କିଣି ଚାରି ଡଙ୍ଗ୍‌ରେ ବିକ୍ରି କରେ, ତାହେଲେ ଗୋଟିଏ ଡଙ୍ଗ୍ ଆନୁଷଙ୍ଗିକ ଖର୍ଚ୍ଚ ଆଡ଼କୁ ଯାଏ, ଆଉ ଗୋଟିଏ ଡଙ୍ଗ୍ ଲାଭ ଯାହା ଲୋକଙ୍କର ହେବା ଉଚିତ । ଏଇ ଲାଭ ସ୍କୁଲ, ହସ୍ପିଟାଲ ଆଉ ଅଙ୍ଗନବାଡ଼ି ଇତ୍ୟାଦିକୁ ଯାଏ ... ।" ମାଇ ଉତ୍ତରାଞ୍ଚଳ ଭାଷାରେ କହୁଥିଲା ଓ ତା ସ୍ୱରରେ ସାମାନ୍ୟ ଦକ୍ଷିଣୀ ଉଚ୍ଚାରଣ ଥିଲା । ସେ ଥିଲା ଧୈର୍ଯ୍ୟଶୀଳା, ନମ୍ର ; ଏତେ କଷ୍ଟକାମରେ ଥରେ ବି ରାଗି ନଥିଲା । ମୁଁ ଜାଣି ଆଶ୍ଚର୍ଯ୍ୟ ହେଲି ଯେ ସେ ହାନୋଇର ଖାମଥିଏଁରୁ ଆସିଥିଲା । ସେ ଥିଲା ଜଣେ ଇଞ୍ଜିନିୟରିଂ ଛାତ୍ରୀ ଆଉ ଏଠାରେ ଖୋଲା ସମୁଦ୍ରରେ ଗୋଟେ ଶିକ୍ଷାନବୀଶ ଭାବରେ କାମ କରୁଥିଲା, ଟ୍ରେଡ଼ିଂ ଅଫିସ୍‌ର ସଦସ୍ୟ ଭାବରେ ନୁହେଁ ।

ମୁଇ ଥିଲା ତାଠାରୁ ବୟସରେ ବଡ଼ ଆଉ ମୌନ ପ୍ରକୃତିର । ବେଶପୋଷାକରେ ଥିଲା ବହୁତ ସରଳ, ଦ୍ୱୀପର ଅନ୍ୟ ଝିଅମାନଙ୍କଠାରୁ ଏକଦମ୍ ଅଲଗା । ମାଇ ଭଳି ସେ ତାର ଟ୍ରାଉଜରକୁ ଉପରକୁ ଟେକି ପାଣିରେ ଓଦାହୋଇ ଆସୁନଥିଲା, ଲାଗୁଥିଲା ଅଳ୍ପଶିକ୍ଷିତ ପରି ଆଉ କାମ କଲାବେଳେ ଅଧିକ ଶୁଣୁଥିଲା ଓ କମ୍ କହୁଥିଲା । ମାଇ ଆଡ଼କୁ ପ୍ରଶଂସାଭରା ଆଖିରେ ଚାହୁଁଥିଲା, ଆଉ ସତେ ଯେପରି କିଛି ଗୋଟେ ନୂଆ ଆବିଷ୍କାର କରିପକାଇଛି ସେହିପରି ତା' ଆଖି ଚକ୍‌ଚକ୍ କରୁଥିଲା । ମାଇ ଯାହା କହୁଥିଲା ସେସବୁ ମନେରଖିବାକୁ ମୁଇ ଉଦ୍ୟମ କରୁଥିଲା, ଫଳରେ ତା ତଳଓଠ ଥରି ଉଠୁଥିଲା ଆଉ ଏକାଗ୍ର ଚିନ୍ତାର ପ୍ରତିଫଳନ କପାଳରେ ଦେଖାଯାଉଥିଲା । ଜଣେ ସମର୍ପିତ ଆଉ ଶାନ୍ତ, ସ୍ଥାନୀୟ ରାଜନୈତିକ କର୍ମୀ ତାର ପ୍ରଥମ ରାଜନୈତିକ ଶିକ୍ଷା ଲାଭ କରୁଥିବାର ଏହା ଥିଲା ବେଶ୍ ମନୋରମ ତଥା ହୃଦୟସ୍ପର୍ଶୀ ଏକ ଦୃଶ୍ୟ ।

ମୋର ଚିନ୍ତାର ବିଷୟ ଥିଲା, ଏ ଦୁଇଟି ଝିଅଙ୍କ ମଧ୍ୟରୁ କେହି ମୁଁ ଖୋଜୁଥିବା ଝିଅ ନଥିଲେ ; ମୁଁ ଯାହାକୁ ଖୋଜୁଥିଲି ତା' ନାମ ଥିଲା ସାନଃ । ମତେ ମୋ ପାଟି ବନ୍ଦକରି ରହିବାକୁ ହେଲା, ମୁଁ କିଛି କହୁ ନଥିଲି । ଏ ଅଞ୍ଚଳଟି ଏବେ ଏବେ ମୁକ୍ତିଲାଭ କରିଥିଲା । ଆଉ ମୁଁ ଥିଲି ଦୂରରୁ ଆସିଥିବା ଜଣେ ଅଜଣାଲୋକ । ଏଠାକୁ ଆସି ସାନଃ ନାମ୍ନୀ ଝିଅଟିକୁ କୌଣସି କାରଣ ନଦର୍ଶାଇ ଖୋଜିବା ଏକେବାର ଅସମ୍ଭବ ଥିଲା । ଦ୍ୱୀପସାରା ସିଧାସଳଖ ଗୁଜବ ପ୍ରଚାରିତ ହୋଇଯିବ ଆଉ ମୋ ପାଇଁ ସମସ୍ୟା ସୃଷ୍ଟି ହେବ । ହେଲେ ଏଇ ସୁନ୍ଦର ଦ୍ୱୀପଟିର ସୁନ୍ଦରତାରେ ବିହ୍ୱଳ ନହେବାର ବାଟ ବି ନଥିଲା । ସଙ୍ଗେ ସଙ୍ଗେ ପାଦ ଦେଇଥିବା ଏଇ ଦ୍ୱୀପଟିର ଉପକୂଳ ଧାରେ ଧାରେ ମୁଁ ଆଗ ବୁଲି ଲାଗିଲି । ମୋ ହୃଦୟ ଆନନ୍ଦରେ ପୂର୍ଣ୍ଣହୋଇ ଚାଲିଲା । ମତେ ଲାଗିଲା ଯେପରି ମୁଁ ନୀଳ ଆଉ ସ୍ୱଚ୍ଛ ଜଳ ଓ ଆକାଶକୁ ପାନ କରୁଥିଲି । ହାତୀଦାନ୍ତ ପରି ଚକ୍‌ଚକ୍ ଧଳା ବାଲୁକାରାଶି ଲାଗୁଥିଲା ଅବାସ୍ତବ । ତାପରେ ମୁଁ ସ୍ଥାନୀୟ ଉପଦେଷ୍ଟା ପରିଷଦର

ମୁଖ୍ୟକାର୍ଯ୍ୟାଳୟକୁ ଗଲି । ସେମାନେ ଆଗ ମୋତେ ବିଶ୍ରାମଗୃହକୁ ନେଇଗଲେ ଯେଉଁ ଗୃହଟି ଏଇକ୍ଷଣି ମୁଁ ଅତିକ୍ରମ କରିଆସିଥିଲି । ଏଥିରେ ଦୁଇଟି କୋଠରି ପରସ୍ପର ସଂଯୁକ୍ତ ହୋଇଥିଲା । ତନ୍ମଧ୍ୟରୁ ଗୋଟିଏ କୋଠରି ଟ୍ରେଡ଼ିଂ ଅଫିସକୁ ଲାଗି ରହିଥିଲା । ଡଙ୍ଗା ଛାଡ଼ିଦେଇଥିଲା, ମୁଇ ଓ ମାଇ ସେଠାରେ ଥିଲେ । ଜଣେ ଓଜନ କରିବାରେ ବ୍ୟସ୍ତ ଆଉ ଜଣେ ଟଙ୍କା ଦେଉଥିଲା ସେମାନଙ୍କୁ ଯେଉଁମାନେ କଥା ମାନି ନିଜର ରସୁଣ କାର୍ଯ୍ୟାଳୟରେ ବିକିଥିଲେ ।

ଗ୍ରାମସମିତି ଝିଅ ଦୁଇଟିଙ୍କୁ ମୋ ରହିବା-ଖାଇବା କଥା ବୁଝିବାକୁ କହିଲେ । ରସୁଣ ମସଲା ମିଶା ମାଛପୋଡ଼ା ମତେ ବେଶ୍ ଭଲ ଲାଗିଲା । ଝିଅ ଦୁଇଟି ଖାଦ୍ୟ ପ୍ରାୟ ଛୁଇଁ ନଥିଲେ ।

ବନ୍ଦର ପାଖରେ ଥିବାବେଳଠାରୁ ଏବେ ଏ ଦୁହେଁ ପୂରା ଅଲଗା ଲାଗୁଥିଲେ । ଏବେ ମୁଇ ବେଶୀ କଥା କହୁଥିଲା ଆଉ ମାଇ ଗୋଟେ କାଠପଟା ଉପରେ ବସି କିଛି ଲେଖିବାକୁ ପ୍ରସ୍ତୁତ ହେଉଥିଲା । ରସୁଣ ଚାଷର ବିସ୍ତୃତ ବିବରଣୀ ମୁଇ ଦେଲା । ମୁଁ ଜାଣିଲି ମାଇ ଯେଉଁ କାଗଜପତ୍ର ଶୀଘ୍ର ଦାଖଲ କରିବ ସେଥିପାଇଁ ଏସବୁର ଆବଶ୍ୟକତା ଥିଲା । ସ୍ୱାଭାବିକ ଭାବରେ ମୋ କାମ କଥା ଭାବିବାକୁ ଏହା ଖୋରାକ ଯୋଗାଇଲା । ମୋ କାମ ଥିଲା ଏଇଭଳି ସରଳ, ସୁନ୍ଦର ଦୃଶ୍ୟର ପୁନଃକଥନ ।

***

ଦ୍ୱୀପରେ ମୁଁ ସାତଦିନ ରହିଲି । ଦୁଇଟି କାମ ମୋର କରିବାର ଥିଲା : ଆମେରିକା ବିରୁଦ୍ଧରେ ଲିସଁ ବାସିନ୍ଦାଙ୍କର ସଂଗ୍ରାମକୁ ବୁଝିବା ପାଇଁ ସେମାନଙ୍କ ଜୀବନଚଳଣି ସହ ନିଜକୁ ପୂରାପୂରି ମିଶାଇଦେବା ଆଉ ଦ୍ୱିତୀୟରେ ପରିବର୍ତ୍ତନର ଏଇ ବର୍ତ୍ତମାନକୁ ବୁଝିବା । ପ୍ରତିଟି ଲୋକ ଖୁବ୍ ଶୀଘ୍ର ବୁଝିଗଲେ ଯେ ମୋ କାମ ଥିଲା ସେମାନଙ୍କ ସପକ୍ଷରେ, ତେଣୁ ସେମାନେ ସେମାନଙ୍କର ସମସ୍ତ ଆତିଥ୍ୟ ମୋ ଆଡ଼କୁ ବଢ଼ାଇଦେଲେ । ଯେତେ ଯେତେ ସେମାନଙ୍କ ପୁରୁଣାଦିନ୍‌ର ବର୍ଣ୍ଣନା ମୁଁ ଶୁଣିଲି ମୋର ଅନୁଭବ ଆନନ୍ଦରୁ ଉତ୍ତେଜନାରେ ବଦଳିଚାଲିଲା । ଦିନବେଳା ଏ ଲୋକମାନେ ଥିଲେ ସାଧାରଣ ମତ୍ସ୍ୟଜୀବୀ ଆଉ ରାତିରେ ହୋଇଯାଉଥିଲେ ବିପ୍ଳବୀ ନେତା, ଆମେରିକୀୟ ଆଉ କଣ୍ଟେଇ ସରକାରର ଶହ ଶହ ଯୁଦ୍ଧ ଜାହାଜ ଭିତରେ, ହଜାର ହଜାର ଶତ୍ରୁ ସୈନ୍ୟଙ୍କ ମଝିରେ ଏମାନେ ପାର୍ଟି ମିଟିଂ କରୁଥିଲେ । ଶତ୍ରୁର ପରାଜୟ ଆଉ ସେମାନଙ୍କର ଦକ୍ଷିଣ ଭିଏତ୍‌ନାମରୁ ପ୍ରସ୍ଥାନ ପୂର୍ବରୁ ଏଠାରେ ସୈନ୍ୟଙ୍କ ସଂଖ୍ୟା ଥିଲା ଦ୍ୱୀପର ଜନସଂଖ୍ୟାଠାରୁ ଅଧିକ । ମୁଁ ଯେତେବେଳେ ଲୋକଙ୍କ ସହ ସାକ୍ଷାତ କରି, ନୋଟ୍ ଲେଖି କ୍ଳାନ୍ତ ହୋଇଯାଉଥିଲି ତ

ପାହାଡ଼ କଡ଼େ କଡ଼େ ଚାଲି ଚାଲି ବୁଲୁଥିଲି । ଲୋକମାନେ ସେଠି ରସୁଣଚାଷ ପାଇଁ ଜମି ପ୍ରସ୍ତୁତ କରୁଥିଲେ । ଏଠି ରସୁଣ ପଥର ଉପରେ ବି ହେଉଥିଲା । ସବୁରସୁଣ ଅମଳ ହୋଇସାରିଥିଲା ଆଉ ଏବେ ଲୋକେ ସେଠି ମାଟିକୁ ସାଗୁଆ ସମୁଦ୍ର ଶିଉଳିର ଆବରଣରେ ଘୋଡ଼ାଇ ଦେଉଥିଲେ । ଏହି ଜେଲି ପରି ସ୍ୱଚ୍ଛ ଥିଲା । ନଣ୍ଡାମୁଣ୍ଡିଆର ଗଦ଼ାଣିରୁ ତଥାପି ତୀବ୍ର ଗନ୍ଧ ଆସୁଥିଲା । ଖରାବେଳେ ଘରକୁ ଫେରି ମୁଁ ବସି ମୁଇ କଥା ଶୁଣୁଥିଲି । ସେ ମତେ କହିଥିଲା ପରି ମାଇକୁ ପୁଣିଥରେ ରସୁଣ ଚାଷ ବିଷୟରେ କହୁଥିଲା । ତା' ସ୍ୱର ଥିଲା ପୂର୍ବପରି ନରମ ଆଉ ଏଥିରେ ଥିଲା ସ୍ଥାନୀୟତାର ଧ୍ୱନି ସହିତ ପ୍ରଶ୍ନବାଚୀ ଢଙ୍ଗ ।

"... କୁନି କୁନି କୁଆଁଗୁଡ଼ିକୁ ଛୋଟ ଖଣ୍ଡରେ ଭାଙ୍ଗିଦେଇ ଉଚ୍ଚ ସମତଳ ବା ସୋପାନ ଭୂମିରେ ଲଗାଇ ଦିଅ ... ତାପରେ ଭୂମିକୁ ଘୋଡ଼ାଇ ଦିଅ, ଆଗ, ପରସ୍ତେ ସାଗର ଶିଉଳି ତାପରେ ପରସ୍ତେ ରସୁଣକୁଆଁ, ତାପରେ ମାଟି, ବାଲି ଆଉ ଗୋବର ଖତ ... ତାପରେ ଦାନ୍ତି କୋଦାଳରେ ପ୍ରତିଟି ଭୂମିରେ ଆମେ ପାଞ୍ଚଟି ଲେଖା ଧାଡ଼ିକରୁ

ପାହାଡ଼ର ଅଧାଯାଏଁ ସାଗର ଜଳ ବୋହି ଆଣୁ ଜମିରେ ପାଣି ମଡ଼ାଇବାକୁ । ଦୁଇମାସ ପରେ, ପାଣିମଡ଼ା ବନ୍ଦ କରିଦେଇ ଜମିରେ ସାରଦିଆ କାମ ଆରମ୍ଭ ହୁଏ । ପୂର୍ଣ୍ଣମୀ ବେଳକୁ, କୁଜି ଗେଣ୍ଡା ଦେଖାଦିଅନ୍ତି । ଚନ୍ଦ୍ରକ୍ଷୟ ହେଲାବେଳକୁ, ସେମାନେ ପତ୍ର ଖାଇବା ଆରମ୍ଭ କରିଦିଅନ୍ତି । ସେଥିପାଇଁ ଆମେ ଯେତେବେଳେ ରସୁଣ ପତ୍ର ଉପରେ କୁଜିଟିକୁ ରାତିରେ କିରୋସିନି ବତୀରେ ଦେଖୁ ତ ତାକୁ ନିଶ୍ଚୟ ମାରିଦେଉ ..."

ହେଲେ ସାନଃକୁ ମୁଁ ପାଇନଥିଲି ।

କଥାବାର୍ତ୍ତା ଯେତେବେଳେ ଅତି ଅନ୍ତରଙ୍ଗ, ବନ୍ଧୁତ୍ୱପୂର୍ଣ୍ଣ ଆଉ ହାର୍ଦ୍ଦିକ, ସେତେବେଳେ ବହୁତ ସହଜ ପଚାରିଦେବା ଏମିତି ଗୋଟେ ପ୍ରଶ୍ନ : "ମୁଁ ଶୁଣିଥିଲି ମିସ୍ ସାନଃ ବି ଲିସଁର ବାସିନ୍ଦା ଆଉ ସେ କ୍ୱେନନ୍ ଅଞ୍ଚଳରେ ବହୁତ ଭଲକାମ କରିଛନ୍ତି । ଏକଥା କ'ଣ ସତ ? ସେ ଏବେ କ'ଣ କରୁଛନ୍ତି ?" କେତେ ଲୋକଙ୍କୁ ମୁଁ ଏଇ ପ୍ରଶ୍ନ ପଚାରିଛି, ଆଉ ଶେଷରେ ଗ୍ରାମ ମହିଳା ସଂଘର ସେକ୍ରେଟାରୀଙ୍କୁ ବି ପଚାରିଥିଲି ; ସେ କହିଲେ : ଗୁପ୍ତ ରାଜନୈତିକ କାର୍ଯ୍ୟରେ ଶହ ଶହ କାଡ଼ର କର୍ମୀ ଭାଗ ନେଇଥିଲେ ; ସେମାନେ ଭିନ୍ନ ଭିନ୍ନ ଗୋପନୀୟ ଯୋଗାଯୋଗ ବ୍ୟବସ୍ଥାର ଅନ୍ତର୍ଭୁକ୍ତ ଥିଲେ ଆଉ କେତେ ନାମରେ ବି ଜଣାଶୁଣା ଥିଲେ, ଯେଉଁ ନାମ ବାରମ୍ବାର ବଦଳୁଥିଲା, ତେଣୁ ସେମାନଙ୍କୁ ଖୋଜି ଏବେ ବାହାର କରିବା କଷ୍ଟକର ! ତେବେ, ଆମର ଏଠି ସାନଃ ନାମରେ ଅନେକ ଝିଅ ଅଛନ୍ତି ... ।"

ଏଇ ସାନଃମାନଙ୍କ ଭିତରୁ କେହି ମୁଁ ଖୋଜୁଥିବା ସାନଃ ନଥିଲେ । କୌଣସି ଚିହ୍ନ ନରଖି ପକ୍ଷୀ ଉଡ଼ିଯାଇଥିଲା ।

"ଦଳ ଦଳ ପକ୍ଷୀ ଏଠି ମାଛ ପଲ ପଲ

ପୂରୁବ, ପଚ୍ଛିମ ଆଉ ଦକ୍ଷିଣ, ଉତ୍ତର,
କେଉଁଠି ପାଇବି ତାକୁ କାହିଁ ବାଟ ଖୋଜିବାର !"

ପ୍ରଚଣ୍ଡ ମାର୍ତ୍ତଣ୍ଡ ତଳେ ପିଲାଦିନର ସେଇ ମଧୁର ଗୀତଟି ଶୁଣି ଶୁଣି, ଚକ୍ ଚକ୍ କରୁଥିବା ସୈକତରାଶିକୁ ଚାହିଁ ରହିଥିବାବେଳେ ମତେ ଟିକେ ଭଲ ଲାଗିଆସିଲା ।

***

"ଯେଉଁ ସାନଃକୁ ତୁମେ ଖୋଜୁଛ ମି.ବା, ସେଇ ସାନଃ ହେଉଛି ମୁଁ । କ୍ୱେନନ୍‌ରେ ଥିବା ଗୁପ୍ତ ଗୋଷ୍ଠୀରେ କାମ କରୁଥିବାବେଳେ ମୋର ଅନେକ ନାମ ଥିଲା, ସାନଃ ସେଥିରୁ ଗୋଟିଏ । ସତ କହିବାକୁ ଗଲେ, ତୁମେ ଏ ଦ୍ୱୀପରେ ପାଦ ଦେଲାଠାରୁ ତୁମକୁ ମୁଁ ଚିହ୍ନି ପାରିଥିଲି । ତୁମ ଫଟୋ, ଯାହାକୁ ମୁଁ ସବୁଦିନ ଦେଖୁଥିଲି, ଆମ ପାଇଁ ଗୋଟେ ସଙ୍କେତ ରୂପେ ବ୍ୟବହୃତ ହେଉଥିଲା, ଆମେ ଚିହ୍ନା ପଡ଼ିଲୁଣି ନା ନାହିଁ ସେଇକଥା କହୁଥିଲା । ସେଥିପାଇଁ ତୁମକୁ ମୁଁ ଚିହ୍ନିପାରିଲି । ବିଶେଷଭାବରେ ଗତ କୋଡ଼ିଏ ବର୍ଷ ଭିତରେ ତୁମେ ବେଶୀ କିଛି ବଦଳି ନାହିଁ ! ତଥାପି ଜଣେ ଅନ୍ୟଜଣକ ପରି ଦେଖାଯାଇପାରେ ମି.ବା, ହେଲେ ତୁମେ ଯେତେବେଳେ ଏଇଠି, ଏଇ ଘରେ, ଗ୍ରାମ ସଭାପତିଙ୍କ ସହ କଥା ହେଲ, ମୋର ଆଉ ସନ୍ଦେହ ନଥିଲା । କିନ୍ତୁ ତୁମର ବି ନିଜ କାମ ଥିଲା କରିବାକୁ, ତାଛଡ଼ା ତୁମେ ମୋତେ ଏତେ ଭଲକରି ବି ଜାଣିନଥିଲ ଯେ ତୁମର ସମ୍ପର୍କୀୟ ରୂପେ ମତେ ବିଚାର କରିପାରିଥାନ୍ତ ! ଆଉ ବି ସେପରି ସମ୍ପର୍କୀୟର କି ମୂଲ୍ୟ ? ଶ୍ରୀମତୀ ବୌଁଙ୍କ ପାଇଁ ମୁଁ କେବଳ ଗୋଟେ ଚାକରାଣୀ ରୂପେ କାମ କରୁଥିଲି । ସେ ଅକସ୍ମାତ୍ ଆବିଷ୍କାର କରିପକାଇଥିଲେ ଯେ ମୁଁ ଗୋଟେ ବିପ୍ଳବୀ । ହଠାତ୍ ମୋର ଜଣେ ବନ୍ଧୁ ପଚାରିବାର ଶୁଣିଲି, "ତୁମ ଭିତରୁ କିଏ ଅତୀତର ସାନଃ ନାମରେ ଲୁଚି କାମ କରୁଥିଲା ? ହାନୋଇରୁ ଜଣେ ଭଦ୍ରଲୋକ ଆସି ତାଙ୍କୁ ଖୋଜୁଛନ୍ତି ।" ମୋ ହୃଦୟକୁ ଏକଥାଟି ଛୁଇଁଲା । ତୁମ ପାଇଁ ମୁଁ କିଛି କରିନାହିଁ, ଏପରିକି ଶ୍ରୀମତୀ ବୌଁଙ୍କ ପାଇଁ ବି ନୁହେଁ । ମୁଁ ବୁଝିପାରିଲି ନାହିଁ କାହିଁକି ତୁମେ ମୋତେ ଖୋଜୁଥିଲ । ସେଇଥିଯୋଗୁଁ ମୁଁ କାନ୍ଦିଲି । ସେଦିନ ମୁଁ କହିଲି ମୋ ମୁଣ୍ଡ ଭାରି ବିନ୍ଧୁଛି, ତୁମେ ଜାଣିଛ, ଯେଉଁଦିନ ମୁଁ କମ୍ବଳ ଘୋଡ଼ିହୋଇ ଶୋଇଥିଲି ? ତୁମେ ମୋତେ ଔଷଧ ଆଉ ପାଣି ଦେଲ । ମୋର ମନ ହେଉଥିଲା ଉଠିପଡ଼ି, ଡିଆଁ ମାରି କହିବି : 'ମୁଁ ସେଇ ସାନଃ, ତୁମକୁ ଅଶେଷ ଧନ୍ୟବାଦ ।' ହେଲେ ନିଜକୁ ମୁଁ ଚୁପ୍ ରଖିଲି ଆଉ ଆଜିଯାଏଁ ଅପେକ୍ଷା କରି ରହିଲି ଯେତେବେଳେ ତୁମେ ଏଠାରୁ ଯିବାକୁ ବାହାରିଛ । ବହୁତ ଧନ୍ୟବାଦ ମି.ବା । ମୁଁ ଅତି ଗରିବ, ମୋ ବାପା-ମା, ଭାଇ ଯୁଦ୍ଧରେ ନିହତ ହୋଇଛନ୍ତି, ଆଉ ମୋ ଜୀବନ

ଏବେ ବିପ୍ଳବର ସେବା ପାଇଁ ଉଦ୍ଦିଷ୍ଟ । ତୁମର ମୋ ପାଇଁ ଚିନ୍ତାକୁ, ମତେ ଖୋଜି ବାହାର କରିବାକୁ ମୁଁ କେତେ ସମ୍ମାନ ଦିଏ ... ।"

ମୁଁ କ'ଣ ସ୍ୱପ୍ନ ଦେଖୁଥିଲି ? ନା, ମିସ୍ ମୁଇ ମୋ ସାମ୍ନାରେ ହିଁ ବସିଥିଲା । ସେ ଲଣ୍ଠନଟିକୁ ତେଜିଦେଲା ଆଉ କହିଲା ସେ ମାଇ କେତେବେଳୁ ଶୋଇବାକୁ ଚାଲିଗଲାଣି, ତାହେଲେ ସକାଳୁ ଉଠି ସମୁଦ୍ରକୂଳକୁ ବେଗେ କାମ କରିବାକୁ ଯାଇପାରିବ । ଲଣ୍ଠନ ଆଲୁଅରେ ତା' ମୁହଁରୁ ଫାଳେ ଦିଶୁଥିଲା, ସ୍ୱର ତାର ଥିଲା ଶାନ୍ତ ଓ କୋମଳ, ମୁକ୍ତ ଆନନ୍ଦରେ ପୂର୍ଣ୍ଣ ଆଉ ଭଦ୍ର । ମୋ ପାଇଁ ସେ ଥିଲା ଝିଅାରୀଟିଏ ଯିଏ ମୋ ଅନୁପସ୍ଥିତିରେ ବଢ଼ିଯାଇଥିଲା । ଏହା ଅଯୌକ୍ତିକ ଥିଲା, ହେଲେ ଏତେଦିନ ଧରି ସାନଃକୁ ଖୋଜିଲା ପରେ ଏବେ ତାକୁ ପାଇ ମୁଁ ଜାଣିନଥିଲି କ'ଣ କହିବି । ମୁଁ କାବା ହୋଇଯାଇଥିଲି । ସାନଃ ବା ମୁଇ ଟିକେ ଅଟକିଯାଇ ଦୁଇଟି ପାର୍ସଲ ମୋ ଆଡ଼କୁ ବଢ଼େଇଦେଇ କହିଲା, "ଏ ଦୁଇଟି ଶ୍ରୀମତୀ ବୌଁଙ୍କ ପାଇଁ ମୋ ଠାରୁ ଉପହାର । ତାଙ୍କୁ ଦୟାକରି ଦେଇଦେବ । ତୁମର ସ୍ତ୍ରୀ ଥିବେ । ସ୍ୱାଧୀନତା ପରଠାରୁ, ଶ୍ରୀମତୀ ବୌଁଙ୍କୁ ଭେଟିବାର ସୁଯୋଗ ମୁଁ ପାଇନାହିଁ । ତାଙ୍କୁ ବିଶେଷ ସାହାଯ୍ୟ କରିପାରି ନାହିଁ, ସେ ମୋ ସହିତ ସମ୍ପର୍କ ରଖିବାକୁ ଡରୁଥିଲେ ସେଥିପାଇଁ ମତେ ସତର୍କ ରହିବାକୁ ପଡୁଥିଲା । ହେଲେ ସେ ଖୁବ୍ ଦୟାଳୁ । ଏଭଳି ଲୋକ ନଥିଲେ, ଆମେ କେମିତି ଆମ ବିପ୍ଳବ କାର୍ଯ୍ୟକ୍ରମକୁ ଆଗେଇ ନେଇଥାନ୍ତୁ ! ଏବେ ଏବେ ମୁଁ ଭାବୁଥିଲି ଶ୍ରୀମତୀ ବୌଁଙ୍କୁ ମୁଁ ପଚାରିବି ମତେ ସେ ପୋଷ୍ୟକନ୍ୟା କରିନେବେ କି ? ମୁଁ ବି ନିଶ୍ଚିତ ଯେ ସେ ମନାକରିବେ ନାହିଁ । ତୁମେ କ'ଣ ଭାବୁଛ ମି.ବା ? କଥାଟା ହେଲା ତାଙ୍କର ବହୁତ ଧନ ଅଛି ଯାହା ତୁମର ନାହିଁ ... ।"

ତାପରେ ମୁଇ ମୋ ସାଙ୍ଗେ ସେମିତି କଥାବାର୍ତ୍ତା କଲା ଯେମିତି ଅନ୍ୟ ଝିଅାରୀମାନେ କରନ୍ତି ।

"ମୁଁ ବେଶୀ ପାଠ ପଢ଼ିନାହିଁ । ସାରାଜୀବନ କେଉଁ ସ୍କୁଲକୁ ଯାଇନାହିଁ । କେମିତି ଯାଇପାରିଥାନ୍ତି ମାମୁ ? ତୁମ ନିଜ ଝିଅ ପରି ତୁମକୁ ନିୟମିତ ଚିଠି ଲେଖିବାକୁ ମୋତେ କ'ଣ ତୁମେ ଅନୁମତି ଦେବ, ମୋ ମାମୁ ?"

ତୁମ ଝିଅ, ମୋ ମାମୁ ! ଆମେ ହସି ହସି ଗଡ଼ିଗଲୁ ।

***

ଏବେ ଏବେ ଯାହାସବୁ ମୋ ସାଥିରେ ଘଟିଯାଇଥିଲା ସେଥିରେ ବାଉଳା ହୋଇ ମୁଁ ଉଠିପଡ଼ିଲି ।

ସେଦିନ ସକାଳେ ସାଗର ଥିଲା ଅତି ମନୋରମ । ଫୁଲ ବଗିଚାର ଆରପଟେ

ଧାଡ଼ିଏ ନଡ଼ିଆଗଛର ବାହୁଙ୍ଗା ଦୋହଲୁଥିଲା ଗୋଟେ ଗୀତାର ବଜାଉଥିବା ଅଙ୍ଗୁଳି ପରି । ସବୁଜ ଡଙ୍ଗାଟି ପାଣିରେ ଚହଲୁଥିଲା । ତା ପଛକୁ ସାଗର, ଗଭୀର ନୀଳ, ବିସ୍ତୃତ ଆଉ ଅସୀମ । କୂଳକୁ ଆଗେଇ ଆସୁଥିବା ନୌକାମାନଙ୍କ ଶବ୍ଦରେ ବାୟୁମଣ୍ଡଳ ଝଙ୍କୃତ ହୋଇଉଠିଲା ।

ହଠାତ୍ ଗଡ଼ାଣି ସମତଳରୁ ଫୁଲବଗିଚାର କାନ୍ଥରେ ପ୍ରତିଧ୍ୱନିତ ହେଉଥିବା ନାରୀକଣ୍ଠ ସ୍ୱରଟି ମୁଁ ଶୁଣିଲି : "ଦେଖ, ରାଜ୍ୟ ସରକାର ନାହ୍ୟାବିନ୍ ପ୍ରଦେଶର ଲକ୍ଷେ ନବେହଜାର ଲୋକଙ୍କୁ ଯୋଗାଇ ଦେଉଛନ୍ତି ଚାଉଳ, ପେଟ୍ରୋଲ, ସାର, କୀଟନାଶକ, ମାଛଧରା ଜାଲ, ଅଙ୍ଗନବାଡ଼ି ଆଉ ସ୍କୁଲ । ତା ବଦଳରେ ଆମେ ରାଜ୍ୟ ପାଇଁ କରୁଛେ କ'ଣ ? ମନେରଖ, ଆମେ ଦେଉନାହେଁ, ଆମେ ବିକୁଛେ ଶହ ଶହ ଟନ୍ ଡାଲଚିନି, ରସୁଣ । ଏହା ଠିକ୍ ବୋଲି ତୁମେ ଭାବୁଛ ?"

ମତେ ବହୁତ ଖୁସି ଲାଗିଲା, ସାମାନ୍ୟ ଅସହଜ ବି । କି ଚମତ୍କାର ଲୋକ ଏମାନେ ! ମୁଁ କାହିଁକି ଏତେ ଆଶ୍ଚର୍ଯ୍ୟ ହୋଇଥିଲି ଯେତେବେଳେ ଆଜି ମାଇ ବଦଳରେ ମୁଇ, ନା ମୋ ଝିଆରୀ ସୁନଃର ସ୍ୱର ଶୁଣିଲି ? ମାଇ ସ୍ଥାନରେ ସୁନଃ ଦାୟିତ୍ୱ ବହନ କରି ଯେତେବେଳେ ଏତେ ସରଳ ଆଉ ଅକପଟ ବ୍ୟାଖ୍ୟା ସହିତ ବାହାରି ଆସୁଥିଲା ମୁଁ କାହିଁକି ଚକିତ ହେଉଥିଲି ?

୧୧

# ଟନି ଡି

## ଲେ ମିନ୍ ଖୁୟେ

ସହରର ଜନଗହଳିପୂର୍ଣ୍ଣ ଅଞ୍ଚଳରେ ଅଧିକାଂଶବେଳେ ଇତସ୍ତତଃ ବୁଲୁଥିବା ସେଇ ଲୋକଟିର ମୁହଁ ଥିଲା ଗୋଟେ ପ୍ରକାର ଦୁଃଖମୁହାଁ ଜାତୀୟ । ସେ ହଠାତ୍ ଆସି ବୁଢ଼ା ଥିଏଁ ଘର ଆଗରେ ଠିଆ ହେଲା । ଲୋକଟିର ଦେହ ବହୁକାଳ ଧରି ଅତ୍ୟଧିକ ଭୋଜନରୁ ଯେପରି ଫୁଲିଯାଇଥିଲା । ଛୋଟିଆ ମୁଣ୍ଡଟି ଉପରେ ଥିଲା ଗୋଟେ ସାଧା ଦୁର୍ବଳମୁହଁ । ନଉଠି, ସେଇମିତି ବସିରହି ଥିଏଁ ପଚାରିଲା :

"ଥାନ୍ ବିଷୟରେ କହିବାକୁ ଆସିଛୁ କି ?"

"ହଁ, ତୁମେ କେମିତି ଜାଣିଲ ?"

"ସେଥିପାଇଁ ପରୱା କରନି, କହ କ'ଣ ହୋଇଛି ?"

"ଥାନ୍ ମୃତ । ତା ଦେହ ଏଯାଏଁ ମିଳିନାହିଁ ।"

ବୁଢ଼ା ଥିଏଁର ଗଳାର ବିରାଟ ମୁଣ୍ଡାଟି, ଇଟା ଖଣ୍ଡ ପରି ତା' ବେକ ଭିତରେ ଉପର-ତଳ ହେଲା । ପ୍ରାୟ ବର୍ଷେ ତଳେ, ତା' ପୁଅ ଥାନ୍ ଦେଶର ଅନ୍ୟ ସୁନା ଅନୁସନ୍ଧାନକାରୀଙ୍କ ସହ ମିଶି ସୁନାଖଣିରୁ ସୁନା ଖୋଳିବାକୁ କେନ୍ଦ୍ରାଞ୍ଚଳକୁ ଯାଇଥିଲା । ଏଥରକୁ ମିଶାଇ ତୃତୀୟ ଥର ପାଇଁ ତା' ମୃତ୍ୟୁ ସମ୍ବାଦ ଆସିଥିଲା । ପ୍ରଥମଥର ସେ ଖଣିରେ ପୋତି ହୋଇଯାଇଥିଲା, ଦ୍ୱିତୀୟ ଥର ଛୁରିକା ଘାତ ଆଉ ଏଥର ଶରୀର ଅନ୍ତର୍ହିତ । ଯେଉଁ ଲୋକଟି ଏ ସମ୍ବାଦ ଆଣିଥିଲା ସେ ଦୁଆର ମୁହଁରେ ଠିଆହୋଇ କ୍ଷୁଧାର୍ତ୍ତ ପରି ନିଜ ଓଠ ଚାଟୁଥିଲା । ବୃଦ୍ଧ ଥିଏଁ ଏଭଳି ଲୋକମାନଙ୍କ ଉଦ୍ଦେଶ୍ୟ ଭଲଭାବରେ ଜାଣେ । ମୁହଁର ମାଂସପେଶୀଟିଏ ବି ନହଲାଇ ସେ ପଚାରିଲା :

"ଦେହଟା କେମିତି କୁଆଡ଼େ ଉଭେଇଗଲା ?"

"ଖଣି ଧସିଗଲା, ତା' ପାଖରେ କେହି ପହଞ୍ଚିପାରିଲେ ନାହିଁ ।"

"ମରିବାର ତିନି ପ୍ରକାର ବାଟ !"

"କ'ଣ ତୁମେ କହୁଛ ?"

"ତିନୋଟି ଲୋକ, ତିନିପ୍ରକାର ମୃତ୍ୟୁ । ତୁମେସବୁ ନର୍କକୁ ଯାଉନ କାହିଁକି ?"

ଲୋକଟି ନିର୍ବେଦ ହୋଇ ରହିଗଲା । କେତେବେଳ ପରେ, ସେ ବୁଢ଼ା ଥୁଏଁର କୋଠରିକୁ ଭଲକରି ଦେଖିଲା । ଉଠେଇନେଲାଭଳି କିଛି ସେଠି ନଥିଲା । କି ଧଡଡ଼ା ଘର ! ତଥାପି ମାଗିବାର ପ୍ରବଳ ଇଚ୍ଛାକୁ ସେ ଦମନ କରିପାରିଲା ନାହିଁ ।

"ଟ୍ରେନ୍ ଆଉ ବସ୍ ଭଡ଼ା ଭାରି ବାଧୁଛି । ଏଠି ଚଳିବା ବି କଷ୍ଟକର । ଦୟାକରି, ମତେ କିଛି ଖାଇବାକୁ ଅନ୍ତତଃ ଦିଅ ।"

ବୁଢ଼ା ଥୁଏଁ ଗୋଟେ ହାତଟେକି ଅନ୍ଧାରି କୋଣ ଆଡ଼କୁ ଦେଖାଇଦେଲା, "ଦେଖ୍, କ'ଣ ସେଠି ଅଛି ! ତୋ ମନ ଯାହା ଖା' ।"

ଲୋକଟି ଏକେବାରେ ହତାଶ ହୋଇପଡ଼ିଥିଲା । ସେ ଥୁଏଁ ପଛପଟ ଦେଇ ଦି'ପାଦ ଆଗେଇଯାଇ ସେଠି ଥିବା ଭଙ୍ଗା ଛୋଟ ଇଲେକ୍ଟ୍ରି ପଙ୍ଖାଟିକୁ ଧରି ପକେଇଲା । ପଙ୍ଖାଟା ଦେଖାଯାଉଥିଲା ଯେପରି ମୂଷାମାନେ ଏହାକୁ ଚୋବେଇ ଖାଇଦେଇଛନ୍ତି ।

"ମୁଁ ଏଇଟା ନେଇଯାଉଛି ।"

ପଙ୍ଖାଟିକୁ କାଖରେ ଜାକି ସେ ବାହାରିଗଲା । ବୁଢ଼ା ଥୁଏଁ ତା ପଛରୁ ପାଟିକଲା : "ଆରେ, ତୋ ମୁହଁ ଉପରେ ନଜର ରଖିଥା ! ମୋ ପୁଅ ନିଶ୍ଚୟ ଫେରିଆସିବ । ସେ ତୋ ରକ୍ତ ଶୋଷିନେବ । ତୋ ମୁଣ୍ଡ ଚୂନା କରିଦେବ !"

ବୁଢ଼ା ଥୁଏଁ ବି ଜାଣିଥିଲା ଯେ ତା ପୁଅ ପତଳା ହେଲେ ବି ବେଶ୍ ବଳୁଆ ଥିଲା, ମୂଷା ପରି ଛୋଟିଆ ହେଲେ ବି, ସେଇମାନଙ୍କ ଭିତରୁ ସେ ଜଣେ ଥିଲା ଯାହା ଉପରେ ଆକାଶ ଛିଡ଼ିପଡ଼ିଲେ ବି ମରିବ ନାହିଁ । ସେ ଥିଲା ଜଙ୍ଗଲି ଘାସ ପରି ଯାହା ନିଆଁଲାଗି ପୋଡ଼ିଗଲା ପରେ ପ୍ରତିଥର ଆହୁରି ବଳିଷ୍ଠ ହୋଇ ବଢ଼ିଆସେ । ଥରେ କାହାଘରୁ ଚୋରିକଲାବେଳେ, ଥାନ୍ ତୃତୀୟ ମହଲା ଛାତ ଉପରୁ ପଡ଼ିଯାଇଥିଲା । ହେଲେ ତା ଭାଗ୍ୟ ଜୋର୍‌ଥିଲା – ସେ ଗୋଟେ ବାଲିଗଦା ଉପରେ ପଡ଼ିଲା । ତା' ପୁଅକୁ କେଉଁ ସଇତାନ ମାରିପାରିବ ? ହେଲେ, ସମ୍ବାଦ ଆଣି ଆସିଥିବା ଲୋକଟି ଯାଇସାରିଥିଲେ ବି ଥୁଏଁକୁ ଭାରି ଅସହଜ ଲାଗୁଥିଲା !

ରାତିହେଲା ପର୍ଯ୍ୟନ୍ତ ସେ ଅପେକ୍ଷା କଲା, ଆଉ ତାପରେ ଖଟତଳେ ଅଳିଆ ଭିତରେ ଲୁଚେଇ ରଖିଥିବା ପୁରୁଣା ରେଡ଼ିଓଟିକୁ ବାହାରକଲା । ଧୀରେ ରେଡ଼ିଓ ନବଟି ଘୁରାଇଲା । ଘୋଷକର ପୂରା ବାକ୍ୟଟି ଶୁଣିବା ବି ସମ୍ଭବ ନଥିଲା । କେତେବେଳେ ସଁ ସଁ ଶୁଭୁଥିଲା ତ କେତେବେଳେ ଗୋଟିଏ ଜାଗାରେ ରେଡ଼ିଓ ଲାଖିଯାଉଥିଲା, ନବଟି ବୁଲାଇ ଆଗକୁ ନେବାକୁ ସମୟ ଲାଗୁଥିଲା । ପଡ଼ୋଶୀମାନେ ବିରକ୍ତ ହୋଇ, ମୁଣ୍ଡଟେକି ତାକୁ ଅନାଉଥିଲେ, ହେଲେ ସେ କ'ଣ ଖାତିର କରୁଥିଲା ? ସେ ତ ସେମାନଙ୍କ ପୂର୍ବପୁରୁଷଙ୍କ

ସମାଧି ଖୋଲୁନଥିଲା, ସେ ଭାବିପାରୁନଥିଲା କିପରି ଏଇ ସାମାନ୍ୟ ଶବ୍ଦ ଲୋକଙ୍କ ନିଦରେ ବ୍ୟାଘାତ ସୃଷ୍ଟି କରୁଥିଲା । ତା' ନିଜ ପାଇଁ କଥା ଥିଲା ଅଲଗା, ମାନେ, ତା' କାନ ପାଖରେ ବୋମା ଫୁଟିଲେ ବି ସେ ନିଶ୍ଚିନ୍ତରେ ଶୋଇ ରହୁଥିଲା । ସେ ଯେତେବେଳେ ଚାହୁଁଥିଲା ଶୋଇପାରୁଥିଲା, ଯେତେବେଳେ ଚାହୁଁଥିଲା ଖାଇଦେଉଥିଲା । ପ୍ରତିଟି ଭୋଜନରେ ସେ ଆଠ ତାଟିଆ ବାସିଭାତ ଉପରେ ମାଛମୁଣ୍ଡ ଆଉ ଅନ୍ତବୁଜୁଳା ତିଆରି ଦୁର୍ଗନ୍ଧଯୁକ୍ତ ସସ୍ ପକାଇ ଖାଉଥିଲା । ସଂଧ୍ୟାବେଳ ହାଟରୁ ଶସ୍ତାରେ ଏହା ସେ କିଣି ଆଣୁଥିଲା । ସାରା ହତାକୁ ଏହା ଦୁର୍ଗନ୍ଧରେ ଅଣନିଃଶ୍ୱାସୀ କରିପକାଉଥିଲେ ବି, ତା' ପାଟିକୁ ଏ ଖାଦ୍ୟ ସୁଆଦ ଲାଗୁଥିଲା । ଏଇଭଳି ଖାଦ୍ୟଖାଇ ଯେତେ ସେ ଶୋଉଥିଲା ସେଥିରେ ହତା ଭିତରେ ଅନ୍ୟ ସମସ୍ତଙ୍କଠାରୁ ସେ ଯେ ବିରାଟ ଚେହେରାର ଥିଲା ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଲୋକେ ତାକୁ ଦେଖି ଭାବୁଥିଲେ ଗୋଟେ ତେଲ ଆଉ ଗ୍ରୀଜ୍ ନଥିବା ପରିତ୍ୟକ୍ତ ଟାକ୍ଟର । ତା' ପଡ଼ୋଶୀମାନେ ତାକୁ କହୁଥିଲେ, ପୃଥିବୀର ଶୃଙ୍ଖଳା ଭାଙ୍ଗିବାକୁ ନର୍କରୁ ଭୂତଟିଏ ଆସିଛି । ସେ ଗର୍ବ କରି କହୁଥିଲା ଯେ ପୂର୍ବ ତିନିପୁରୁଷ ଧରି ତା' ପରିବାର ଥିଲେ ଅତି ଧାର୍ମିକ ଆଉ ବିପ୍ଲବକୁ ସେମାନଙ୍କ ଅବଦାନ କଥା କହିବାର ଆବଶ୍ୟକତା ନାହିଁ । ଏହି ଅବଦାନର କଥା ସେ ଛୋଟ ପିଲାମାନଙ୍କ ମେଳରେ ବେଶ୍ ବକୁଥିଲା ଯେଉଁମାନେ ତା' କଥାକୁ ନିରୀହ ବତକ ବଜ୍ରପାତ ଶୁଣିଲା ପରି ଶୁଣୁଥିଲେ । ସେ ଅଗଣାରେ ଚାଲିଲାବେଳେ ବଜ୍ରପାତ ହେଲାପରି ଲାଗୁଥିଲା । କାରଣ ଗୋଟେ ଷଣ୍ଢ ପରି ସେ ବଳୁଆ ଥିଲା । ସେଥିପାଇଁ ତା'ର କାହାକୁ ଖାତିର ନଥିଲା । ସାମାନ୍ୟ ବିବେକ ଥିବା କୌଣସି ନମ୍ର ବିଦ୍ୱାନ ଭଳି ବ୍ୟକ୍ତିଟିଏ ହେବାର ବିଳାସ ତାର ନଥିଲା । ଯାହା ସେ କରିବାକୁ ଚାହୁଁଥିଲା କରୁଥିଲା । ସମସ୍ତଙ୍କ ଉପରେ ଚଢ଼ି ସେ ମାଡ଼ି ଯାଉଥିଲା ।

ବୁଢ଼ା ଥିଏଁର ସ୍ତ୍ରୀ ମରିଯାଇଥିଲା, ତା' ଝିଅ ପାହାଡ଼ିଅଞ୍ଚଳରେ ଗୋଟେ କାହାକୁ ବାହା ହୋଇଯାଇଥିଲା । ନିରାପତ୍ତାରକ୍ଷୀ କର୍ମରୁ ଅବସରନେବା ତା'ର ଆଜିକୁ ବାରବର୍ଷ ହୋଇଗଲାଣି । ସହରଠାରୁ ଦୂରରେ ତାର ଥିଲା ଘରଟିଏ, ସେଠାରେ ଥିଲା ବଗିଚା, ମାଛ ପୋଖରୀ । ହେଲେ ଦିନେ ସେ ଘରଟି ବିକିଦେଇ ସହରକୁ ଚାଲିଆସିଲା । ଘର ବିକ୍ରିରୁ ଯେଉଁ ଟଙ୍କା ପାଇଲା ସେଥିରେ ସୁନା କିଣି ନିଜ ବେଲ୍‌ଟରେ ପୂରାଇ ରଖିଲା । ତାପରେ ଅତି ଦରିଦ୍ର ବୋଲି ଛଳନା କରି, ତା' ପରିବାରକୁ ଜବରଦସ୍ତ ଏଇ ଦଶ ବର୍ଗମିଟରର ଗର୍ତ୍ତ ଭିତରକୁ ନେଇଆସିଲା, ଯେଉଁ ହତାଟି ସର୍ବସାଧାରଣ ପାଇଖାନାର ଠିକ୍ ସାମ୍ନାରେ ଥିବା ଯୋଗୁଁ ସବୁବେଳେ ଦୁର୍ଗନ୍ଧରେ ପୂର୍ଣ୍ଣ ଥିଲା । ଅଗଣାର ଏପଟେ ଥିଲା ଗୋଟେ ଛାତ ଯାହାକୁ ଲୋକମାନେ ନେଇ ଧାଡ଼ିକରି ଗୋଟେ ଗୋଟେ ଖଟ ପକାଇଥିଲେ । ପ୍ରତିଟି ଖଟ ଚାରୋଟି ଖୁଣ୍ଟି ଦ୍ୱାରା ଗୋଟେ ଗୋଟେ ପରିବାରର

ଅଞ୍ଚଳରୂପେ ଚିହ୍ନିତ ହେଉଥିଲା । ଏ ଦୃଶ୍ୟ ଥିଲା ବେଶ୍ ରଙ୍ଗୀନ । ଏଠାରେ ଥିଲେ ଦମ୍ପତ୍ତି, ଜନପ୍ରିୟ ସଡ଼କଛାପ ଥିଏଟରର ଯାଯାବର ଗାୟକ, ଯେଉଁମାନେ କୁକୁର-ବିଲେଇ ପରି ଦିନସାରା ପରସ୍ପର ସହ କଳି କରୁଥିଲେ ଆଉ ରାତିସାରା ପରସ୍ପରକୁ କୁଣ୍ଢେଇ ଧରି ଅଙ୍ଗା ନକଲରେ ରାତି ବିତାଇଦେଉଥିଲେ ଯେତେବେଳେ ବର୍ଷାପାଣି ଅଗଣାର ମହାଦୁର୍ଗନ୍ଧକୁ ଧୋଇ ତରଳ କରିଦେଉଥିଲା । ଏଠି ଥିଲେ ଲଜ୍ଜିତ ଯୁବକମାନଙ୍କ ପରିବାର । ସେମାନେ ଦିନସାରା କାମ ଖୋଜିବାକୁ ଚାଲିଯାଉଥିଲେ, ଆଉ ରାତିରେ ଫେରିଆସୁଥିଲେ ଏଇ ନର୍କକୁ ଯେଉଁଠି ବିଜୁଳି ନଥିଲା, ନଥିଲା ହାତ ପଙ୍ଖାଟିଏ, ଏପରିକି ଯଥେଷ୍ଟ ପାଣି ବି ନଥିଲା ସେମାନଙ୍କ ଝାଳୁଆ ଦେହକୁ ଶୀତଳ କରିବାକୁ । ସେମାନେ ଅଧାଲଙ୍ଗଳା ହୋଇ ଏକାଠି ଜକାଜକି ହୋଇ ଶୋଇପଡୁଥିଲେ ଯେମିତି କଡ଼େଇରେ ଭଜାମାଛ । ବହୁପୂର୍ବରୁ ଏଇ ଛାତ ଥିଲା ଯୁବ, ଅଭିଜାତ ନାରୀ-ପୁରୁଷଙ୍କ ସାକ୍ଷାତସ୍ଥଳୀ, ଆଜି ଏଠି ପ୍ରତିଧ୍ୱନିତ ହେଉଛି ଅତିସାଧାରଣ ଲୋକଙ୍କ ଘୁଙ୍ଗୁଡ଼ି, ଯେଉଁମାନେ ଶୋଇଛନ୍ତି ଖୋଲା ତାରକାଖଚିତ ଆକାଶ ତଳେ । ଆକାଶ ସେମାନଙ୍କର ଏକମାତ୍ର ରକ୍ଷାକର୍ତ୍ତା, ଲାଞ୍ଛିତ, ଦୟନୀୟ ଏମାନଙ୍କ ଜୀବନ । ଦିବାଲୋକରେ ଏମାନେ ବନିଯା'ନ୍ତି ସଇତାନ, ଦଳେ ପଶୁଙ୍କର ଏକତ୍ର ସହାବସ୍ଥାନ ଏଠି, ସବୁଠାରୁ ଶକ୍ତିଶାଳୀ ଆଉ ସମର୍ଥ ହିଁ ଏଠାରେ ଆଦାୟ କରେ ସବୁଠାରୁ ଭଲ ଜିନିଷ । ହଜାର ହଜାର ଲୋକଭବନର ଏଇ ଅବସ୍ଥା । ଏ ଯୋଜନା ଛତୁଭଳି କାର୍ଯ୍ୟକାରୀ ହେଲା ଦିନଠାରୁ ଏହାହିଁ ସ୍ଥିର ହୋଇଥିଲା ଯେ ଏଠାରେ ସବୁଲୋକ ଆଉ ସେମାନଙ୍କ ଆତ୍ମାମାନ ସମାନ ଛାଞ୍ଚ ଭିତରେ ବନ୍ଦୀ ହୋଇ ରହିବ ।

ବୁଢ଼ା ଥିଏଁ ତା' ଗାଁ ଘର ବିକି ଦେଇଥିଲା, ତା' ଟଙ୍କାବେଲଟ ସୁନାରେ ପୂରିଥିଲା, ତଥାପି ସେ ଗୋଟେ ଦରିଦ୍ର, ବାସହୀନର ଭୂମିକାରେ ଅଭିନୟ କରିବା ପାଇଁ ଦୃଢ଼ପ୍ରତିଜ୍ଞ ଥିଲା । ସେ ବି ଛାତ ଉପରର ଗୋଟେ ଗୁମ୍ଫା ଭିତରକୁ ଗୁରୁଣ୍ଡି ପ୍ରବେଶ କରିଥିଲା ପଶୁମାନଙ୍କ ଗହଣରେ ରହିବାକୁ । ଆଉ ସେମାନଙ୍କ ଗହଣରେ ସେ ହିଁ ଥିଲା ଏକମାତ୍ର ମୂନିଆ ଦାନ୍ତବାଲା ।

ଅଳ୍ପଦିନ ପରେ ଶୂନ୍ୟରୁ ହଠାତ ଆସି ପହଞ୍ଚିଲା ଥାନ୍, ପିଠିରେ ବୋହିଥିଲା ଗୋଟେ ପେଟୁଆ ଅଖାମୁଣି, ତା ଭିତରେ କ'ଣ ଥିଲା କେହି ଜାଣିନଥିଲେ । ଏହା ଥିଲା ରହସ୍ୟମୟ । ଛାତି ଫୁଲେଇ ସେ ଲୋକଭବନ ପରିସର ଭିତରକୁ ପଶିଆସିଲା । ସବୁକୋଣରୁ, ଆଖିମାନ ନିବଦ୍ଧ ହେଲା ଅଖାମୁଣି ଉପରେ, ଯାହା ଏଇ ପଳାତକର ପିଠି ଉପରେ ବନ୍ଧା ହୋଇଥିଲା ।

ସିଡ଼ି ପାହାଚତଳୁ ଚିଡ଼େଇଲା ପରି ସରୁ ସ୍ୱରଟିଏ ଶୁଣାଗଲା – "ଥାନ୍" । ଥାନ୍ ବୁଲିପଡ଼ି ଅନେଇଲା, ସେଠି ଠିଆହୋଇଥିଲା ମୋଟି ସ୍ତ୍ରୀଲୋକଟିଏ, ତା' ବେକ ପାଖରେ

କୁଞ୍ଚ କୁଞ୍ଚ ହୋଇ ଚର୍ବି ଓହଳିଥିଲା, ମୁହଁରେ ବହଳ ପାଉଡ଼ରର ଲେପ ଆଉ ଲିପଷ୍ଟିକ ମିଶି ସେ ଦେଖାଯାଉଥିଲା ରେଳଷ୍ଟେସନ ପାଖ ବସ୍ତିର ଗୋଟେ ମାଇପି ପରି । ଆକର୍ଣ୍ଣବିସ୍ତାରୀ ହସ ହସି, ଦାନ୍ତ ମଝିରେ ଲମ୍ବା ପିଆଜ୍ଜଷଣ୍ଡାରୁ ଖଣ୍ଡେ ଚୋବେଇ ଚୋବେଇ ସେ କହିଲା : "ହେ ଥାନ୍, ଆସିଲୁ ?"

"ହଁ, ହାଲୋ ଭଉଣୀ ଫାନ୍ ।"

"ଏ ଅଖାରେ କ'ଣ ରଖିଛୁ ?"

"କେବଳ ମୋ ଲୁଗାପଟା ।"

"ହୁଁଃ, ଲୁଗାପଟା ନା ଆଉକିଛି । ତୋ ମା'ମଗୁ, ଦେଖିଲୁ କେଡ଼େ ଓଜନିଆ ହୋଇଛି ଅଖାଟା – କହମ, ନିଶ୍ଚେ ଏଥିରେ ସୁନା ଅଛି ।"

ବୁଢ଼ା ଥିଏଁ ତା' ପୁଅକୁ ସ୍ୱାଗତ କରିବାକୁ ଆଉ ପୁଅର ଧନ ସୁରକ୍ଷିତ ରଖିବାକୁ ବାହାରକୁ ଦୌଡ଼ିଗଲା । "କି ସୁନା ? ଏଥିରେ କୁଟା-କାଠି ଛଡ଼ା ଆଉ କିଛି ନଥିବ ।"

ଥାନ୍ ସିଧା ଉପର ଛାତକୁ ଚାଲିଲା । ସିଡ଼ି ପାହାଚ କେଁ କେଁ ଡାକିଲା । କେତେବର୍ଷ ହେଲା ଯେପରି ଏଇଲେ ଭୁଷୁଡ଼ି ପଡ଼ିବ, ତଥାପି କେତେ ଦଶନ୍ଧି ବିତିଗଲାଣି ସେହିପରି ରହିଛି । ଲୋକେ କହନ୍ତି, ଫରାସୀ ଅମଳରେ ଏହା ତିଆରି ହୋଇଥିଲା ବୋଲି ଆଜିଯାଏଁ ଅକ୍ଷତ ଅଛି । ସେତେବେଳେ ପାଞ୍ଚଜଣଙ୍କ ପାଇଁ ତିଆରି ହେଉଥିବା ଘର ଏବେ ଦୁଇଶହ ଲୋକଙ୍କୁ ବିନା ସମସ୍ୟାରେ ନିଜ ଭିତରେ ରଖିପାରିବ ।

ଥାନ୍‌କୁ ଯେତେବେଳେ ସେମାନେ ଦେଖିଲେ, ଅଗଣାରେ ତାସ୍ ଆଉ ଜୁଆ ଖେଳୁଥିବା ଦଳେ ପିଲା ମୁଣ୍ଡଟେକି ଅନେଇଲେ ।

"ରାଜକୁମାର ଘରକୁ ଫେରିଛନ୍ତି ! ମହାରାଜ ମାଣ୍ଡ୍ରିନ୍ ଆମକୁ ଭୋଜିରେ ଆପ୍ୟାୟିତ କରିବେ !"

ବୁଢ଼ା ଥିଏଁ ଏହି ବ୍ୟଙ୍ଗନାମରେ ଡକା ହେଉଥିଲା – 'ମହାରାଜ ମାଣ୍ଡ୍ରିନ୍ ।' କାରଣ ସମସ୍ତେ ତାକୁ ଗୋଟେ ପଶୁବୋଲି ଯଦିଓ ଜାଣିଥିଲେ, ସେ ଆଉ ତା' ପୁଅ ଏଇ ଅନ୍ଧାରିଆ ଅପରିଚ୍ଛନ୍ନ ଜାଗାରେ ବେଶ୍ ଖୁସିରେ ଥିଲେ ଆଉ ଏହାକୁ ଘର ବୋଲି କହୁଥିଲେ । ଏଠି ସେ ଜନ୍ମଦିନ ଉତ୍ସବ ପାଳନ କରିବାକୁ ଭଲ ବି ପାଉଥିଲା ! ଯେତେବେଳେ ସେ ଏମିତି ଗୋଟେ ଭୋଜିର ଆୟୋଜନ କରୁଥିଲା, ପିଲାମାନେ ନିଃଶ୍ୱାସ ଚାପି ତା' କାରବାରକୁ ଲକ୍ଷ୍ୟ କରୁଥିଲେ । ଏକଦା ସେ ସହରରେ ଗୋଟେ ବଡ଼ କମ୍ପାନୀ ପାଇଁ କାମ କରିଥିଲା ଆଉ ଏଭଳି ଉତ୍ସବର ରୂପରେଖ, ସୁବାସ ସହିତ ବେଶ୍ ପରିଚିତ ଥିଲା । ସେ ଆଖପାଖରୁ ଦୁଇଜଣ ଅସହାୟ କବିଙ୍କୁ ଘୋଷାରି ଆଣୁଥିଲା ନିଜଘରକୁ ଆଉ ସେମାନଙ୍କ ସହିତ ଚିନାବାଦାମ ଖାଇ ବିଅର ପିଇ କିଛି ସମୟ କଟାଇ ଦେଉଥିଲା ଯେତେବେଳେ ସେମାନେ କବିତା ଆବୃତ୍ତି କରୁଥିଲେ । ପୁଣି ସେମାନେ କବିତାର

ଖଣ୍ଡିତ ଅଂଶଗୁଡ଼ିକୁ ବି ଭରଣା କରିପାରୁଥିଲେ ! ତାପରେ ପାଳିତ ହେଉଥିଲା ବର୍ଷଶେଷର ବିଦାୟ ଓ ନୂତନ ଚାନ୍ଦ୍ରମାସର ସ୍ୱାଗତ । ମହାନ୍ ମାଣ୍ଡ୍ରିନ୍‌ର ଭାଇ-ବନ୍ଧୁ, ଜ୍ଞାତିକୁଟୁମ୍ବ ଓ ଅନ୍ୟ ବନ୍ଧୁବାନ୍ଧବ ସେମାନଙ୍କ ଦୂର ଗାଁରୁ ଆସି ସହରରେ ଗଦା ହୋଇଯାଉଥିଲେ । ଅଧିକାଂଶବେଳେ ତାରି ସାହାଯ୍ୟରେ ହିଁ ସେମାନଙ୍କ ରହିବା ବ୍ୟବସ୍ଥା ବି ହୋଇଯାଉଥିଲା । ସେ ଥିଲା ଯେକୌଣସି ପ୍ରକାର ବ୍ୟବସ୍ଥା କରିବାରେ ଏକଦମ ଦକ୍ଷ । ତା ଭାଇ-ଭଉଣୀମାନଙ୍କର କିଛି ଶିକ୍ଷାଦୀକ୍ଷା ନଥିଲା, ତଥାପି ସେମାନଙ୍କ ନାମ ସରକାରୀ ଚାକିରି ତାଲିକାରେ ଥିଲା । ଜଣେ ସରକାରୀ ଦୋକାନରେ ପରିବା ବିକୁଥିଲା ଆଉ ଜଣେ ସୁରକ୍ଷା ଜଗୁଆଳୀ ଭାବରେ କାମ କରୁଥିଲା । ଅନ୍ୟ ସମସ୍ତଙ୍କ ପରି ପେନ୍‌ସନ୍ ପାଇବାର ଅଧିକାର ବି ସେମାନଙ୍କର ଥିଲା । ବିପ୍ଳବରେ ତାର ଅବଦାନକୁ ଅତ୍ୟଧିକ ପ୍ରଶଂସା କରାଯାଇଥିବା ସାର୍ଟିଫିକେଟ ନେଇ ଥିଏଁ ଯାଉଥିଲା ଆଉ ଦୁର୍ବଳମନା କର୍ମଚାରୀମାନଙ୍କୁ ଭୟଭୀତ କରାଇବାକୁ ଏହାର ବ୍ୟବହାର ସେ କରୁଥିଲା ! ସେ ପାଞ୍ଚ, ଛଅ, ସାତଥର ସେମାନଙ୍କ ପାଖକୁ ଯାଉଥିଲା ଦରକାର ପଡ଼ିଲେ କୋଡ଼ିଏଥର । ଖାଲି ହାତରେ, କିଛି ନଧରି, ସେ ଘଣ୍ଟା ଘଣ୍ଟା ଧରି କେବଳ ବସି ରହୁଥିଲା ସେଠି, ବଡ଼ପାଟିରେ କହି ମଝିରେ ମଝିରେ ଉଚ୍ଚସ୍ୱରରେ ଚିତ୍କାର କରୁଥିଲା । ଏହି ଉପାୟରେ ସେ ତାର ଦୁଇ ସାନଭାଇ, ଦୁଇ ସାନଭଉଣୀ ଆଉ ଡଜନେ ସମ୍ପର୍କୀୟଙ୍କୁ ସରକାରୀ କାର୍ଯ୍ୟାଳୟରେ ରଖେଇ ଦେଇଥିଲା । ସେମାନେ ସମସ୍ତେ ଉପଯୁକ୍ତ ରେଜିଷ୍ଟ୍ରେସନ କାର୍ଡ଼ ଆଉ ରେସନ କୁପନ ପାଇଥିଲେ । ଆଉ ବର୍ଷ ଶେଷରେ, ନିଜର ଛୋଟିଆ ଜାଗାଟିରେ ସେମାନଙ୍କୁ ଡକାଇ ଉତ୍ସବ ପାଳନ ପାଇଁ ଏକାଠି କରାଉଥିଲା । ପ୍ରତିବର୍ଷ ଏହା ଥିଲା ଏକା ପରି । ପାଣିଆ ମସଲା ଝୋଳରେ ଛୋଟିଆ ବତକଟିଏ ରନ୍ଧା ହୋଇଯିବ ଆଉ ଦଳେ ଲୋକ ଚାରିପଟେ ବସିଯାଇ ଏହା ଉପରେ ଝାମ୍ପ ମାରିବେ । ବୁଢ଼ା ଥିଏଁ ଠିକ୍ ମଝିରେ ବସିଥିବ, ଟିପ୍ପଣୀ ମାରୁଥିବ, ଉଦ୍ଧତ ସ୍ୱରରେ କଥା କହୁଥିବ, ବେଳେବେଳେ ପୋପ୍‌ଙ୍କ ଭଳି ରାଜକୀୟ ଠାଣିରେ ସମ୍ପର୍କୀୟମାନଙ୍କ ଭିତରେ ଚାଲୁଥିବ ଆଉ ଅଣ୍ଡା ପଛପଟେ ଥିବା ସୁନାକୁ ଛୁଇଁ ଦେଉଥିବ ଯେତେବେଳେ ସମ୍ପର୍କୀୟମାନେ ନିଜ ଭାଗର ବତକ ମାଂସ ଖାଇଚାଲିଥିବେ । ଏପରି କୌଣସି ମାଣ୍ଡ୍ରିନ୍ ବା ରାଜା କେଉଁଠି ନଥିବେ ଯିଏ ଅବସର ପରେ ଏମିତି ସନ୍ତୋଷ ଅନୁଭବ କରିଥିବେ, ଯେପରି ଥିଏଁ ସେଇ ମୁହୂର୍ତ୍ତରେ ଅନୁଭବ କରୁଥିଲା । 'ମହାରାଜ ମାଣ୍ଡ୍ରିନ୍' ତା' ପାଇଁ ଥିଲା ଉପଯୁକ୍ତ ଉପନାମ । କାରଣ ପ୍ରଚଣ୍ଡ ବର୍ଷାରେ, ଏପରିକି ମୃତ ମୂଷାଙ୍କ ପଚାଗନ୍ଧ ବା ପରିସ୍ରାଗନ୍ଧ ହେଉଥିବାବେଳେ ବି ଜଣେ ମାଣ୍ଡ୍ରିନ୍ ବା ରାଜା ହିଁ କେବଳ ଏତେ ସ୍ୱାଧୀନ ଭାବରେ ସମାନ ଉଲ୍ଲାସର ସହ ନିଜ ରାଜ୍ୟରେ ବାସ କରିପାରନ୍ତି ।

କ୍ଳାନ୍ତ ହୋଇପଡ଼ିଥିବା ଥାନ୍ ନିଜ ଅଖାଟିକୁ ଚଟାଣରେ ଫିଙ୍ଗିଦେଲା, ହେଲେ ପୁଣି

ସେଇଟିକୁ ଟେକିନେଲା ଆଉ ଛାତିରେ ଚାପିଧରିଲା । ସତର୍କ ଦୃଷ୍ଟିରେ କୋଠରି ଚାରିପଟକୁ ଅନାଇଲା । ଶେଷରେ ଅଖାଟିକୁ ଗୋଟେ କୋଣରେ ଗୁଞ୍ଜିଦେଲା, ଯେଉଁଠି ଗୋଟେ ହିଟର ଥିଲା ଯାହା ଉପରେ ସେ ନିଜର ରୋଷେଇ କରୁଥିଲା । ଏଇ ହିଟରକୁ ସେ ଆଉ ତା' ବାପା ମିଶି ଲୁହାଛଡ଼ ଗଳେଇ ଗୋଟେ ସରକାରୀ ଦୋକାନରୁ ଚୋରି କରିଥିଲେ । ଥାନ୍ ଅପ୍ରତିଭ ଆଖିରେ ବାପକୁ ଦେଖିଲା । ଥିଏଁ ଏମିତିରେ ପୃଥୁଳ ଆଉ ଶକ୍ତିଶାଳୀ ବି । ହେଲେ ଚୋରିକଲାବେଳେ ସେ ବିଲେଇଠାରୁ ବି ହାଲୁକା । ସାରାଦିନ ଏହି ପୂର୍ବତନ ଜଗୁଆଳୀଟିର ଆଖି ଖୋଜିବୁଲୁଥାଏ କୋଉଠୁ କ'ଣ ଉଠାଇ ଆଣିବ । ସେ ସବୁଜିନିଷ ଚୋରି କରୁଥିଲା – ମାଇପିଙ୍କ ଅନ୍ତର୍ବାସ, ଲମ୍ବା ଇଲେକ୍ଟ୍ରିକ୍ ତାର, ଏପରିକି ଅଗଣାରେ ଫୋପଡ଼ା ହୋଇଥିବା ପିଲାଙ୍କ ଝାଡ଼ା । ମଝିରେ ମଝିରେ ସେ ତାର ସବୁ ଲୁଟ୍‌ମାଲ୍ ଗୋଟେ ବଡ଼ ଅଖାରେ ପୂରାଇ ଗାଁକୁ ନେଇଯାଏ । ତାର ଗୋଟେ ଭାଇ ଏବେ ବି ସେଇଠି ଅଛି । ଭାଇଟି ତାର ଦଶଟି ପିଲାଙ୍କୁ ଧରି ସହରକୁ ଆସିବା ଅସମ୍ଭବ । ଥିଏଁ ବୁଢ଼ା ଚୋରାମାଲ ବଦଳରେ ଅଖାଏ ଆଳୁ କିମ୍ବା କିଛି ପରିବା ଆଣି ଫେରେ । ଆଉ ପାଖାପାଖି ଅଞ୍ଚଳର ସମସ୍ତେ ତାକୁ ଚୋର ବୋଲି ଜାଣିଥିଲେ ବି, କେବେ ଧରିବାକୁ ସମର୍ଥ ହୋଇନଥିଲେ ।

ଥାନ୍ ତା ବାପାର ଶିଷ୍ୟ ଥିଲା ସତ, ସେ କିନ୍ତୁ ବଡ଼ ବଡ଼ ଡକାୟତି କରୁଥିଲା । "ତୋ ଭଳି ଧତଡ଼ା ଆବର୍ଜନାରେ ମୁଁ ହାତ କଳା କରିପାରିବିନି !" ବୁଢ଼ାକୁ ତାଚ୍ଛଲ୍ୟ କରି ସେ କହୁଥିଲା । ସାଥୀମାନଙ୍କୁ ଧରି ଚାରିଆଡ଼େ ସେ ଖୋଜିବୁଲୁଥିଲା, କେଉଁଠି ତାକୁ ଜୀଇଁବାର ବାଟ ମିଳିଯିବ । ବେଳେବେଳେ ବାପକୁ ସେ ପଇସାପତ୍ର ଦେଉଥିଲା, କିନ୍ତୁ ବାପ–ପୁଅ କେବେ ଏକାଠି ଖାଇବା କେହି ଦେଖି ନଥିଲେ । ଉଭୟଙ୍କ ଭିତରୁ କେହି ଜଣେ ଆଗ ଖାଇନେବ ଆଉ ଜଣେ ପରେ । ହୁକ ପକେଇ ବିଜୁଳି ଚୋରିକରି ସେମାନେ ଦିନରାତି ରୋଷେଇରେ ଲାଗିଥାନ୍ତି । ବୁଢ଼ା ପ୍ରାୟ ଶସ୍ତାରେ ମାଛମୁଣ୍ଡ କିମ୍ବା ଘୁଷୁରି ହାଡ଼ ବଜାରରୁ କିଣିଆଣି ସିଝେଇ ଝୋଳ ପିଇଦିଏ । ଏପରିକି ରାନ୍ଧିବାକୁ କିଛି ନଥିଲେ ବି ସେ ହିଟରଟା ଲଗେଇ ଦେଇଥାଏ । ହେଲେ ତା' ପୁଅ କଥାରେ ସେ ଏକମତ ହୁଏ । ଓଠ ଚିପି ସେ କହେ, "ତୁମେ ଯଦି ଚୋରି କରିବାକୁ ଯାଉଛ ଭଲକରି ଏହା କରିବା ଉଚିତ । ମୁଁ ଯେମିତି ଚୋରିକରେ ସେଇଟା କିଛି ନୁହେଁ । ଖବରକାଗଜ, ରେଡ଼ିଓରେ ଦେଖୁନୁ ଲୋକେ ଲକ୍ଷ ଲକ୍ଷ ଚୋରିକରୁଛନ୍ତି, ଅଥଚ ତାଙ୍କର କିଛି ହେଉନାହିଁ । ମୁଁ ଗୋଟେ ଡରୁଆ କୁକୁଡା ଚିଆଁ, ଘାସ ଖାଉଛି ।"

ଏବେ ବୁଢ଼ା ଥିଏଁ ତା' ଛୋଟିଆ ଘରଟିରେ ଏପଟୁ ସେପଟ, ସେପଟୁ ଏପଟ ଘୂରିବୁଲୁଥିଲା ଆଉ ବାରମ୍ବାର ଅଖା ଆଡ଼କୁ ଅନାଉଥିଲା । ଭିତରେ ଭିତରେ ସେ ଫୁଟୁଥିଲା । ତା' ପୁଅ ଆଗରୁ କେବେ ଏତେ ବଡ଼ ବ୍ୟାଗ ଆଣିନଥିଲା । ଅତି ବଦାନ୍ୟ

ଭାବରେ ଖଣ୍ଡେ ପାଉଁରୁଟି ମଝିରୁ ଦି'ଖଣ୍ଡ କରି ସେ ଥାନ୍‌କୁ ଦେଲା, ପୁଅ ନୀରବରେ ଖାଇଲା । ଶେଷରେ ବୁଢ଼ା ଆଉ ଏ ନୀରବତା ସହିପାରିଲା ନାହିଁ ।

"ଏଥର ତୁ ଜାଲରେ ବଡ଼ମାଛ ଧରିଛୁ ନା ?"

"ନିଶ୍ଚୟ ।"

"କ'ଣ ଏଥିରେ ଅଛି ?"

"ଶଳା, ବଜ୍ଜାତ୍ ବୁଢ଼ା !" ପାଟିକୋଣରୁ ଛେପ ପୋଛି ଥାନ୍ ଗାଳିଦେଲା, ତାପରେ କୋଣକୁ ଯାଇ କମୋଡ଼ ଘୋଡ଼ଣୀଟା ଟେକିଦେଲା । ଘରସାରା ଖେଳିଗଲା ଭୟାନକ ମୂତ୍ରଗନ୍ଧ । କାମସାରି ଥାନ୍, ସେ କୋଣକୁ ଦୌଡ଼ିଗଲା ଯେଉଁଠି ସେ ମୁଣିଟା ରଖିଥିଲା, ଆଉ ଲମ୍ବା ହୋଇ ପଡ଼ିଯାଇ, ଘୁଙ୍ଗୁଡ଼ି ମାରିବା ଆରମ୍ଭ କରିଦେଲା । ତାର ଗୋଟେ ହାତ ମୁଣିର ଦଉଡ଼ି ଭିତରେ ପଶି ଦଉଡ଼ିକୁ ଯାବୁଡ଼ି ଧରିଥିଲା ମୁଣି ସମେତ ।

ପୁଅ ଶୋଇଥିଲାବେଳେ ବୁଢ଼ା ଥିଏଁ ଯେମିତି ଜଳନ୍ତା ଅଙ୍ଗାର ଉପରେ ବସିଥିଲା । ମୁଣିଭିତରେ କ'ଣ ଥାଇପାରେ ସେ ଅନୁମାନ କରିବାକୁ ଚେଷ୍ଟା କରୁଥିଲା, ହେଲେ କିଛି ଥଳକୂଳ ପାଉନଥିଲା । ସଂଜ ଗଡ଼ିଆସିଲାବେଳକୁ ସେ ପୁଅ ପାଖକୁ ଆସିଲା ।

"ହେ ଥାନ, ଉଠ୍, ତୋ ସାଙ୍ଗେ କଥା ଅଛି ।"

"କଣ ?"

"ତୋ ପାଖରେ କିଛି ମୂଲ୍ୟବାନ ଜିନିଷ ଅଛି, ଠିକ୍ ? ହେଲେ ହଙ୍ଗ୍ ପ୍ରତି ସତର୍କ ରହ । ସପ୍ତାହେ ହେଲାଣି ସେ ଫେରିଆସିଛି – ଜେଲ୍ କ୍ୟାମ୍ପରୁ ସେ ଖସିଆସିଛି ।"

"ଓଃ, ସତରେ ? ଥାନ୍ ମୁଣିଟି ଚାପିଧରି ଡେଇଁପଡ଼ିଲା ।

ହଙ୍ଗ୍ ଥିଲା ସେଇ ମୋଟୀ ମାଇକିନାର ପୁଅ, ଯାହା ନାଁ ଥିଲା ଫାନ୍ । ସେ ଆସିଥିଲା ନିଆନ୍ ଅଞ୍ଚଳରୁ ଯେଉଁଠାରେ ଲୋକେ ଅତି ଧୂର୍ତ୍ତ ବେପାରୀ ରୂପେ ଜଣାଶୁଣା । ପଚିଶବର୍ଷ ବେଳକୁ ହଙ୍ଗ୍ ପାଞ୍ଚଥର ଜେଲ୍ ଯାଇ ଫେରିଆସିଥିଲା । ପ୍ରତିଥର ଫେରିଆସିଲାବେଳକୁ ସେ ଆହୁରି ବଡ଼ ହୀରୋ ହୋଇ ଆସୁଥିଲା । ଥାନ୍ ଭଳି ଲୋକମାନେ ତାକୁ ଭୟ କରିବା ଛଡ଼ା ଆଉ କିଛି କରିପାରନ୍ତି ନାହିଁ । ଏଥର ତା' ବାପା ତାକୁ କହିଥିଲା, ହଙ୍ଗ୍ ଧର୍ଷଣ ଅପରାଧରେ ପାଞ୍ଚବର୍ଷ ପାଇଁ ଜେଲ୍ ଯାଇଛି । ଅଥଚ, ବର୍ଷେ ପୂରିନାହିଁ, ସେ ଖସିଆସିଲାଣି ।

"ପୁଲିସ ତା ପଛରେ ପଡ଼ିଛି ?"

"ସେ ସବାଉପର ମହଲାରେ କେଉଁଠି ଲୁଚିକି ଅଛି । ଏ ଆଖପାଖ ସାରା ଅଞ୍ଚଳରେ କେହି ପଦେ କଥା କହିବାକୁ ସାହସ କରୁନାହାନ୍ତି । ସେ ତାଙ୍କ ତଣ୍ଟି କାଟିଦେବ । ଦେଖ୍, ମତେ ସତ କହି ଦେ, କହ କ'ଣ ଅଛି ଏଥିରେ । ତାପରେ ଆମେ ଦୁହେଁ ମିଶି ଏହାକୁ ଜଗିବା । ହେଲେ ତୁ ଏକୁଟିଆ ... ମୁଁ ଜାଣେନି କେତେଦୂର ପାରିବୁ ।"

"ତୁମେ ପାଟି ବନ୍ଦକରି ରହ ।"

ଗୋଟେ କିଛି ପବିତ୍ର କାମ କଲାପରି, ବୁଢ଼ା ନିଜ ପାପୁଲିରେ ଥୁଃ ଥୁଃ ଛେପପକାଇ ନିଜ ମୁହଁ ସାମ୍ନାରେ ହଲେଇଲା । ଥାନ୍ ବାପ ପାଖକୁ ଲାଗିଆସିଲା ।

"ସେ ମୁଣିରେ ହାଡ଼ ଅଛି ।"

"ମତେ ଥଟ୍ଟା କରୁଛୁ ।"

"ହଁ, ତମ ଗୋଡ଼ ଟାଣୁଥିଲି । ଏଇ ହାଡ଼ଗୁଡ଼ିକ ସୁନାଠାରୁ ବେଶୀ ମୂଲ୍ୟବାନ । ସେସବୁ ଆମେରିକାନ ହାଡ଼ ।"

ବୁଢ଼ା ଥିଏଁର ନିଃଶ୍ୱାସ ବନ୍ଦ ହୋଇଆସିଲା । ଟିକେ ପରେ ଗୁଣୁଗୁଣୁ ହୋଇ କହିଲା, "ତୁ ସତ କହୁଛୁ ? ଯଦି ତୁ ଭୁଲ୍ କହୁଥିବୁ ତତେ ଏଥିପାଇଁ ବହୁତ ମୂଲ୍ୟ ଦେବାକୁ ପଡ଼ିବ ।"

ଦାଓ ଆଉ ମୁଁ ସେଗୁଡ଼ିକ ପାଇଛୁ । ସେସବୁ ଶତପ୍ରତିଶତ ଆମେରିକାନ୍ ହାଡ଼ । ଦାଓ ତା' ଦ୍ରବ୍ୟକୁ ଠିକ୍ ଜାଣେ । ସେଗୁଡ଼ିକୁ ସେ କଳିନେଇଛି । ଏପରିକି ସେଥିରେ ଗୋଟିଏ ହାର ଥିଲା, ଆଉ ଏହାର ହୁକ୍‌ରେ ଥିଲା ନାମଲେଖା ଚିହ୍ନଟ ଧାତବ ଲକେଟ – ଟନି ଡି । ୟୁନିଟର ନାମ ବି ଲିଭିଆସିଛି । ଦାଓ ପାଖରେ ଅଛି ସେ ନାମଲେଖା ଲକେଟ, ଯାହାକୁ ସେ ଏବେ ବିକିବାକୁ ଯାଇଛି ।

"ତୁ କେତେ ପାଇବୁ ?"

"ଦାଓ କହୁଥିଲା ଅନେକ ଲୋକଙ୍କୁ ତାକୁ ଦେବାକୁ ପଡ଼ିବ । ହେଲେ ଆମେ ଏହାକୁ ଖୋଳି ବାହାର କରିଛୁ, ଆମେ ପାଞ୍ଚଲକ୍ଷ ତ ନିଶ୍ଚୟ ପାଇବୁ । ଦାଓ ଆଉ ମୁଁ ଅଧା ଅଧା ବାଣ୍ଟିନେବୁ ଭାବିଛୁ ।"

"ଏ ମା ! ପାଞ୍ଚଲକ୍ଷ ତ ବହୁତ ବେଶୀ ।"

"ଦାଓ ବନ୍ଦର ପାଖାପାଖି ଅଞ୍ଚଳରେ ଯାଞ୍ଚ କରୁଛି । ସେଇଠି ସେ ଅପେକ୍ଷା କରିବ, ଆଉ ସୁବିଧା ଦେଖି ନାବିକଙ୍କୁ ବିକିଦେବ । ସେମାନେ ଜିନିଷ ନେଇ ଆମେରିକା ଚାଲିଯିବେ, ସେଠାରେ ସେମାନେ ଏଥିରୁ ବହୁତ ଲାଭ ପାଇବେ । ଦେଖ, ଯଦି ସବୁ କାମ ସୁରୁଖୁରୁରେ ହୋଇଯାଏ, ମୁଁ ତୁମକୁ ପଚାଶହଜାର ଦେବି । ଠିକ୍ ଅଛି ?"

"ତାହା ତୋ ଉପରେ ନିର୍ଭର କରେ । ହେଲେ ଯଦି ତୁ ଖାଇବାକୁ ଚାହୁଁଛୁ, ଥରକରେ ଅଳ୍ପ ଅଳ୍ପ କରି ଖା' । ଏତକ ବେଶୀ ଦିନ ଯିବ ।"

"ମତେ ଭାଷଣ ଦିଅନାହିଁ । ତୁମର ଏଥିରେ ସବୁଠାରୁ ବେଶୀ ଲାଭ । ଦେହରୁ ତୁମର ଟୋପେ ଝାଳ ବୋହିନାହଁ, ଅଧଲକ୍ଷେ ଟଙ୍କା ପାଇବାକୁ ଯାଉଛ ।"

"ଯା' ଶୋଇବୁ ଯା', କାଲିପାଇଁ କିଛି ଶକ୍ତି ସଂଗ୍ରହ କରିନେ । ମୁଁ ତୋ ଅଖାମୁଣି ଜଗିଛି ।"

ବୁଢ଼ା ଥିଏଁ ବାଉଁଶ ତାଟି ତିଆରି ସେ ଦୁଆର ମୁହଁରେ ଗୋଟେ ଜଗୁଆଳୀ କୁକୁର

ପରି ବସିରହିଲା, ହାତ–ଆଣ୍ଠୁ ଢାଙ୍କି ସେତିକି ଜାଗାରେ ଚାପି ହୋଇଗଲା । ବାପ ତା' ସମ୍ପତ୍ତି ଜଗିଥିବା ଦେଖି ଥାନ୍‌କୁ ନିଶ୍ଚୟ ଅଧିକ ସୁରକ୍ଷିତ ଲାଗିଲା : ସେ ଘୁଙ୍ଗୁଡ଼ିମାରିବା ଆରମ୍ଭ କରିଦେଲା । ପ୍ରଥମ ଧକ୍କାଟା ଚାଲିଗଲା ପରେ, ବୁଢ଼ା ସେଇ ଅଦ୍ଭୁତ ଅବସ୍ଥାକୁ ଆସିଗଲା ଯେମିତି ସେ ସର୍ବଦା ଘରକୁ ଅର୍ଥ ଆସିଲାବେଳେ ଅନୁଭବ କରିଥାଏ । ଘର ଭିତରକୁ କୌଣସି ଝଡ଼ଝଞ୍ଜା ଆଣିବାରେ ସମର୍ଥ ଥାନ୍ କେବେ ଏ ବାବଦରେ ନୀରବ ରହିପାରୁନଥିଲା । ବେଳେବେଳେ ସେ ଅର୍ଥର ପରିମାଣ ବହୁତ ବଢ଼ାଇ କହିବ ସିନା, ବାପକୁ ଛଦାମଟିଏ ସେଥିରୁ ଦେବ ନାହିଁ । ବେଳେବେଳେ ସେ ଲକ୍ଷ ଲକ୍ଷ ଯେ ରୋଜଗାର ନକରିଛି ତାହା ନୁହେଁ, ହେଲେ ଦିନ କେଇଟାରେ ସବୁ ଉଡ଼େଇଦେଇଛି ଜୁଆ ବା ଲଟୋ ଖେଳି । ଲକ୍ଷ୍ମୀ ସବୁବେଳେ ଚଞ୍ଚଳା, ସେ କେମିତି ଆଜି ତା ବାପକୁ ଟଙ୍କାମୁଣି ଜଗିବାକୁ ଦେଇନଥାନ୍ତା ? ବୁଢ଼ା ଥିଲା ଉଭୟ ଇର୍ଷାଳୁ ଓ ଭୟାଳୁ । ସେ ମୁଣ୍ଡ ଭିତରେ ଅସଂଖ୍ୟ ଯୋଜନା ବନାଇବା ଆରମ୍ଭ କରିଦେଲା । ହେଲେ ପୁଅର ଭୟଙ୍କର ପ୍ରକୃତି ପ୍ରତି ତାର ଥିଲା ପ୍ରାଣଭୟ, ତେଣୁ ପୁଅ ଗଣ୍ଠିଲିରେ କଦାପି ହାତ ମାରିବ ନାହିଁ । ଯେତେବେଳେ ବି ତା' ପୁଅ ମାଲ୍ ଧରିଆସିଛି, ସେ କେତେ ରହସ୍ୟମୟ ଭାବନାରେ କଲବଲ ହୋଇଛି ଆଉ ସୀମାହୀନ ଭୟରେ କମ୍ପିଉଠିଛି । ତା' ପାଟି ସମୁଦ୍ର ଦଳର ଅଲଣା ସ୍ୱାଦରେ ଭରିଯାଇଛି ଆଉ ତା' ଆଖି ଦୁଇଟି ଚକ୍ ଚକ୍ ହୋଇ ଚାରିପଟେ ଘୂରିବୁଲିଛି । ଏଇଲେ ସେ ଠିକ୍ ସେଇ ହିଂସା ଆଉ ଭୟ ଅବସ୍ଥା ଭିତର ଦେଇ ଗତି କରୁଥିଲା । ବାହାରର ଶବ୍ଦ ଶୁଣିବାକୁ ସେ କାନଦୁଇଟି ଟେକିଦେଲା । ମୁଣ୍ଡ ଉଠେଇଲା । ଏହା ଥିଲା ଖରାବେଳ ପରି ସ୍ପଷ୍ଟ । ସେ ଦେଖିଲା ଗୋଟେ କଳା ଆମେରିକୀ ଲୋକ, ଅସାଧାରଣ କଳା ଲୋକଟେ, ଦାନ୍ତ ଏକେବାରେ ଯେମିତି ଚୂନ ଧଉଳା ହୋଇଛି । କଳା ଲୋକଟି ଆଗେଇ ଆସି ବୁଢ଼ା ଥିଏଁର ମୁଣ୍ଡବାଳକୁ ସାଉଁଳେଇ ଚାଲିଲା ଗୋଟେ ହାତରେ, ଯେଉଁ ହାତଟି ଥିଲା କେବଳ ଗୋଟିଏ ହାଡ଼ । ବୁଢ଼ା ଘୁଞ୍ଚିଯିବାକୁ ଉଦ୍ୟମ କଲା, ହେଲେ ପାରିଲା ନାହିଁ । ସତେକି ତା ସାରା ଦେହରେ ଅଠା ବୋଳାହୋଇଥିଲା । ସେ ଥାନ୍‌କୁ ଡାକିଲା, କିନ୍ତୁ ତା' ସ୍ୱର ଶୁଣାଯାଉନଥିଲା । ସେ ଏପରି ଅସହଜ ଭାବେ ଶୀତଳ ହୋଇଯିବା ଦେଖି, କଳା ଲୋକଟି ଗୋଟେ ଦୀର୍ଘ, ନିଃଶବ୍ଦ ହସ ହସିଲା । ଅବାଧ ପରି ଥିଏଁ ପାଖରେ ଲାଗିକି ଠିଆହୋଇ ରହିଲା ; ତା' ମୁଣ୍ଡ ସେଠାରେ ଥିଲା ସତ, କିନ୍ତୁ ଦେହ କେବଳ ହାଡ଼ମୟ । ସେ ହସୁଥିଲେ ବି ଲାଗୁଥିଲା ଦୟନୀୟ । ଥିଏଁ ଏଥର ଡରିଗଲା ; ଗୋଡ଼ରେ କବାଟକୁ ଗୋଇଠା ମାରିଲା । କଳା ଲୋକଟି ଅଦୃଶ୍ୟ ହୋଇଗଲା । ନିଦ ଟଳମଳ ଆଖିରେ ଥାନ୍ ତା' ବାପାକୁ ପଚାରିଲା :

"ହଙ୍ଗ୍ ଆସିଥିଲା କି ?"

"ହଙ୍ଗ୍ କିଏ ? ଇଏ ତ କଳା ଲୋକଟେ ଥିଲା ।"

"କେଉଁ କଳା ଲୋକ ?"

"ମୁଁ ବୋଧେ ସ୍ୱପ୍ନ ଦେଖୁଥିଲି । ମୁଁ ଦେଖିଲି କଳା ଲୋକଟେ ମତେ ଦେଖି ହସୁଥିଲା ।"

"ତମେ କଳା ଲୋକଟାକୁ ସ୍ୱପ୍ନରେ ଦେଖିଲ ? ହରି ହେ, ମୁଁ ବି ତାକୁ ଦେଖିଲି । ମୁଁ ଏତେ ଡରିଯାଇଥିଲି ଯେ ତୁମକୁ ଡାକିବାକୁ ଚାହୁଁଥିଲି, ହେଲେ ପାରିଲି ନାହିଁ ।"

ଥାନ୍ ଆଲୁଅ ଜଳାଇଦେଲା । ଉଭୟ ଚୋର ପିତା–ପୁତ୍ର ପ୍ରଥମଥର ପାଇଁ ଅନୁଭବ କଲେ ଯେ ଗୋଟିଏ ଲୋକ ଦୁଇଜଣଙ୍କ ସ୍ୱପ୍ନ ଉପରେ ଏକ ସମୟରେ କିଛି ରହସ୍ୟମୟ ପ୍ରଭାବ କିପରି ଜାହିର୍ କରିପାରେ । ଏହା ମଣିଷର ଅର୍ଥ ପ୍ରତି ଲୋଭଠାରୁ ବି ଶକ୍ତିଶାଳୀ ଥିଲା, ଏପରିକି ତାର ନୃଶଂସତାଠାରୁ ଆଉ ମୂର୍ଖତାଠାରୁ ଅଧିକ ଶକ୍ତିଶାଳୀ ।

ବୁଢ଼ା ଥିଏଁ ପଚାରିଲା, "ସେ ତୁମକୁ କିଛି କହିଲା କି ?"

ଥାନ୍ ଉତ୍ତରଦେଲା, "ନା, ସେ କେବଳ ହସିଲା । ହେଲେ ଗୋଟେ ଦୁର୍ଗନ୍ଧ ବି ମୋ ନାକରେ ବାଜିଲା ।"

ବାପ କହିଲା, "ସେ ହାଡ଼ କବଳରୁ ମୁକ୍ତ ହୋଇଯା । ସେ ଭୟାନକ ହାଡ଼ଗୁଡ଼ା ଏଠାରେ ରଖିବା ଅତି ବିପଜ୍ଜନକ । ମତେ କିଛି ଧୂପକାଠି ଦେଲୁ ।"

ଥିଏଁ ତିନୋଟି ଧୂପକାଠି ଜଳାଇ ଗୋଟେ ଚାଉଳ ଡିବାରେ ପୋତିଦେଲା । ତାପରେ ଡିବାଟି ନେଇ ଅଖାମୁଣି ଉପରେ ଥୁଆହୋଇଥିବା ପାଣି ଗ୍ଲାସ୍‌ଟି ପାଖରେ ରଖିଦେଲା । ତା' ଜୀବନରେ ସେ କେବେ କାହାକୁ ପ୍ରାର୍ଥନା କରିନଥିଲା । ହେଲେ ଏଇ ମୁହୂର୍ତ୍ତରେ, ତା ଉପରେ କିଛି ଗୋଟେ ଓଜନିଆ ଜିନିଷ ଲଦି ହୋଇଗଲା ପରି ଲାଗିଲା ଆଉ ସେ ନଇଁପଡ଼ି ମୁଣିଟିକୁ ମୁଣ୍ଡିଆ ମାରିଲା ।

ତୁମେ ଯଦି ଦୈବ, ଆଉ ସର୍ବଦ୍ରଷ୍ଟା, ତେବେ ଦୟାକରି ଶୋଇଯାଅ । ଆସନ୍ତାକାଲି ମୋ ପୁଅ ଯେମିତି ହେଲେ ତୁମର ଘରକୁ ଫେରଯିବା ବାଟ ବାହାର କରିବ । ସେ ଭଲକାମ କରୁଛି, ସେଥିରେ କିଛି ବି ମନ୍ଦ ନାହିଁ । ଦୟାକରି ତୁମ ମା', ବାପ, ସ୍ତ୍ରୀ ପାଖକୁ ଫେରିଯାଅ – ଜଙ୍ଗଲରେ ଫୋପଡ଼ା ହେବାଠାରୁ ଏହା ବହୁତ ଭଲ ।

ଥାନ୍ ଚୁପ୍‌ଚାପ୍ ତା' ବାପାର ପ୍ରାର୍ଥନା ଶୁଣିଲା । ସତକହିବାକୁ ଗଲେ, ସେ ଜମାରୁ ବିଶ୍ୱାସ କରୁନଥିଲା ଯେ 'ଟନି ଡି' ନାମକ କେଉଁ ଗୋଟେ ସୈନିକର ଆତ୍ମା ତା' ଉପରେ କ୍ରୋଧ କରିଥିଲା । ସେ ନିଜେ ସପ୍ତମ ଶ୍ରେଣୀ ପାସ୍ କରିଥିଲା । ସେ ବୁଝିପାରୁଥିଲା କାହିଁକି 'ଟନି ଡି'ର ହତ୍ୟା ହୋଇଥିଲା । କୁକର୍ମ – କୁକର୍ମ । ସେ କେତେ କାହାକୁ ହତ୍ୟାକରି ମାରିଥିଲା, ତେଣୁ ତାର ହତ୍ୟା ହେଲା । ଥାନ୍ ଯେହେତୁ ତାକୁ ପାଇଥିଲା, ଏବେ ସେ ଥାନ୍‌କୁ ପାଉଣା ଦେବ । ସରଳ କଥା । ତାଛଡ଼ା ଥାନ୍ ଏତିକି ବି ବୁଝିଥିଲା ଯେ ଆମେରିକା ଲୋକମାନେ ଟଙ୍କାପଇସା କାରବାରରେ ଏକଦମ୍ ସିଧାସଳଖ ।

ପ୍ରାର୍ଥନା ସାରି ବୁଢ଼ା ଥୁଏଁ ପୁଣିଥରେ ତା' ପୁଅକୁ ଶୋଇପଡ଼ିବାକୁ କହିଲା । ହେଲେ, ଆଲୁଅ ଲିଭେଇ ଦେବାର ସାହସ ତାର ନଥିଲା । ସେ ନିର୍ବେଦ ହୋଇ ମାଂସ ପିଣ୍ଡୁଳାଟେ ପରି ଦୁଆର ପାଖେ ବସିରହିଲା ଦିନର ଆଲୁଅକୁ ଅପେକ୍ଷା କରି । ତଥାପି ଭୋର୍ ହୋଇ ଆସିଲାବେଳକୁ କେମିତି କେଜାଣି ତା' ଆଖି ଲାଗିଯାଇଥିଲା । ଅତି ସ୍ପଷ୍ଟଭାବରେ ସେ ଦେଖିପାରିଲା ଦୁଇଟି ପାଦ, କେବଳ ହାଡ଼ର, ତା ଚାରିପଟେ ଅନବରତ ଘୂରିଚାଲିଛି ବୃତ୍ତାକାରରେ – ଦୁର୍ଗନ୍ଧ ଅସହ୍ୟ । ଆତଙ୍କିତ ହୋଇ ସେ ଆଖି ବନ୍ଦକରିଦେଲା, ହେଲେ ତଥାପି ସେ ଶୁଣିପାରୁଥିଲା ତା ଚାରିପଟେ ପାଦଶବ୍ଦ ଘୂରୁଥିବାର, ଠିକ୍ ଧାତୁବାଜି ଠକ୍ ଠକ୍ ହେଲା ପରି । ସକାଳ ହେଲାଯାଏଁ ସେ ମୂର୍ଚ୍ଛାହୋଇ ପଡ଼ିରହିଲା – ସମ୍ପୂର୍ଣ୍ଣ ଜ୍ଞାନଶୂନ୍ୟ ।

ଥାନ୍ ଯେଉଁ ତିନିଦିନ କୁଆଡ଼େ ପଳାଇଥିଲା, ବୁଢ଼ା ଗୋଟିଏ ରାତି ବି ଶୋଇନଥିଲା । ସେଇ ଏକା ସୈନିକର ସ୍ୱପ୍ନ ସେ ଦେଖିଚାଲିଥିଲା ।

ବେଳେବେଳେ ତା' ଦେହସାରା ମାଂସ ବି ଥିଲା, ସେତେବେଳେ ସେ ସେଇ କଳା ଫରାସୀ ସୈନିକ ପରି ଦେଖାଯାଉଥିଲା ଯିଏ ଯୁଦ୍ଧପରେ ଗୋଟେ ଡ୍ରାଇଭର ହୋଇଥିଲା । ବୁଢ଼ା ଥୁଏଁ ସେତେବେଳେ ଯୁବକ ଥିଲା । ସେ ମନେପକାଇଲା କିପରି ଫରାସୀ ସୈନ୍ୟଟି ଥରେ ନିଜ କାର୍ ଅଟକାଇ ତାକୁ ସିଗାରେଟ୍ ଦେଇଥିଲା । ହେଲେ ଫରାସୀ ସୈନ୍ୟଟି ଏ ମୌନ ପ୍ରକୃତିର ରହସ୍ୟମୟ ଟନି ତୁଳନାରେ କେତେ ଭଲଥିଲା । ଟନି ବି ଦେଖାଯାଉଥିଲା ଅବିକଳ ଫରାସୀ ସୈନ୍ୟବିଭାଗର ସେଇ ଲୋକଟି ପରି, ହେଲେ ସେ କେବେ ପଦେ ବି କଥା କହିନଥିଲା, କେବଳ କୋଠରିର ଗୋଟେ କୋଣରେ ଠିଆହୋଇ ରହୁଥିଲା ଆଉ ଅନାଉଥିଲା । ବୁଢ଼ା ଥୁଏଁର ନାକରେ ବାଜୁଥିଲା ସଦ୍ୟ ମାଟିତଳୁ ବାହାରିଥିବା ହାଡ଼ ଆଉ ମାଂସର ଦୁର୍ଗନ୍ଧ । ଆଉ କେତେବେଳେ ସେ ଦେଖୁଥିଲା ଗୋଟେ ସ୍ଥିର ଆଲୋକିତ ଧଳା କଙ୍କାଳ ମୂନିଆ ନଖରେ କାନ୍ଥ ରାମ୍ପୁଡ଼ି ଘରସାରା ଚାଲୁଥିଲା ; ଏହା ଚଢ଼ିଯାଉଥିଲା ଖଟ ଉପରେ, ଝରକା ରେଲିଂରେ ଆଉ ତାପରେ ଯେମିତି ତା' ଓଠ ଆଉ ଆଖିର ଗହ୍ୱର ଦୁଇଟି ତାକୁ ସ୍ଥିର ହୋଇ ଦେଖୁଥିଲା । ବୁଢ଼ାର ହୃଦୟ କେବେ ବି ଦୁର୍ବଳ ନଥିଲା, ହେଲେ ଏବେ ଏବେ ତା' ଦେହ ସବୁବେଳେ ଥରୁଥିଲା ; ଶୋଇବା କଥା ଭାବିଲେ ତ ତା' ଅଙ୍ଗପ୍ରତ୍ୟଙ୍ଗ ପାଣିହୋଇ ନରମି ଯାଉଥିଲା । ଦିନବେଳେ, ସେ ଦୁଆରେ ତାଲା ପକେଇ ପାଖ ଛକ ଉପର ପାର୍କକୁ ଚାଲିଯାଉଥିଲା । ସେଇଠି ଗୋଟେ ବେଞ୍ଚ ଉପରେ, ଯେଉଁଠି ତଥାପି ସାରାରାତି ମୈଥୁନର ଦାଗ ରହିଥାଏ, ତାରି ଉପରେ ସେ ଶୋଇପଡୁଥିଲା । ଖରା କି ଝଡ଼କୁ ଖାତିର ନକରି, ସେଇଠି ହିଁ ସେ ଭଲ ଶୋଉଥିଲା । ହେଲେ ରାତିରେ ତ ଘରକୁ ଫେରିବାକୁ ହେବ । ରାତିସାରା ଲାଇଟ ଜାଳି, ରେଡ଼ିଓ ନବ୍‌ଟାକୁ ସେ ଘୂରାଉଥିଲା ।

ଏପରିକି, ମିସେସ୍ ଫାନ୍ ଅନୁକରଣରେ ଝର୍କାବାଟ ଦେଇ ବାହାରକୁ କିଛି ଲୁଣ ଫିଙ୍ଗୁଥିଲା ଆଉ ଧୂପକାଠି ଜଳେଇ ଦୁଆର ମୁହଁ ପାଖେ ପୋତିଦେଉଥିଲା । ତା' ପାଖଘରେ ରହୁଥିବା ଜନ୍ତୁମାନଙ୍କ ଶବ୍ଦ ବି ସେ ଶୁଣୁଥିଲା, ଜେଟ୍ ଆଉ ତା' ଯୁବତୀ ସ୍ତ୍ରୀ । ଜେଟ୍ ବଜାରରେ କୁକୁର ମାଂସ ବିକେ । ସେ ତା' ପ୍ରଥମ ସ୍ତ୍ରୀକୁ ଛାଡ଼ିଦେଇଥିଲା କାରଣ ସେ ଗାଉଁଲି ଥିଲା ।

ସହରକୁ ଆସି ସେ କୁକୁର ମାଂସ ଦୋକାନ ଖୋଲିଥିଲା ଆଉ ଧୀରେ କୌଶଳ କରି ଏହି ସର୍ବସାଧାରଣ କୋଠାରେ ଜାଗାଟିଏ ପାଇଥିଲା । କୋଉଠୁ କେଜାଣି ସ୍ତ୍ରୀଲୋକଟିଏ ପାଇ ଘରକୁ ଆଣିଲା । ଶ୍ୟାମଳରଙ୍ଗର ପାହାଡ଼ି ଝିଅଟି, ସ୍ୱର ତା'ର ଚଢ଼େଇର ସ୍ୱର ପରି । 'କାମେ' ସାବୁନରେ ଗାଧୋଇ, ଥାଇଲାଣ୍ଡ ନିର୍ମିତ ଅଣ୍ଡରଓୟାର ପିନ୍ଧି ଆଉ ଚୀନ୍ ନିର୍ମିତ ସେଣ୍ଟ ବ୍ୟବହାର କରି କରି ସେ ପାଗଳପ୍ରାୟ ହୋଇଗଲା । ଜେଟ୍ ତା' ନବପରିଣୀତାକୁ ଛୁଆଟି ପରି ଗେହ୍ଲା କରୁଥିଲା । ତା' ପାଇଁ ସବୁଜିନିଷ କିଣି ଆଣିବାକୁ ବ୍ୟାକୁଳ ହେଉଥିଲା ତାହେଲେ ରାତିରେ ଗୋଟେ ବ୍ୟାକୁଳ, ଦ୍ୱିଧାହୀନ, ଉଦ୍ୟତ ନାରୀର ସୁଖ ସେ ଦେବ ଆଉ ଖୁସି ବି ହେବ ତାଭଳି କାମୁକ ପୁରୁଷକୁ ପାଖରେ ପାଇ, ଯାହାକୁ ମଦ୍ୟ ଓ କୁକର ମାଂସ ଅତିରିକ୍ତ ଶକ୍ତି ଦେଇଛି । ଏପରିକି, ଜେଟ୍ ପତ୍ନୀ ପାଇଁ ଗୋଟେ ହାତକଟା 'ରିପୋର୍ଟର' ସାର୍ଟ ଆଉ ଖାକି ପ୍ୟାଣ୍ଟ, ଜୋତା ଆଣି ଦେଇଥିଲା । ବଜାରରେ ଯାହାକିଛି ସବୁଠାରୁ ନୂଆ ଫେସନ ସେ ଯୁବତୀମାନଙ୍କ ଦେହରେ ଦେଖୁଥିଲା, ସବୁବେଳେ ଚାହୁଁଥିଲା ତା' ସ୍ତ୍ରୀ ବି ସେଇମିତି ପିନ୍ଧୁ, ତାହେଲେ ସେ ବହୁତ ଖୁସି ହେବ ।

ଗତ କେତେ ରାତି ଧରି ବୁଢ଼ା ଥିଏଁର ଏମୁଣ୍ଡୁ ସେମୁଣ୍ଡ ଚାଲିବା ଏହି ଦମ୍ପତିଙ୍କ ପ୍ରେମ ଦିଆନିଆରେ ଘୋର ବ୍ୟାଘାତ ସୃଷ୍ଟି କରିଛି । ଜେଟ୍‌ର ସ୍ତ୍ରୀ ହଲଚଲ ନହୋଇ ଖଟରେ ପଡ଼ିରହି ତା' ପଦପାତକୁ ଶୁଣେ । ଗୋଟେ ବାଘ ପାଖରେ ବାଘୁଣୀଟି ଅବଶ୍ୟ ନିସ୍ତେଜ ଅନୁଭବ କରେ, ତଥାପି ଶେଷରେ ଦିନେ, ସେ ନିଜ ମୁଣ୍ଡଟିକୁ ଜେଟ୍‌ର ଗନ୍ଧିଆ କାଖ ସନ୍ଧିରେ ଗୁଞ୍ଜିଦେଲା । କାଖର ଝାଳ ଗନ୍ଧାଉଥିଲା ସେଇମାନଙ୍କ ଝାଳପରି ଯେଉଁମାନେ କୁକୁର ମାଂସ ଖାଆନ୍ତି । ଯେତେବେଳେ ତା' ସ୍ୱାମୀକୁ ତା' ପାହାଡ଼ି ଝରଣା ସ୍ୱରରେ କହିଲା, "ବୁଢ଼ା ଥିଏଁକୁ ଦେଖିଲେ ମତେ ଡରମାଡୁଛି !" ଜେଟ୍ ତା' ମାଇପର କେଶରାଶିକୁ ସେଇମିତି ଆଦର କଲା ଯେମିତି ସେ ଟି.ଭି.ର ବେଡ଼ରୁମ୍ ଦୃଶ୍ୟରେ ଦେଖିଥିଲା । ସେହି ସିନେମାମାନଙ୍କର ଅଭିନେତାମାନଙ୍କୁ ଅନୁକରଣ କରିବାକୁ ଚାହିଁଲା, ତାଙ୍କରି ଭଳି ଦୁଇଧାଡ଼ି କୋମଳ କଥା କହିବ ଯାହା ତା' ସ୍ତ୍ରୀକୁ ଚାଟୁପୂର୍ଣ୍ଣ ମନେହେବ ଆଉ ମାଇକିନା ତାକୁ ପ୍ରେମରେ ଭରିଦେବ । ହେଲେ ତା' ପାଟି ତ ଏଭଳି କଥାରେ ଅଭ୍ୟସ୍ତ ନଥିଲା ; ଶବ୍ଦ କିଛି ତାକୁ ପଇଟିଲା ନାହିଁ । "ମା ମରୁ ଶଳାର । ବୁଢ଼ାଟା

ବଦ୍ଧପାଗଳ । ତୁ ଶାଳୀ କାହିଁକି ବ୍ୟସ୍ତ ହେଉଛୁ ? ଏଠିକି ଆ' । ଅଭିଶାପ ପଡୁ ତା' ଉପରେ, କହିଲୁ, ତୁ ଆଜିକାଲି ଏତେ ମୋଟୀ କେମିତି ହୋଇଯାଉଛୁ ? ଠିକ୍ ଗୋଟେ ଚଞ୍ଚା ହୋଇଥିବା ଘୁଷୁରି ଯେମିତି ।"

ଢେଟ୍ ଆଉ ତା' ସ୍ତ୍ରୀର ହସ କାନ୍ଥ ଟପି ଭାସିଆସିଲା ଯେମିତି ମୂଷାମାନେ ରାତିରେ ବାହାରି ଅଳିଆଗଦାରୁ ଦାନା ଖୋଜି ଚାଲିଛନ୍ତି । ଏ ଧ୍ୱନି ବୁଢ଼ା ଥିଏଁକୁ ଶାନ୍ତ କରିଦେଲା । ସେ ରେଡ଼ିଓ ନବ୍ ବୁଲାଇଲା, ସବୁ ଲାଇଟ ଜାଳିଦେଲା ଆଉ ରାତି ସରିବାକୁ ଅପେକ୍ଷା କଲା ।

ଶେଷରେ ଥାନ୍ ଫେରିଲା, ଉତ୍ତେଜିତ ହୋଇ, କାନ୍ଧରେ ତାର ଗୋଟେ ବିରାଟ ନୋଟ୍‌ଭର୍ତ୍ତି ବ୍ୟାଗ୍ । ବାପକୁ ଅନାଇ ଦାନ୍ତ ଦେଖାଇ ସେ ହସିଲା ।

"ମୁଁ ଗୋଟେ ଚମତ୍କାର କାରବାର କରିଆସିଛି ।"

ଘରକୁ ସେ ଆଣିଥିଲା କଦଳୀପତ୍ରରେ ବନ୍ଧା ଘୁଷୁରି ଅନ୍ତ, ଚିଙ୍ଗୁଡ଼ି ସସ୍ ଆଉ ତିନିକିଲୋ ନୁଡୁଲ୍‌ସ୍ ଗୋଟେ ମୁଣିରେ । ଗୋଟାଏ ଗେଣ୍ଡାରେ ବାପ-ପୁଅ ପୂରା ମୁଣିଟାଯାକ ଘୁଷୁରି ମାଂସ ଆଉ ନୁଡୁଲ୍‌ସ୍ ଗିଳିଦେଲେ । ହେଲେ ବୁଢ଼ା ଚାରିପଟକୁ ଅନେଇଲା ବେଳକୁ ନୋଟଭର୍ତ୍ତି ବ୍ୟାଗ୍‌ଟା ଅନ୍ତର୍ଦ୍ଧାନ ହୋଇଯାଇଥିଲା ।

"ତୁ କେଉଁଠି ତାକୁ ଲୁଚେଇ ରଖିଛୁ ?"

"ଏଇ ଘରେ ଆଉ କେଉଁଠି ? ଦେଖ, ମତେ ଦିନସାରା ବାହାରେ ରହିବାକୁ ପଡ଼ିବ । ଫେରିଆସିଲା ମାତ୍ରେ, ତୁମେ ତୁମ ଅଧଲକ୍ଷ ପାଇଯିବ – ଭଦ୍ରଲୋକର ପ୍ରତିଜ୍ଞା ।"

ଥାନ୍ ଘର ଛାଡ଼ିଲା ମାତ୍ରେ, ବୁଢ଼ା ଚୁପ୍‌ଚାପ୍ ବସିରହିଲା ନାହିଁ । ସାଙ୍ଗେ ସାଙ୍ଗେ ସେ ଟଙ୍କା ପାଇଁ ଘରସାରା ଅଣ୍ଡାଳି ପକାଇଲା । ଘରର ପ୍ରତିଟି କୋଣ-ସନ୍ଧି ତାକୁ ଜଣା । ହେଲେ କିଛି ପାଇଲା ନାହିଁ । ଖରାବେଳକୁ ସେ କ୍ଳାନ୍ତ ହୋଇଯାଇଥିଲା । ଚଟାଣ ମଝିରେ ଲମ୍ବାହୋଇ ଗଡ଼ିପଡ଼ି ସେ ଭାବିଲା, ଭାବି ଲାଗିଲା । କୋଉଠି ରହିଲା ମୁଣିଟା ? ସେ ଚାହୁଁଥିଲା କେବଳ କେତେଟା ନୋଟ୍ ଉଠେଇ ନେବାକୁ । ତା' ମାଆ ବି ଜାଣିପାରିବ ନାହିଁ ଏତକ ଯାଇଛି ବୋଲି । ଟଙ୍କା କଥା ଭାବୁ ଭାବୁ ସେ ଶୋଇପଡ଼ିଲା – ହେଲେ ଯେତେବେଳେ ଦେଖିଲା କଙ୍କାଳଟି ଛାତ ବିମ୍ ଉପରେ ଚାଲୁଛି ସେ ଚଟ୍‌କିନା ଉଠିପଡ଼ିଲା ଆଉ କଙ୍କାଳଟିକୁ ଭର୍ତ୍ସନା କଲା ।

"ତୋ ମା' ମରୁ ! ତୁ ତୋ ପିତୃଭୂମିକୁ ଯାଉଥିଲୁ । କ'ଣ ପାଇଁ ଏଠାକୁ ପୁଣି ଫେରିଆସିଲୁ ? ତୁ କାହିଁକି ମତେ ଡରେଇବାକୁ ଚାହୁଁଛୁ ?"

ନରକଙ୍କାଳ ସେଇଠି ସେମିତି ରହିଲା, କେବଳ ମଝିରେ ମଝିରେ ଯାହା ନିଜ ଖପୁରିଟାକୁ ହଲେଇ ଦେଉଥିଲା । ହାଡ଼ରେ ହାଡ଼ ବାଜି ଘୋଡ଼ାମାନେ ଦ୍ରୁତିଗତିରେ

ଦୌଡ଼ିବା ପରି ଶୁଭୁଥିଲା । ବୁଢ଼ା ଡରିଗଲା । ସେ ଅସଂଯତ ଭାବରେ ହାତ ହଲାଇଲା ଯେମିତି କଙ୍କାଳ ଷର ରହିବ, ହେଲେ ଏହା ଆହୁରି ଜୋର୍ ଚାଲିଲାଗିଲା । ଉଠିଲା ପର୍ଯ୍ୟନ୍ତ ନିଜ ସ୍ୱପ୍ନରେ ବୁଢ଼ା କଙ୍କାଳଟିକୁ ଘଉଡ଼ାଉଥାଏ । ତାକୁ ଶେଷରେ ଭାରି ଫମ୍ପା ଲାଗିଲା, ହାଲିଆ ଲାଗିଲା, ବାନ୍ତି ମାଡ଼ିଆସିଲା । ଖୁବ୍ ଜୋର୍ ଥଣ୍ଡା ଧରିଲା ପରି ତାର ସାରା ଦେହ ଦରଜ ହୋଇଯାଇଥିଲା ।

ପରଦିନ ବୁଢ଼ା ପୁଣି ତା' ବେଞ୍ଚ ଉପରକୁ ଚାଲିଗଲା ଶୋଇବାକୁ । ଉପରଓଳି, ଥାନ୍ ଘରକୁ ଫେରିଆସିଲା, ଆଉ ସାଙ୍ଗେ ସାଙ୍ଗେ ପାର୍କକୁ ଗଲା । ବାପର ଗଳା ପାଖରୁ ଧରି କହିଲା :

"ଘରକୁ ଆସ ମୋ ସାଥିରେ । ବର୍ତ୍ତମାନ !"

ପୁଅର ନାଲିଆଖି ଆଉ କ୍ରୋଧ ଜର୍ଜରିତ ଚିପାଓଠ ଦେଖି, ବୁଢ଼ା ଥିଏଁ ତା' ପଛେ ପଛେ ଦୌଡ଼ିଆସିଲା । ଥାନ୍ ଆଗ ଘରେ ପଶିଗଲା, ବୁଢ଼ା ଯେମିତି ଘର ଭିତରେ ପଶିଛି, ଥାନ୍ ବାପ ବେକଟାକୁ ଧରିପକାଇଲା । "ମୋ ନୋଟ୍ ମୁଣି କାହିଁ ?"

"ମତେ କାହିଁକି ପଚାରୁଛୁ ?" ବୁଢ଼ା ଥିଏଁ କାବା ହୋଇଗଲା ।

"ମୁଁ ତ ମୁଣିଟାକୁ ଇଟାଗଦା ତଳେ ରଖିଥିଲି । ତମେ ନେଇ କୋଉଠି ରଖିଛ ?" ବୁଢ଼ା କେବଳ ନିଜ ମୁଣ୍ଡଟିକୁ ହଲେଇ ପାରିଲା । ଉଁ କି ଚୁଁ ତା' ପାଟିରୁ ବାହାରିଲା ନାହିଁ । ବାପକୁ ଦେଖି ଥାନ୍‌ର ସନ୍ଦେହ ବଢ଼ିଲା । ସେ ଏକେବାର ରାଗରେ ପାଚିଗଲା ।

"ସେ ଅର୍ଥ ମୋ ଝାଳ ଆଉ ଲୁହର ଅର୍ଜନ । ବାନ୍ତିକର, ବାହାରକର ସବୁ – ତୁମେ ତ ଏତେଗୁଡ଼େ ଟଙ୍କା ଖାଇପାରିବ ନାହିଁ, ତିନିଲକ୍ଷ ! କିଛି ତ ଅଳ୍ପ ପରିମାଣ ନୁହେଁ !"

"ମୁଁ ଏ ଟଙ୍କା ନେଇନାହିଁ !"

"ତୁମଛଡ଼ା ଆଉ କିଏ ନେବ ? ବାନ୍ତି କର !"

ବୁଢ଼ା ଥିଏଁ ଧୀର ସ୍ୱରରେ କହିଲା :

"ହଁ, ମୁଁ ଏହାକୁ ଖୋଜିଥିଲି : ଏଥିରୁ କିଛିଟା ଉଠେଇନେବାକୁ ବି ଭାବିଥିଲି । ହେଲେ ଖୋଜି ଖୋଜି ପାଇଲି ନାହିଁ । ଶପଥ କରି କହୁଛି, ଯଦି ତତେ ମୁଁ ମିଛ କହୁଥିବି ମୋ ଉପରେ ଟ୍ରେନ ମାଡ଼ିଯିବ, ଚକାତଳେ ଚାପି ଖଣ୍ଡ ଖଣ୍ଡ କରି ଚୂନା କରିଦେବ !"

"ବଦ୍‌ମାସ, ଆବର୍ଜନା ! ମୋ କଥା ଶୁଣୁଛ ? ବାନ୍ତି କର । ସବୁ ନୋଟ୍ ବାନ୍ତି କରି ବାହାରକର ନହେଲେ ତମ ତଣ୍ଟି ଚିପିଦେବି, ପାଟି ଭିତରୁ ଜିଭ ଉପାଡ଼ି ଆଣିବି !"

ସେ ବୁଢ଼ା ଆଡ଼କୁ ଚିହିଙ୍କି ଆସିଲା ଆଉ ଇଟାଖଣ୍ଡ ପରି ବାପର ଘଣ୍ଟିକାଟାକୁ ଗଳାରୁ ଧରିପକେଇ ଚିପିଲାଗିଲା । ବୁଢ଼ା ଥିଏଁ ଗୋଟେ ବୁଡ଼ିଯାଉଥିବା କୁକୁର ପରି ଭାଉଭାଉ ହୋଇ ଚିଲ୍ଲେଇଲା ।

"ବାନ୍ତିକର, ବାହାରକର । ତୁମେ ଏକୁଟିଆ ତ ଏତେଗୁଡ଼େ ଗିଳିପାରିବ ନାହିଁ । କାଢ଼, ତାହେଲେ ମୁଁ କୁଆ ମାଲିକକୁ ତା' ପାଉଣା ଦେଇଦେବି ।"

"ପ୍ରତିଜ୍ଞା କରି କହୁଛି, ମୁଁ ନେଇ ନାହିଁ ।

"ତୁମେ ପ୍ରତିଜ୍ଞା କରୁଛ ? ତୁମେ ଗୋଟେ କୁକୁର । ଯଦି ସତରେ ନେଇନାହଁ, ତାହେଲେ ଏ ଛୁରୀଟା ନିଅ ଆଉ ତୁମ ମୁହଁ କାଟିପକାଅ, ମତେ ଦେଖାଅ । ନହେଲେ ତୁମ ଗଳା ଚିପିଦେବି । ଏଇ – ନିଅ ଏ ଛୁରୀ ।"

ବୁଢ଼ା ଥିଏଁ ପ୍ରାଣ ବିକଳରେ ଥରୁଥିଲା । ସେ ଧାରୁଆ ଛୁରୀଟାକୁ ନେଇ ପୁଅକୁ ଚାହିଁଲା । କାକୁତି ମିନତି ହେଲା : "ମତେ ଛାଡ଼ିଦେ । ମୁଁ ତୋ ଟଙ୍କା ନେଇ ନାହିଁ କି ନେବି ନାହିଁ । ଲକ୍ଷେ ବର୍ଷରେ ବି ନୁହେଁ । ମୁଁ ତୋ ବାପା – ମୁଁ ଏପରି କାମ କଦାପି କରିବି ନାହିଁ । ଏହା ଠିକ୍ କାମ ନୁହେଁ ।"

"ତମ ମୁହଁଟାକୁ ଆଗ କାଟ !"

"ଓଃ, ବହୁତ କାଟିବ, ମୁଁ ସମ୍ଭାଳିପାରିବି ନାହିଁ ।"

"ତୁମେ ମୁହଁ କାଟିବାକୁ ଚାହଁନାହିଁ ? ତାହେଲେ ଗୋଟେ ଆଙ୍ଗୁଠି କାଟିପକାଅ । ଏଇଲେ, ସାଙ୍ଗେ ସାଙ୍ଗେ । ଆଙ୍ଗୁଠି ନ କାଟିଲାଯାଏଁ ମୁଁ ତୁମକୁ ବିଶ୍ୱାସ କରିବି ନାହିଁ । ତମ ତଣ୍ଟିଚିପି ମାରିଦେବି । ଢଙ୍ଗ ବନ୍ଦ କର !"

ଥାନ୍ ପୁଣି ଉଦ୍ଧୁଙ୍କି ଆସିଲା ବାପ ଆଡ଼କୁ, ତା ମୁହଁର ମାଂସପେଶୀ ରାଗରେ କମ୍ପୁଥାଏ, ଦୟନୀୟ ଭାବରେ, ଯନ୍ତ୍ରବତ୍ । ବୁଢ଼ା ଥିଏଁ ଆତଙ୍କିତ ହୋଇ ବାମ ଅନାମିକା ଆଙ୍ଗୁଳିଟିକୁ ଖଟ ଉପରେ ଥୋଇଲା । ତାପରେ ପୁଅକୁ ଅନେଇଲା । ଥାନ୍ ପାଟିକଲା :

"ଆଗେଇ ଯା', ଶପଥ କର ଆଉ ଆଙ୍ଗୁଳି କାଟିପକା, ସାଙ୍ଗେ ସାଙ୍ଗେ, ନହେଲେ ତମ ଜିଭଟି ଯିବ ।"

ବୁଢ଼ା ଛୁରୀଟି ଉଠାଇଲା । ତାପରେ ଚୋଟେ ପକାଇଲା ଆଙ୍ଗୁଠି ଉପରେ, ବେଶ୍ ଗୋଟେ ନିଦା ଶବ୍ଦ ହେଲା । ଅଙ୍ଗୁଳିଟି ତଳେ ପଡ଼ିଯିବା ସହିତ ରକ୍ତ ପିଚକାରୀ ମାରିଲା ପରି ଚାରିଦିଗକୁ ଛିଟିକି ପଡ଼ିଲା । ଥାନ୍ ନିରାସକ୍ତ ଭାବରେ ଏସବୁ ଦେଖୁଥିଲା । ସେ ଦେଖିଲା ତା' ବାପାର ମୁହଁ ଶେଥା ପଡ଼ିଆସିଲା ଆଉ ପାଟି ଯନ୍ତ୍ରଣାରେ ବଙ୍କା ହୋଇଆସିଲା । ଏହା ତାକୁ ସାମାନ୍ୟ ଶାନ୍ତ କଲା । ରକ୍ତ ଉପରେ ଯେମିତି ପାଦ ନପଡ଼ିବ ସେଥିପ୍ରତି ସତର୍କ ହୋଇ ସେ ଘରୁ ବାହାରିଗଲା ।

ଯିଏ ତାର ତିନିଲକ୍ଷ ଚୋରି କରି ନେଇଥିଲା ତା' ପ୍ରତି ଅତିମାତ୍ରାରେ ପ୍ରତିହିଂସାପରାୟଣ ହୋଇଉଠିଲା । ତା' ବାପର କାମ ତା' ମନରେ ବିଶ୍ୱାସ ଜନ୍ମାଇଥିଲା ଯେ ବାପ ଟଙ୍କା ନେଇନାହିଁ । ତାହେଲେ କିଏ ? କିଏ ଏପରି କରିଥିବ । କେମିତି ସେ ତାର କୁଆରଣ ଶୁଝିବ ? କରଜଦାତା ଲୋଭୀ ସାର୍କଗୁଡ଼ାକ ତା' ମୁହଁ ଉପରେ ଏସିଡ଼

ମାଡ଼ ମାରିବା ଆଗରୁ ଥରେ ବି ତ ଭାବିବେ ନାହିଁ । ଆଜିକାଲି ଯୁଗରେ କେବଳ ନିର୍ମମ ହିଁ ବିଜୟ ଲଭେ । ତାକୁ ଅନ୍ତର୍ଦ୍ଧାନ ହୋଇଯିବାକୁ ପଡ଼ିବ ! ମାତାଲପରି ଶିଡ଼ିରେ ଓହ୍ଲାଇଗଲାବେଳକୁ, ସେ ସେହି ସ୍ୱର୍ଗୀୟ ଭୂମିର ସ୍ୱପ୍ନ ଦେଖିବା ଆରମ୍ଭ କରିଦେଇଥିଲା । ହଂକଂ !

ମିସେସ୍ ଫାନ୍ ଦେଖିଲା ଥାନ୍ ଶିଡ଼ିରେ ଓହ୍ଲାଇ ଆସୁଛି । ସେ ତାକୁ ଅନେଇ ହସିବାକୁ ଚେଷ୍ଟାକଲା କିନ୍ତୁ ସାହସ ଜୁଟାଇ ପାରିଲା ନାହିଁ : ସେ ଭୟଙ୍କର ଦେଖାଯାଉଥିଲା, ଥାନ୍, ଯେମିତି ଏଇଲେ ମଣିଷ ରକ୍ତ ପିଇଆସୁଛି । ଛାତର ସବାଉପରେ ନିଜ କୋଠରିକୁ ସେ ଯାଉଥିଲା ଯେତେବେଳେ ବୁଢ଼ା ଥିଏଁର କାତର କୁନ୍ଥା ତା' କାନରେ ବାଜିଲା । କ'ଣ ହୋଇଛି ଦେଖିବାକୁ ନ ଅଟକି ସେ ଚିତ୍କାର କଲା :

"ହତ୍ୟା ! ହତ୍ୟା ! କାହାର ଗୋଟେ ହତ୍ୟା ହୋଇଛି !"

ପଡ଼ୋଶୀମାନେ ଦେଖିଲାବେଳକୁ ବୁଢ଼ା ଥିଏଁ ମୁଣ୍ଡକୁ ଗୋଡ଼ରେ ଯୋଡ଼ି ଦିପରସ୍ତ ହୋଇ ଥୁଣ୍ଟା ଆଙ୍ଗୁଳିଟାକୁ ଚୁଚୁମୁଥିଲା । ତା' ମୁହଁସାରା ରକ୍ତ ଆଉ ତଳକୁ ଥପ୍ ଥପ୍ ବୋହି ସାର୍ଟ ଲାଲ । ବୁଢ଼ା ଥିଏଁ ସବୁବେଳେ ବିଶାଳ ଦେହ ଆଉ ଅସୀମ ଶକ୍ତିର ଅଧିକାରୀ ଥିଲା, ମନଇଚ୍ଛା ଖାଉଥିଲା ଆଉ ଯାହା ମନ ତାହା କରୁଥିଲା । ଏବେ ସେ ଏମିତି ଲୋଚାକୋଚା ହୋଇ ପଡ଼ିଥିଲା ଯେ ନିଷ୍ଠୁର ପିଲାଟିଏ ଦେଖିଲେ ବି ତାକୁ ଦୟାକରିବ । ବୁଢ଼ା ଅଚେତ ହୋଇଗଲା । ସେ ଦେଖିଲା ଧଳା ନରକଙ୍କାଳଟି ମେଘ ଆସ୍ତରଣ ଭିତରୁ ତାକୁ ଅନାଉଛି । କଙ୍କାଳ ଟିକେ ନାଚି ତାକୁ ହାତ ହଲାଇଲା ବି । ବୁଢ଼ା ଭାବିଲା ସେ ବୋଧେ ତାକୁ ଡାକୁଛି ଆଉ ପାଖକୁ ଆସିବାକୁ ଚାହୁଁଛି । ହେଲେ କଙ୍କାଳ କେବଳ ହାତ ହଲାଉଥିଲା । ତାପରେ କଙ୍କାଳଟି ମାଇପିଙ୍କ ହସ ପରି ସରୁ ଉଚ୍ଚ ସ୍ୱରରେ ହସିଲା । ବୁଢ଼ା ତାକୁ ତଡ଼ିଦେବାକୁ ଚାହୁଁଥିଲା ହେଲେ ତା' ହାତ ବନ୍ଧା ହୋଇଥିଲା ।

ମଣିଷଙ୍କ ପାଟି ତା କାନରେ ବାଜିଲା ।

"ତାର ଚେତା ଫେରୁଛି । ତାକୁ ଗୋଟେ ଠେଲାଗାଡ଼ିରେ ବସେଇଦିଅ । ଭଲଲାଗିବ ।"

ଅତି ଅଶାଳୀନ ଶବ୍ଦ ! ପୁଣିଥରେ ନାରୀର ହସ । ବୁଢ଼ା ବୁଝିପାରିଲା ଏ ହସ ମିସେସ୍ ଫାନ୍‌ର । ପଶୁଦଳ, ଯେଉଁମାନଙ୍କ ସାଥିରେ ସେ କୋଠାରେ ଭାଗୀଦାର ହୋଇରହିଥିଲା, ପୁଣି ସେମାନେ ମଣିଷ ହୋଇଯାଇଥିଲେ, ତାକୁ ଚାରିପଟୁ ଘେରି, କ୍ଷତରେ ବ୍ୟାଣ୍ଡେଜ୍ କରି, ତା' ମୁହଁ ଧୋଇ, ଗୋଟେ କୋଟ ତାକୁ ଆଣି ପିନ୍ଧେଇ ଦେଇଥିଲେ । ସେମାନେ ତାକୁ ବୋହିନେଲେ ତଳକୁ ଆଉ ତାପରେ ଜରୁରୀ ଚିକିତ୍ସା କୋଠରିକୁ ।

ତା ପରଠାରୁ ବୁଢ଼ା ଥିଏଁ ଆଉ କେବେ ସେହି ଧଳା ନରକଙ୍କାଳ ବା କଳା ସୈନିକକୁ ଦେଖିନାହିଁ । ସେ ଅଛି ପୂରାପୂରି ଶାନ୍ତିରେ, କେବଳ ଯାହା ତା' ପୁଅ ଥାନ୍ ଅନ୍ତର୍ଦ୍ଧାନ ହୋଇଯାଇଛି ।

ଅଳ୍ପଦିନ ପରେ ...

ଦିନେ ରାତିରେ ଜେଟ ତା' ସ୍ତ୍ରୀକୁ ଚଞ୍ଚଳ ଶୋଇବା ପାଇଁ ଆସିବାକୁ ବାଧ୍ୟକଲା । ନିଜର କୁକୁର ମାରୁଥିବା ହାତ ବଢ଼େଇ କୋଳକଲା ତାକୁ, ଯାହାକୁ ସ୍ୱର୍ଗର ଏକ ପୁରସ୍କାର ବୋଲି ସେ ଭାବୁଥିଲା ଆଉ ମଦ ବାସ୍ନା ମେଞ୍ଚେ ତା' ମୁହଁକୁ ଛାଡ଼ିଦେଲା ।

"ମୋ କୁକୁରଛୁଆ, କାଲି ହିଁ ମୁଁ ତୋ ପାଇଁ ସବୁଠୁ ଭଲ ଫର୍‌କୋଟ କିଣିଆଣିବି ।"

"ଏତେ ଟଙ୍କା କେଉଁଠୁ ଆସୁଛି ? ତୁମେ ଏତେ ଶାନ୍ତ ଅଛ କେମିତି ?"

ମାଇକିନାଟି ଏବେ ସହରୀଭାଷା ବ୍ୟବହାର କରିବା ଆରମ୍ଭ କରିଥିଲା ।

"ଏମିତି ମିଳିଯାଇଛି । ବେଶୀ ବକ୍‌ବକ୍ ହ ନା ; ତୋ ଜିଭ କାଟିଦେବି । ଶୁଣ୍, କେହି ଯଦି ତତେ ପଚାରେ କେଉଁଠୁ ଏ ଜିନିଷ କିଣିଲୁ, ତୁ କହିବୁ ଆମ ସଂଚୟରୁ, ବୁଝିଲୁ ? ମୋ କଥା ନଶୁଣିଲେ ତତେ କାଟିଦେବି, ହଁ । ଏ ଟଙ୍କା ଗୋଟେ ବେପାର ଚୁକ୍ତିରୁ ମୁଁ ପାଇଛି, କିନ୍ତୁ କେହି ଏକଥା ଜାଣିଲେ ମୁଁ ଜେଲ୍ ଯିବି, ବୁଝିଲୁ ?"

ମାଇପିଟି ଖୁବ୍ ଜୋର୍ ହସିଲା, ଏତେ ଜୋର୍ ଯେମିତି ତା' ତଣ୍ଟିକଟା ହେଉଛି । ପ୍ରତି ରାତିରେ ସେଇମିତି ସେ ହସୁଥିଲା, ଯେତେବେଳେ ସାରାଦିନର ସଂଗ୍ରାମ ପରେ ପୂରା ମହଲଟି ଗାଢ଼ ନିଦରେ ଶୋଇଯାଉଥିଲା । ଏବେ ଜେଟ ଆଉ ତା ମାଇପ ଥିଲେ ଏଠାରେ । ସବୁଠାରୁ ବେଶୀ କୋଳାହଳ କରୁଥିବା ଦମ୍ପତ୍ତି, ସେମାନେ ସବାଶେଷରେ ଶୋଉଥିଲେ । ରାତ୍ରିର ଆଗମନରେ ଯେତେବେଳେ ପଶୁମାନେ ବି ମଣିଷରେ ରୂପାନ୍ତରିତ ହୋଇଯାଉଥିଲେ, ଏ ଦୁଇଜଣ ଯେଉଁ ପଶୁକୁ ସେଇ ପଶୁ ହୋଇ ରହିଥିଲେ । ଆଜି ରାତିଟି ଥିଲା ଅଶାନ୍ତ । ଝଡ଼ ଆସୁଥିଲା । ବୁଢ଼ା ଥିଏଁର ହାତ କାଟିଲା, ବହୁତ ଯନ୍ତ୍ରଣା । ସେ ଝରକା ପାଖରେ ବସି ବର୍ଷାକୁ ଅପେକ୍ଷା କରିଥିଲା, ବର୍ଷାପାଣି ପଡ଼ିଲେ ଏ ଥୁଣ୍ଟା ଆଙ୍ଗୁଳିର କଷ୍ଟ କମିଯିବ ପରା । ଆରପଟେ ଥିଲା ସହର । ଘର ଉପରେ ଘର । ସୈନିକ ଟନି ବି ଆଉ ତାକୁ ଡରାଉ ନଥିଲା । ସେ ପୁଣିଥରେ ଜୀବନକୁ ନେଇ ସୁଖୀ ହେବାକୁ ଆରମ୍ଭ କରିଥିଲା, କେବଳ ଏଇଭଳି ଥୁଣ୍ଟା ଅଙ୍ଗୁଳିର କଷ୍ଟକର ମୁହୂର୍ତ୍ତମାନ ତାକୁ ଯାହା ବିରକ୍ତ କରୁଥିଲା । ଯନ୍ତ୍ରଣା ଭୟଙ୍କର ହେଉଥିଲା, କ୍ଷତଟି ଦେଖାଯାଉଥିଲା ରକ୍ତ ପରି ଲାଲ ଆଉ ସେ ଜୀବନର ଉତ୍‌ଥାନ–ପତନ ଦେଖି କ୍ଳାନ୍ତ ହୋଇପଡ଼ିଥିଲା । ହଠାତ୍ ତା' ମୁଣ୍ଡକୁ ଗୋଟେ ଧାରଣା ଆସିଲା । ଆଗରୁ କାହିଁକି ଏକଥା ଭାବି ନଥିଲା ଚିନ୍ତାକରି ଆଶ୍ଚର୍ଯ୍ୟ ହେଲା । ସେହି କଳା ସୈନିକଟି ଛଡ଼ା ଆଉ କେହି ଟଙ୍କା ମୁଣିଟା ନେଇନାହିଁ ! ତା' ମା' ମରୁ ଶଳା ! ସେଇଥିପାଇଁ ନୋଟଗଦା ଚୋରି କରିନେଲା ଦିନଠାରୁ ଆଉ ତାର ଦେଖାଦର୍ଶନ ନାହିଁ ! ଶଃ ଶିଆଳ !

୧୨

# ଫିନିକ୍ସ କିମ୍ବଦନ୍ତୀ

## ଟ୍ରାଁ ଥୁଏ ମାଇ

"ସୁପ୍ରଭାତ ପ୍ରଫେସର ... ବେଶୀ ଡେରି ହୋଇଗଲା କି ମୋ ଆସିବାରେ ?"

ଚମକିପଡ଼ି ମି. ନିନ୍ ଅନେଇଲେ । ପଢ଼ିବାକୁ ବସିବା ଆଗରୁ ସେ ଝର୍କା ଖୋଲି ଦେଇଥିଲେ । ତାହାଲେ ତଳୁ କିଏ ଆସିଲେ ସାଙ୍ଗେ ସାଙ୍ଗେ ତାଙ୍କ ନଜରରେ ପଡ଼ିବ । ଏବେ ଘରର ଦୁଆର ମୁହଁରେ ଠିଆ ହୋଇଥିଲା ଝିଅଟିଏ, ଅପ୍ରତିଭ ଆଖି ଦୁଇଟି ତଳକୁ କରି ।

"ତୁମେ ମୋତେ ଦେଖାକରିବାକୁ ଚାହଁ ?"

"ହଁ, ମୁଁ ପର୍ଯ୍ୟଟନ ବିଭାଗରୁ ଆସିଛି ... ଆପଣ ବୋଧହୁଏ ପ୍ରଫେସର ନିନ୍ ଆର୍କିଓଲୋଜି ସଂସ୍ଥାନରୁ", ଝିଅଟି ଏତକ କହିସାରିଲାବେଳକୁ ତା' ଆଖି ତଥାପି ନିଜ ଧଳା ହାତବ୍ୟାଗଟିକୁ ଦେଖୁଥିଲା ।

"ଓହୋ, ଆସ, ଆସ, ମୁଁ ଭାବିଥିଲି ସେମାନେ ଗୋଟେ ଯୁବକକୁ ପଠାଇବେ ।"

ଝିଅଟି ଘରଭିତରକୁ ପାଦ ବଢ଼େଇଲା । ସେଇ ପରିଚିତ, ନୀରବ, ହାଲ୍‌କା ପଦପାତ । ଘନ କେଶଗୁଚ୍ଛ ଗଣ୍ଠି ହୋଇଛି ବେକଠାରୁ ଢେର ଉପରେ; ସାଧାରଣ ଧଳାସାର୍ଟ ଆଉ ଗାଢ଼ ନୀଳ ଢିଲା ଟ୍ରାଉଜର ତାର ପୋଷାକ । ଏଠି, ସେଠି, ସବୁଠି ଦେଖାଯାଉଥିବା ଝିଅମାନଙ୍କ ପରି ଝିଅଟିଏ । ତଥାପି ତା' ଢଙ୍ଗ, ରଙ୍ଗ, ଭଙ୍ଗୀରେ ଥିଲା କିଛି ସ୍ୱାତନ୍ତ୍ର୍ୟ, ବେଶ୍ ଅଲଗା । ହ୍ୟୁ ଝିଅଟି । ନିନ୍ ଠିଆହୋଇପଡ଼ି, ଛୋଟ ଗୋଟେ କପ୍‌କୁ ଚା' ଢାଳିଲେ । ଝିଅଟି ଡରି ଡରି ଡେସ୍କ କଡ଼ ଚୌକିରେ ବସିପଡ଼ିଲା ।

"ଆଚ୍ଛା, ତୁମ ନାମ କ'ଣ ?"

"ତୌଁ ନୁତି ପୋଙ୍ଗ୍ । ଆପଣ ଚାହିଁଲେ ମତେ କେବଳ ପୋଙ୍ଗ୍ ଡାକିପାରନ୍ତି ।"

ପ୍ରାଚୀନ ଦୁର୍ଗ ଆଉ ରାଜପରିବାର କବରମାନଙ୍କର କଳାକୃତି, ଅଳଙ୍କରଣ ଉପରେ ଗବେଷଣା କରିବାକୁ ନିନ୍ ସପ୍ତାହେ ହେଲା ହ୍ୟୁରେ ରହୁଛନ୍ତି । ସ୍ଥାନୀୟ ପ୍ରଶାସନ ତାଙ୍କୁ କାମ କରିବାର ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦେଇଥିଲା ଆଉ ତାଙ୍କ ପାଇଁ ଜଣେ

ଗାଇଡ୍ ଠିକ୍ କରିଦେବାକୁ ପ୍ରତିଶ୍ରୁତି ଦେଇଥିଲା । ସେହି କାରଣରୁ ଏଇ ଝିଅଟିର ଆବିର୍ଭାବ ହୋଇଛି ଏଠାରେ ।

ଠିକ୍ ଅଛି, ନିନ୍ଙ୍କର କାମ ଦରକାର । ସେ ପଚାରିଲେ, "ତୁମେ ମୋ ପାଇଁ କ'ଣ କରିପାରିବ ?"

"ମୁଁ ଜାଣେନି ... ଆପଣଙ୍କ ଉପରେ ନିର୍ଭର କରେ । ରାଜପ୍ରାସାଦ, ରାଜକବରସ୍ଥଳୀ, ପାଗୋଡ଼ା, ମନ୍ଦିର ଆଉ ଏଠାର ଅନ୍ୟ ଐତିହାସିକ ଅବଶିଷ୍ଟାଂଶ ବିଷୟରେ ମୁଁ କିଛି କିଛି ଜାଣିଛି । ଏଇସବୁ ଜାଗାକୁ ମୁଁ ଆପଣଙ୍କୁ ନେଇଯିବି ଆଉ ତା' ସମ୍ପର୍କରେ କହିବି ... ଯେମିତି ଅନ୍ୟ ପର୍ଯ୍ୟଟକଙ୍କୁ କହେ ।"

ନିନ୍ ଟିକେ ଭାବିଲେ । ପର୍ଯ୍ୟଟକମାନଙ୍କୁ ଯାହା କୁହାଯାଏ ସେସବୁ ତ ତାଙ୍କୁ ଭଲଭାବରେ ଜଣା । ଝିଅଟା କ'ଣ ତାଙ୍କୁ ଅଧିକ କିଛି ସାହାଯ୍ୟ କରିପାରିବ ?

"ଠିକ୍ ଅଛି", ଶେଷରେ ସେ କହିଲେ, "କେବେ ଆମେ କାମ ଆରମ୍ଭ କରିପାରିବା ?"

"ଆପଣ ସ୍ଥିର କରନ୍ତୁ, କହିବେ ଯଦି ଆଜିଠୁ ।"

ଝିଅଟି ଆସ୍ତେ ହାତ ଉଠାଇ, କୋମଳ ଭାବରେ କପାଳ ଉପରୁ ବାଳକେରାକ ସଜାଇଦେଲା । କମନୀୟ ରୀତି, ନିନ୍ଙ୍କର ଅତିପରିଚିତ : ହ୍ୟୁ ଝିଅମାନଙ୍କର ବିଶେଷ ଲକ୍ଷଣ ।

ହଠାତ୍ ଯେପରି ତାଙ୍କ ଆବେଗ ଉପରେ ଧକ୍କାଟାଏ ବାଜିଲା । ସେ ଠିଆହୋଇପଡ଼ି ମୁଣ୍ଡ ହଲାଇଲେ । "ନା, ମିସ୍ ପୋଙ୍ଗ୍ ସେମିତି କିଛି ଜରୁରୀ କାମ ନାହିଁ । କାଲି ଏତିକିବେଳକୁ ଆସ – ଆମେ ରାଜଦୁର୍ଗ ଦେଖିବାକୁ ଯିବା ।"

ସେଇ ନୀରବ ପଦପାତ । ଝିଅଟି ବିଦାୟ ନେଇ ଚାଲିଗଲା । ନିନ୍ ନିଜ ଡେସ୍କ ପାଖକୁ ଫେରିଆସିଲେ ମୃଦୁ ହସି । ଚଢ଼େଇଟିଏ ଝର୍କା ଦେହରେ ଘଷିହୋଇ ଗଛ ଗହଳିରେ ଅଦୃଶ୍ୟ ହୋଇଗଲା ।

ବାଲ୍‌କୋନୀରୁ ତଳକୁ ଚାହିଁ ନିନ୍ ଦେଖିଲେ, ଲେଲୋଇ ରାଜପଥ ଲମ୍ବିଯାଇଥିଲା ତେନ୍ତୁଳି ଗଛର ଚାନ୍ଦୁଆ ତଳେ । ଏକଦା 'ଜୁଲ୍‌ସ ଫେରୀ ରୋଡ୍' ଥିଲା ଯାର ନାମ – ନିଜେ ନିଜକୁ ମନେପକାଇଦେଲେ ।

ତା ସହିତ ଫେରିଆସିଲା ସ୍କୁଲଦିନର ସ୍ମୃତି । ହ୍ୟୁର କାଠୁଆ ଜାଡ଼ରେ ସ୍କୁଲ ପିଲାମାନେ ବାଳକୁ ମଝିରୁ ଦି'ଭାଗ କରି କୁଣ୍ଡାଇ ଛୋଟିଆ ଡଙ୍ଗାରେ ପରଫ୍ୟୁମନଦୀ ପାର ହୁଅନ୍ତି । ଧଳା, ମୋଟା କୁହୁଡ଼ି ଭିତରେ ଡଙ୍ଗାଟି ମେଘର ଅବାସ୍ତବ, ସୀମାହୀନ ଆସ୍ତରଣ ଉପରେ ଭାସିଲା ପରି ଲାଗେ ... ସେଇ ଥୁଆ ଫୁ ଘାଟ, ଓହ୍ଲାଇବା ଜାଗା ... ଗଳି ଗାୟିକାର 'ରାଜଧାନୀର ପତନ' ସଙ୍ଗୀତ ସହିତ ସମତାଳରେ ବାଜୁଥିବା

ବେହେଲାର ଧ୍ୱନି ... ତେନ୍ତୁଳି ଗଛର ପତ୍ରତଳେ କୁହୁଡ଼ିରେ ଭାସିଆସୁଥିବା ବାଇଗଣୀ ରଙ୍ଗର ଗାଉନ୍ ସାଙ୍ଗେ ଲୁଲସ୍‌ଫେରୀ ରୋଡ଼ । ପାଖ ପଡ଼ୋଶୀ ଘରର ଝିଅ ବୋଇହୋନ୍‌ର ଚେହେରା ଥିଲା ଏହା ଭିତରେ ସବୁଠାରୁ ସ୍ୱଷ୍ଟ । ଗୋଟେ ଅସ୍ୱଷ୍ଟ ଆକୃତି, ହେଲେ ସେଇ ମୂର୍ତ୍ତିଟି ତାଙ୍କ ସଚେତନ ମନତଳେ ଲାଖି ରହିଥିଲା : ଆମ ପିଲାଦିନର ସବୁଠାରୁ ସାଧାରଣ ବସ୍ତୁର ସ୍ମୃତି କ'ଣ ଆମର ଏତେ ପ୍ରିୟ ହୋଇପାରେ ?

ମନଶ୍ଚକ୍ଷୁରେ ଏଇ ବୟସ୍କ ଲୋକଟି ତଥାପି ସ୍ୱଷ୍ଟ ଭାବରେ ଦେଖିପାରୁଥିଲେ ଝର୍କା ପାଖର ସେଇ ଟେବୁଲଟିକୁ, ଯେଉଁଠି ସେ ପଢ଼ାପଢ଼ି କରୁଥିଲେ, ସେଇଠାରୁ ଯୁବକଟି ନିୟମିତ ତଳବଗିଚାକୁ ଦେଖିବାରେ ଥିଲେ ଅଭ୍ୟସ୍ତ । ବାରଣ୍ଡାରେ ବସିଥିଲା ସୁନ୍ଦରୀ ଝିଅଟିଏ, ଯିଏ ହାତରେ କରଞ୍ଜି ପିଠା ବନାଉଥିଲା, ତାର ଦୀର୍ଘ ଘନ କେଶରାଶି ହାଲ୍‌କା ନୀଳ ପୋଷାକ ଉପରେ ବିଛେଇ ହୋଇପଡ଼ିଥିଲା । ନବବର୍ଷ ଉତ୍ସବରେ ସେ ଅଦାସ୍ୱାଦର କେକ୍ ତିଆରି ପାଇଁ ଦକ୍ଷତାର ସହ ମଇଦାରେ ଅଦାରସ ଗୋଳୁଥିଲା, ତା'ର ଚଞ୍ଚଳ ଗତି ଯୋଗୁଁ ତା' କୋମଳ କଟଟିରେ ଲେଡ଼୍‌ର ଚୁଡ଼ି ଟକ୍‌ଟକ୍ କମ୍ପୁଥିଲା । ବେଳେବେଳେ ଅମନଯୋଗୀହୋଇ ସେ ଉପରକୁ ଚାହିଁଦେଉଥିଲା, ଆଉ ଉଭୟଙ୍କ ଆଖି ମିଶିଗଲେ ସେ ମୁଣ୍ଡତଳକୁ ପୋତିଦେଇ, ଜଣାନପଡ଼ିବା ଭଳି ଗୋଟେ ହସ ହସି ଦେଉଥିଲା ଆଉ ତା' ଗାଲରେ ଉଠିଆସୁଥିଲା ଆକର୍ଷଣୀୟ ଭଉଁରିଟିଏ ।

ନିନ୍‌ଙ୍କ ମନରେ ହ୍ୟୁର ଅନ୍ୟ ସ୍ମୃତି ସହ ସେଇ ହସ ଓ ଗାଲର ଭଉଁରି ସବୁଦିନ ପାଇଁ ରହିବ । ଦ୍ରୁତଗତିରେ ଯାଉଥିବା କାର୍‌ରେ ବସିଥିବାବେଳେ, ପୁରୁଣା ସ୍ମୃତିସବୁ ଫେରିଆସୁଥିଲା ତାଙ୍କ ପାଖକୁ ।

"ପ୍ରଫେସର, ଆପଣ ପ୍ରତ୍ନତତ୍ତ୍ୱ ଅଧ୍ୟୟନ କରିବାକୁ ଚାହିଁଲେ କାହିଁକି ?" ହଠାତ୍ ଝିଅଟିର ପ୍ରଶ୍ନ ।

"କାହିଁକି ? ... ଏ ପସନ୍ଦ ମୁଁ ତିରିଶବର୍ଷ ତଳେ କରିଥିଲି । ସେତେବେଳେ ମୁଁ ଅତୀତର ବସ୍ତୁ ସହିତ ଜୀଇଁବାକୁ ଚାହୁଁଥିଲି । ମୋ ପାଇଁ ଅତୀତର ସବୁଜିନିଷ ସୁନ୍ଦର ।"

"ହୁଁ", ଝିଅଟି ହସିଦେଇ କହିଲା । ସେଇ ହସ, ସେଇ ଜଣାନପଡ଼ିବା ପରି ହୁଁ ଯାହାର ଅର୍ଥ କେବେ ବି ସ୍ୱଷ୍ଟ ନୁହେଁ । ଏହା କ'ଣ ନିଷ୍କ୍ରିୟ ରକ୍ଷଣଶୀଳତା ନା ଅତି ଜଟିଳ କିଛି ଅଭିବ୍ୟକ୍ତିର ପ୍ରକାଶଭଙ୍ଗୀ ?

"ଆଉ ତୁମେ ... କାହିଁକି ବାଛିଲ ଏ ପେଶା ?" ପୁରୁଷଜଣକ ପଚାରିଲେ ।

"କାରଣ ଯାହା ସୁନ୍ଦର ତା' ବିଷୟରେ ମୁଁ ଲୋକଙ୍କୁ କହିବାକୁ ଭଲପାଏ ।"

"ତୁମେ ହ୍ୟୁର ବାସିନ୍ଦା ତ ?"

"ହଁ ।"

"ଓଃ !" ... ପୁରୁଷ ସ୍ୱରରେ ଥିଲା ବ୍ୟଙ୍ଗର ହାଲ୍‌କା ସ୍ପର୍ଶ । ସେ ଭାବିଲେ :

'ତାହେଲେ ଶୁଣ ଝିଅ, ଏ ପେଶା ତୋ ପାଇଁ ନୁହେଁରେ !'

ବହୁତବର୍ଷ ହ୍ୟୁରେ ରହିବା ପରେ ନିନ୍ ଏଇ ସିଦ୍ଧାନ୍ତରେ ପହଞ୍ଚିଥିଲେ : ହ୍ୟୁବାସୀ ସର୍ବଦା ଦିବାସ୍ୱପ୍ନରେ ନିମଜ୍ଜିତ ଆଉ ଉଦାସ, ସାମାଜିକ ସମ୍ପର୍କ ରଖିବାରେ ଏତେ ଆଗ୍ରହୀ ନୁହଁନ୍ତି । କାହିଁକି ? ବହଳ କୁହୁଡ଼ି, ଯାହା ଗୋଟିଏ ଡଙ୍ଗାରେ ଯାଉଥିବା ଦୁଇଜଣ ଲୋକଙ୍କୁ ପରସ୍ପରକୁ ଦେଖିବାରୁ ବଞ୍ଚିତ କରେ ବୋଲି ? ଲମ୍ବା ବର୍ଷାଋତୁ କାରଣରୁ ଲୋକେ ଘରେ ରହି ମଜାକରିବାକୁ ଭଲପାଆନ୍ତି ବୋଲି ? ନା ସେହି ପାରମ୍ପରିକ ବାତାବରଣ ଯାହା ଲୋକଙ୍କୁ ବାଧ୍ୟକରେ ଯୁଗଯୁଗର ନିୟମ ମାନି ଚଳିବାକୁ ? ସେ ଯେତେବେଳେ ଡୋଙ୍ଗ୍ ବା ସେତୁ ପାଖରେ ରହୁଥିଲେ, ଅଧିକାଂଶବେଳେ ସେ ତାଙ୍କ ପଡ଼ୋଶୀକୁ ଦେଖିବାକୁ ଯାଉଥିଲେ ଆଉ ପ୍ରତିଥର ସେ ଅବସରପ୍ରାପ୍ତ ଲୋକଟି ସାମ୍ନାରେ ବସିରହୁଥିଲେ, ତାଙ୍କୁ ଲାଗୁଥିଲା ଯେପରି କେହିଜଣେ ଆଖପାଖରେ ଅଛି, ହୁଏତ ଏମ୍ବ୍ରୟଡ଼ରୀ ପର୍ଦ୍ଦା ପଛପଟେ କିମ୍ବା ସୁନେଲି ଚାଇନିଜ ଆକୃତି ସହ ଲାଗିଥିବା ଲମ୍ବା ପାନେଲ କାଠଖମ୍ବ ପଛରେ । ହେଲେ ସେ କେବେ ବି ନିଶ୍ଚିତ ଭାବରେ ଜାଣିପାରିନଥିଲେ କେହି ସେଠାରେ ଥିଲା କି ନାହିଁ କାରଣ ସେ କେବେ ଶୁଣିନଥିଲେ କୌଣସି ପାଦଶବ୍ଦ ବା ସ୍ୱର । ପରେ, ଅଗଷ୍ଟ ବିପ୍ଳବ ପରବର୍ତ୍ତୀ ଉଦାସ ଦିନମାନଙ୍କରେ ସେ ଅନେକବାର ଭେଟିଥିଲେ ବୋଇହୋନ୍‌କୁ ସାହିତ୍ୟ କ୍ଲାସ୍‌ରେ କିମ୍ବା ସାଧାରଣ ସଭାରେ । ସେ ତା' ଗାଲର ଭଉଁରିକୁ ଭଲକରି ଦେଖିବାକୁ ତା' ପାଖକୁ ଲାଗିଆସୁଥିଲେ, ଆଉ ଝିଅଟି ତଳକୁ ମୁଣ୍ଡ ନୁଆଁଇ ଦେଇ ଆକର୍ଷଣୀୟ ହାତ ଦୁଇଟିକୁ ଧୀରେ ଟେକି ଦେଉଥିଲା କପାଳଉପର ଅସଜଡ଼ା ବାଳକୁ ସଜାଡ଼ି ଦେବାକୁ, ଆଉ ପ୍ରତିଥର ତାଙ୍କ ମନତଳେ ରହିଯାଉଥିଲା ଛବିଟିଏ – ହାଲ୍‌କା ନୀଳ, ପାଦତଳକୁ ବୋହିଆସିଥିବା 'ଆଓଦାଇ'ର କୁଞ୍ଚ । (ଆଓଦାଇ ଏକପ୍ରକାର ଭିଏତନାମୀ ପାରମ୍ପରିକ ପୋଷାକ ଝିଅମାନଙ୍କ ପାଦତଳଯାଏଁ ଝୁଲିଥାଏ ।)

ଛକ ପରେ ଛକ ପାରହୋଇ କାର୍‌ଟି ଫୁଜୁଆନ୍ ସେତୁ ଟପିଗଲା । ଝିଅଟି ତଥାପି ନୀରବରେ କାର୍ ଝରକାବାଟେ ବାହାରକୁ ଅନାଇଥିଲା, ସାର୍ଟ କଲାର ଉପରକୁ ଦେଖାଯାଉଥିଲା ତାର ନରମ ଗ୍ରୀବା ।

ମି. ନିନ୍ ହଠାତ୍ ମନ୍ତବ୍ୟ ଦେଲେ : "ଆଜିକାଲି ହ୍ୟୁରେ ବହୁତ କମ୍ ଲୋକ ଆଓଦାଇ ପିନ୍ଧୁଛନ୍ତି, ଦେଖିଲେ ମନରେ କଷ୍ଟ ହେଉଛି ।"

"ଓଃ, ମୁଁ ଯେତେବେଳେ ପର୍ଯ୍ୟଟକମାନଙ୍କ ସାଥିରେ ଆସେ, ପ୍ରାୟ ଗୋଟେ ଆଓଦାଇ ପିନ୍ଧେ । ହେଲେ ଆଜି ଆମେ ପ୍ରାଚୀନ ଦୁର୍ଗ ଦେଖିବାକୁ ଯାଉଛେ ବୋଲି, ମୁଁ ଏତେ ଛୋଟ ପୋଷାକ ପିନ୍ଧି ପକେଇଛି, କାଳେ ଦୁର୍ଗ ପ୍ରାଚୀର ସବାଉପରକୁ ଚଢ଼ିବାକୁ ପଡ଼ିବ । ସେଠି ଉପରେ ଏତେ କଣ୍ଟାବୁଦା, ଆଉ ସେଥିରେ ଆଓଦାଇ ... ଉଫ୍ !"

ନିନ୍ ଜୋର୍‌ରେ ହସିପକାଇଲେ । ଝିଅଟି ଯେ ହସର ସମସ୍ତ ଖୋରାକ ଯୋଗାଇ ଦେଇଥିଲା ।

"କିଏ ତୁମକୁ ପାଚେରି ଚଢ଼ିବାକୁ କହିବ ? ଦରକାର ପଡ଼ିଲେ ମୁଁ ଏକାକୀ ଉପରକୁ ଯିବି । ତୁମେ ସବୁ ଟୁରିଷ୍ଟଙ୍କ ସହ ଯେପରି କର, ଠିକ୍ ସେହିପରି ମୋ ସାଥିରେ କର ।"

ପୋଙ୍ଗ୍ ଆପାତତଃ ଅପ୍ରସ୍ତୁତ ହେଲା । ଉତ୍ତର ଦେଲା, "ମୋତେ କୁହାଯାଇଛି ଆପଣଙ୍କ କାମରେ ଆପଣଙ୍କୁ ସାହାଯ୍ୟ କରିବାକୁ, କେବଳ ଦର୍ଶନୀୟ ସ୍ଥାନ ଦେଖାଇ ନେବାକୁ ଚାହେଁ । କିପରି ମୁଁ ସେଠି ଠିଆହୋଇ ଆପଣଙ୍କୁ ପ୍ରାଚୀର ଚଢ଼ିଯିବାର ଦେଖିପାରିବି । କି ବିଚିତ୍ର ଦେଖାଯିବ !"

ଝିଅଟି ସମ୍ପୂର୍ଣ୍ଣଭାବରେ ମନଦୃଢ଼ କରିଥିଲା ପରି ଦେଖାଯାଉଥିଲା, ଯାହା ପୁରୁଷଟିକୁ ଆଉଥରେ ହସିବାକୁ ବାଧକଲା । ଝିଅଟି ଯେତେବେଳେ ଚୁପ୍‌ଚାପ୍ ବସିଥିଲା ବା କୋମଳ ଭାବରେ କିଛି କହୁଥିଲା, ତା' ଭିତରେ ଅତି ପରିଚିତ କିଛି ଦେଖିପାରିଲା ଭଳି ତାଙ୍କୁ ଲାଗୁଥିଲା । ହେଲେ ଝିଅଟିର ମନୋଭାବରେ କିଛି ଗୋଟେ ବିରୋଧାଭାସ ଥିଲା । ହେଲେ କେଉଁ ପ୍ରକାର ବିରୋଧାଭାସ ସେ ଜାଣିନଥିଲେ । ସେ ଏକଦମ ବିଚଳିତ ହୋଇଉଠିଲେ ।

ଓ୍ୱାଇକ୍ ମେନ୍ ଗେଟ୍ ପାଖରେ କାର୍ ଅଟକିଗଲା । ପୋଙ୍ଗ୍ ତା' ବ୍ୟାଗ୍‌ଟିକୁ କାନ୍ଧରେ ଝୁଲାଇଦେଲା, ହାତଘଣ୍ଟାକୁ ଚାହିଁଲା ଆଉ କହିଲା, "ଛକମାନଙ୍କରେ ଆମ କାର୍ ଢେର ସମୟ ଅଟକିଗଲା, ଆମକୁ ଚଞ୍ଚଳ ଯିବାକୁ ପଡ଼ିବ ।" ସେ ତରତର ହୋଇ ଚାଲିବା ଆରମ୍ଭ କରିଦେଲା । ସେଇ ନୀରବ, ଚଞ୍ଚଳ ପଦକ୍ଷେପ ନିନ୍‌ଙ୍କୁ ବାଧକଲା ମନେପକାଇବାକୁ ବୋଇହୋନ୍‌ର ଅଚଞ୍ଚଳ ଚାଲିବା ଢଙ୍ଗ । ସେଇଦିନମାନଙ୍କରେ ହ୍ୟୁ ଝିଅମାନେ କୁହୁଡ଼ି ଭିତରେ ଆରାମରେ ଟହଲମାରୁଥିଲେ । ସେମାନଙ୍କ ପଦଯୁଗଳ କ୍ୱଚିତ୍ ଭୂଇଁକୁ ଛୁଉଁଥିଲା ... ସେମାନେ ନିଜ ଚାରିପାଖର ସ୍ଥାନକାଳ ପ୍ରତି ଜମା ସଚେତନ ନଥିଲେ, ସେମାନେ ଗୋଟେ କାଳ୍ପନିକ ବାତାବରଣ ଭିତରେ ଜୀଇଁଥିଲେ । "ତୁମେ ତରତର ହେବା ଦରକାର ନାହିଁ, ମିସ୍ ପୋଙ୍ଗ୍, ସେମିତି କିଛି ଜରୁରୀ ନାହିଁ", କହିଲେ ନିନ୍ । ପୁଣି ପଚାରିଲେ, "ତୁମେ ବୋଧେ ହ୍ୟୁର ବାସିନ୍ଦା ?"

"କାହିଁକି ?" ... ଝିଅଟି ଅପ୍ରତିଭ ଦେଖାଗଲା ।

ନିନ୍‌ଙ୍କ ବନ୍ଧୁମାନେ ଏବେ ଏବେ ପୁରୁଣା ରାଜଧାନୀ ସହର ବୁଲି ତାଙ୍କୁ କହିଥିଲେ : "ହ୍ୟୁ ଆଉ ନାହିଁ । ଲ୍ୟୁବୋ ରୋଡ଼ ପୂରା ବଦଳି ଯାଇଛି । ଆମ୍‌ହୋ ଛକ ତଥାପି ଅଛି, ହେଲେ ଚିହ୍ନିବା ମୁସ୍କିଲ । ହ୍ୟୁ ଅଛି, ହେଲେ ତାର ଆକର୍ଷଣ ନାହିଁ ।"

ନିନ୍ ଏକଥା ବିଶ୍ୱାସ କରିନଥିଲେ । ହ୍ୟୁ ତାଙ୍କର ଜନ୍ମସ୍ଥାନ ନଥିଲା, ହେଲେ ଏହା

ଥିଲା ତାଙ୍କ ଯୌବନ, ତାଙ୍କ ପ୍ରେମ, ଏ ସ୍ଥାନ ଦେଇଥିଲା ତାଙ୍କୁ କେତେ ସୁଖଦ ସ୍ମୃତି । ଦେଶର ଇତିହାସରେ ଗୋଟେ ଉତ୍ତେଜିତ, ଆନ୍ଦୋଳିତ କାଳରେ ତାଙ୍କୁ ସହର ଛାଡ଼ି, ସବୁକିଛି ତ୍ୟାଗକରି ଉତ୍ତରକୁ ଯିବାକୁ ପଡୁଥିଲା । ହେଲେ ସେଇଦିନଠାରୁ, ହାନୋଇରେ ପାଖାପାଖି ତିରିଶ ବର୍ଷ ଭିତରେ ପ୍ରତିଟି ଗ୍ରୀଷ୍ମଋତୁ ତାଙ୍କ ପ୍ରାଣରେ ଫେରାଇ ଆଣୁଥିଲା ହ୍ୱାଇଟ୍ ଟାଇଗର ସେତୁ ପାଖ ଗଛମାନଙ୍କରେ ଉଜ୍ଜ୍ୱଳ ଲାଲ ମାଳତୀ ଫୁଲର ଛବି ଆଉ ନୀଳ ଆକାଶ ତଳେ ଚାତକ ପକ୍ଷୀମାନଙ୍କର କିଚିରି ମିଚିରି ଧ୍ୱନି । ପରେ ତାଙ୍କ କାମ ଯେତେବେଳେ ତାଙ୍କୁ ଅନେକ ଜାଗାକୁ ନେଇଗଲା ସେ ଦେଖିପାରିଥିଲେ ହ୍ୟୁ ଭଳି ଆଉ କେଉଁଠାରେ ବି ଏତେ ଚାତକ ପକ୍ଷୀ ନଥିଲେ ।

ଗତ ତିନି ଦଶକ ଭିତରେ, ନିନ୍ ପ୍ରାଣର ସମସ୍ତ ଆବେଗ ଦେଇ ଉତ୍ତରରେଥିବା ଦୁର୍ଗମାନଙ୍କ ସ୍ଥପତି ବିଜ୍ଞାନ ଉପରେ ଗବେଷଣା କରୁଥିଲେ – କୋଲୋଆ (ଏହି ଦୁର୍ଗ ହାନୋଇରେ ଦ୍ୱିତୀୟ ଶତାବ୍ଦୀରେ ନିର୍ମିତ ହୋଇଥିଲା), ହୋଲୁ (ଏହି ଦୁର୍ଗ ନିନ୍‌ବିନ୍ ପ୍ରଦେଶରେ ଦଶମ ଶତାବ୍ଦୀରେ ନିର୍ମିତ), ହୋ (ହୋ ରାଜବଂଶର ଦୁର୍ଗ ଥାନ୍ ହୋଆ ପ୍ରଦେଶରେ ଚତୁର୍ଦ୍ଦଶ ଶତାବ୍ଦୀ ନିର୍ମିତ) ଏବଂ ବାଉ ଦୁର୍ଗ (ବାଉ ରାଜବଂଶର ନିର୍ମାଣ ତୁୟେଁ କ୍ୱାଙ୍ଗ୍‌ରେ ଷୋଡ଼ଶ ଶତାବ୍ଦୀରେ ହୋଇଥିଲା) । ରାଜବଂଶ ଦ୍ୱାରା ନିର୍ମିତ ଦୁର୍ଗମାନ ଥିଲା ତାଙ୍କ ଗବେଷଣାର ବିଷୟ । ମନଭିତରେ ସବୁବେଳେ ସେ ଗୋଟିଏ ଆଶା ପୋଷଣ କରିଆସିଥିଲେ ଯେ ଦିନେ ସେ ନିଶ୍ଚୟ ହ୍ୟୁକୁ ଫେରିବେ, ସେଠାର ଦୁର୍ଗମାନଙ୍କର ଅନୁଶୀଳନ କରିବେ ଆଉ ଗବେଷଣା ଶେଷ କରିବେ ।

ଉତ୍ତରଦିଗରେ ହିଁ ନିନ୍ ବିବାହ କରିଥିଲେ । ଦୁର୍ଭାଗ୍ୟକୁ, ତାଙ୍କ ପତ୍ନୀ, ଅତି ଭଲ ସ୍ତ୍ରୀଲୋକଟି, ଗୋଟିଏ ଆମେରିକୀ ବୋମାବର୍ଷାରେ ନିହତ ହେଲେ । ତାଙ୍କ ଦୁଇ ପୁଅ ଏବେ ବି ବିଦେଶରେ ଅଧ୍ୟୟନରତ । ଏବେ ବୋଇହୋନ୍ କଥା ଯେତେବେଳେ ସେ ଭାବୁଥିଲେ, କାମନା କରୁଥିଲେ, ସେ ତାଙ୍କଠାରୁ ଅଧିକ ଭାଗ୍ୟବତୀ ହୋଇଥିବ ଆଉ ସୁଖମୟ ଜୀବନ ପାଇଥିବ । ହେଲେ ତାଙ୍କ ସ୍କୁଲଦିନମାନଙ୍କର ପୁରୁଣାସହରର ସ୍ମୃତି, ଯୁବକ ଭାବରେ ତାଙ୍କ ସ୍ୱପ୍ନସବୁ ତଥାପି ତାଙ୍କର ଅତିପ୍ରିୟ ହୋଇ ରହିଥିଲା । ସେହି ସ୍ମୃତି ତାଙ୍କୁ ବାଧ୍ୟକଲା ଫେରିଆସିବାକୁ ଏହି ପୁରୁଣା ସୁନ୍ଦର ସହରକୁ ।

ଆଉ ସେ ଫେରିଆସିଲେ ହ୍ୟୁକୁ, ଅଧିକ ସ୍ଥପତି ବିଜ୍ଞାନ ଗବେଷଣା ପାଇଁ । ଦିନେ ସେ ଯାଇଥିଲେ ସେହି ଘରକୁ, ଯେଉଁ ଦ୍ୱାରର ଗେଟ୍‌ଟି ସଜା ହୋଇଥିଲା ଦୁଇଟି ଏକଶିଙ୍ଗୀ ପ୍ରାଣୀଙ୍କ ମୂର୍ତ୍ତିରେ । ଘରପାଖକୁ ଯାଇଥିବା ଇଟା-ପଥର ରାସ୍ତାଟି ଥିଲା ଓଦା ଆଉ ଶିଉଳିରେ ଭର୍ତ୍ତି । ତଥାପି ସବୁ ସେଠାରେ ଥିଲା : ଅଳଙ୍କୃତ ବାହାର କାନ୍ଥ, କ୍ଷୁଦ୍ରାକାରରେ ହାତତିଆରି ପଥର, ବାରଣ୍ଡାରେ ଡିଭାନ୍ । ଗତ ତିରିଶବର୍ଷ ଭିତରେ ଜିନିଷଗୁଡ଼ିକର ବୟସ ବଢ଼ିଛି ସତ, ହେଲେ ସେଇ ଏକା ଜାଗାରେ ରହିଛନ୍ତି । କେହି

କେଉଁଠି ଦେଖାଯାଉଥିଲେ ; ସମ୍ପୂର୍ଣ୍ଣ ନୀରବତା ବିରାଜମାନ କରୁଥିଲା ଚାରିଆଡ଼େ ।

ନିନ୍ ଦୁଇଥର କରାଘାତକଲେ କବାଟରେ, ଆଉ ଶୁଣିଲେ କେହି ଜଣେ ଘରଭିତରୁ ଆସୁଥିବାର ପାଦଶବ୍ଦ । ଛୋଟିଆ କୋଟ୍‌ଟିଏ ପିନ୍ଧି ଜଣେ ବୟସ୍କା ମହିଳା କବାଟ ଖୋଲିଲେ ।

ମହିଳା ଉପରକୁ ଅନେଇଲେ । ପତଳା, ରଙ୍ଗହୀନ ମୁହଁରେ ତଥାପି ଥିଲା ଲିଭିଆସୁଥିବା ସୌନ୍ଦର୍ଯ୍ୟର ଚିହ୍ନ । ସେ ମି. ନିନ୍‌ଙ୍କୁ ନିରୀକ୍ଷଣ କଲେ । ମହିଳାଙ୍କ ଆଖିରେ କୌଣସି ପ୍ରତିକ୍ରିୟା ନଥିଲା । ଏହାଥିଲା ସମ୍ପୂର୍ଣ୍ଣ ବିସ୍ମରଣ । ନିଜର ବିସ୍ମୃତିକୁ ଘୋଡ଼ାଇବା ପାଇଁ ସେ ହାତଉଠାଇ ଅତିଥିଙ୍କୁ ଭିତରକୁ ଆସିବାକୁ ସଙ୍କେତ ଦେଲେ । ତାଙ୍କ ହାତରେ ଜେଡ୍ ଧାତୁର ବ୍ରେସ୍‌ଲେଟ୍ ଚକ୍‌ଚକ୍ କରୁଥିଲା । ମଳିନ ହସଟିଏ ତାଙ୍କ ଗାଲରେ ଗୋଟିଏ ଗଭୀର କୁଞ୍ଚିତ ଚର୍ମ ଦେଖାଇଦେଲା, ଯେଉଁଠାରେ ଏକଦା ସୃଷ୍ଟି ହେଉଥିଲା ଚିତ୍ତାକର୍ଷକ ଭଉଁରିଟିଏ ।

ନିନ୍ କେତେଥର ଏହି ଘରକୁ ଆସିଥିଲେ, ଆଉ ଜାଣିବାକୁ ପାଇଥିଲେ ଯେ ତାଙ୍କ ଚାଲିଯିବାର ତିନିବର୍ଷ ପରେ ବୋଇହୋନ୍ ବିବାହ କରିଥିଲେ । ତାଙ୍କ ସ୍ୱାମୀ ଏକଦା ଥିଲେ ତୁଙ୍ଗେ ଦୁକ୍ ପ୍ରଦେଶର ମୁଖ୍ୟ ଆଉ ଗୋଟେ ଦୁର୍ଘଟଣାରେ ପ୍ରାଣ ହରାଇଥିଲେ । ତାଙ୍କ ପୁଅ ଫ୍ରାନ୍ସରେ ପଢୁଥିଲା ଆଉ ୧୯୭୫ ପରଠାରୁ କେବେ ଘରକୁ ଫେରିନଥିଲା । ଏବେ ଗୋଟିଏ ଆଠବର୍ଷର ଝିଅ କେବଳ ତାଙ୍କ ପାଖରେ ରହୁଥିଲା ।

"ଝିଅଟି ଭଲ ଅଛି ତ ?" ନିନ୍ ପଚାରିଲେ, "ମୁଁ ତାକୁ ଟିକେ ଦେଖନ୍ତି ।"

"ସେ ଠିକ୍ ଅଛି, ଧନ୍ୟବାଦ । ହେଲେ ସେ ତା' ସାଙ୍ଗମାନଙ୍କ ସହିତ କେଉଁ ସଭାକୁ ଯାଇଛି, ସଂଧ୍ୟା ଆଗରୁ ଫେରିବ ନାହିଁ, ଏଇଥିଯୋଗୁଁ ତା' ଦେହ ବେଶୀ ଖରାପ ହେଉଛି ।"

"ବ୍ୟସ୍ତ ହୁଅନାହିଁ, ସେ ଏଥିରେ ଅଭ୍ୟସ୍ତ ହୋଇଯିବ ।" ନିନ୍ ତାଙ୍କୁ ସାନ୍ତ୍ୱନା ଦେଲେ ।

"ହଁ, ତୁମେ ସବୁଥିରେ ଅଭ୍ୟସ୍ତ ହେବାକୁ ବାଧ, ତାହାହିଁ ଈଶ୍ୱରଙ୍କ ଇଚ୍ଛା । ଆମେ ଭବିଷ୍ୟତକୁ ନେଇ ଅତିବେଶୀ ଭାବିପାରିବା ନାହିଁ ।"

ତାଙ୍କ ମଳିନ ହସରେ ଦେଖାଯାଉଥିଲା ଅସହାୟତା ଓ ତିକ୍ତତା । ଗୋଟେ ଛୋଟ କପ୍‌ରେ ସେ ଚା' ଢାଳିଲେ । "ମୋ ବାପା ଯେଉଁ ପଦ୍ମ ସୁରଭିଯୁକ୍ତ ଚା' ପିଉଥିଲେ ଏହା ସେ ଚା' ନୁହେଁ । ହେଲେ ଆମର ତଥାପି ଚା' ଅଛି ପିଇବାକୁ, ସେତକ ବି ବହୁତ ଭଲକଥା, ଈଶ୍ୱର ଜାଣନ୍ତି କେତେବର୍ଷ ପରେ ଅବସ୍ଥା କ'ଣ ହେବ !"

ପୁରୁଷ ଜଣକ ନୀରବରେ ଚା' ପିଇଲେ । ଉଭୟଙ୍କ ମଧ୍ୟରେ ଗୋଟେ କିଛି ଅମେଳ ଧ୍ୱନି ଥିଲା । ସେ ମନେମନେ ଗୋଳେଇଘାଣ୍ଟି ହେଲେ, "ତାହେଲେ ଏଇ କ'ଣ ସେ ମୁହୂର୍ତ୍ତ ଯାହାପାଇଁ ମୁଁ ଗତ ତିରିଶବର୍ଷ ହେଲା ଅପେକ୍ଷା କରିଥିଲି ?"

ସବୁକିଛି ବଦଳି ଯାଇଛି । ଗୋଟେ ଝିଅର ଗାଲର ମନଲୋଭା ଭଉଁରିଟି ଦିନେ ମୁହଁରେ ଗୋଟେ କଟାଦାଗ ପରି ଲୋଚାକୋଚା ଚମ ହୋଇଯିବା କଥା କିଏ କେମିତି ଭାବିପାରିବ ?

ନିନ୍ ନିଜ ଗବେଷଣା କାମକୁ ଅବହେଳା କଲେ, ଇଚ୍ଛାକଲେ ବି ସେ ଏଥିରୁ ବର୍ତ୍ତିପାରିଲେ ନାହିଁ । କାରଣ ଯେତେଥର ସେ ନିଜ କାମକୁ ଫେରିବାକୁ ଚେଷ୍ଟାକରୁଥିଲେ, ସେତେଥର ଗୋଟେ ଶୀତଳ ଖାଲିପଣ ଅନୁଭବ କରୁଥିଲେ ଆଉ ସମୟ ବାଡ଼େଇପିଟି କରିଥିବା ଭୟାନକ ବିପର୍ଯ୍ୟୟ ଦେଖି କମ୍ପିଉଠୁଥିଲେ ।

***

ସେ କେବେ ବି ହ୍ୟୁକୁ ଫେରିନଥାନ୍ତେ ଯଦି ତାଙ୍କ ସଂସ୍ଥାନ ତାଙ୍କୁ ଏଠାକୁ ପଠାଇନଥାନ୍ତା । ଏହା ଘଟିଥିଲା କାରଣ ସ୍ଥାନୀୟ ପ୍ରଶାସନ ଅନୁରୋଧ କରିଥିଲେ ଜଣେ ବିଶେଷଜ୍ଞଙ୍କୁ ଏଠାର ପ୍ରାଚୀନ ସ୍ଥାପତ୍ୟ ଅନୁଶୀଳନ କରିବାକୁ ପଠାଇବା ପାଇଁ । ଏହି ଅନୁରୋଧର ଉତ୍ତରରୂପେ ସେ ଆସିଥିଲେ, କିନ୍ତୁ ମନରେ ଭାବୁଥିଲେ ଉତ୍ତରାଞ୍ଚଳର ପ୍ରାଚୀନ ଦୁର୍ଗମାନଙ୍କରେ ସେ ଯେପରି ଭଲକାମ କରିଥିଲେ, ଏଠାରେ ସେପରି କରିପାରିବେ ନାହିଁ । ସାଧାରଣତଃ ଲୋକେ ଭାବନ୍ତି ଯେ କେବଳ କଳାକାରମାନେ ନିଜକାମ ପାଇଁ ପ୍ରେରଣା ଦରକାର କରନ୍ତି, ହେଲେ ବୈଜ୍ଞାନିକ ବି ପ୍ରେରଣା ବିନା ଗବେଷଣାକୁ କଷ୍ଟକର ଆଉ ବିରକ୍ତିକର ମନେକରେ । ଆଉ ଏବେ, ସେ ବସିଥିଲେ, ଫରବିଡ଼େନ୍ ପର୍‌ପଲ୍ ନଗର କାନ୍ଥର ପାଦଦେଶରେ । ଚାରିପାଖେ ଡେଙ୍ଗା ଘାସ ମଝିରେ ଛୋଟ ଛୋଟ ବିନ୍ଦୁପରି ଭର୍ତ୍ତି ହୋଇଥିଲା ଲାଲରଙ୍ଗର ଫୁଲସବୁ ।

ତାଙ୍କ ପଛରେ ଥିଲା ହସର ଉଚ୍ଚରୋଳ । ଗୋଟେ ଛୋଟ ଚଢ଼େଇ ଘାସ ଭିତରେ ଛପିଯାଉଥିଲା, ଆଉ ଝିଅଟି ଖୁସିରେ ତାକୁ ଅନୁସରଣ କରୁଥିଲା ।

"ସାବଧାନ ମିସ୍ ପୋଙ୍ଗ୍ ! ଘାସରେ ଗୋଡ଼ ଆଞ୍ଜୁଡ଼ି ହୋଇଯିବ !"

"ପ୍ରଫେସର, କି ସୁନ୍ଦର କହିଲେ । ବୋଧେ ସୂର୍ଯ୍ୟକିରଣ ଯୋଗୁଁ ଡରିଯାଇଛି ଚଢ଼େଇଟି ।"

ଗୋଟେ ପଥର ଉପରେ ପୋଙ୍ଗ୍ ବସିପଡ଼ିଲା ତାଙ୍କ ପାଖରେ ।

"ତୁମର ବୟସ କେତେ ?" ପଚାରିଲେ ନିନ୍

"ମତେ କୋଡ଼ିଏ ବର୍ଷ ।"

"କେତେ ଦିନ ହେଲା କାମ କରୁଛ ?"

"ଦୁଇବର୍ଷ । ହାଇସ୍କୁଲ ଛାଡ଼ିବା ପରଠାରୁ ।"

"କଲେଜ କାହିଁକି ଗଲନାହିଁ ?"

ପୋଙ୍ଗ୍ ନୀରବରେ ହସିଲା, କେବଳ ଲୋକଟି ଆଡ଼କୁ ଅନେଇଲା, ଯେମିତି କହିବାକୁ ଚାହୁଁଥିଲା, "ମୁଁ କେମିତି ଜାଣିଲି ? ଏତେ ସବୁଘଟଣା ବାହାରେ ଘଟୁଥିଲା ।"

"ତୁମ କାମ କେମିତି ଲାଗୁଛି ?"

"ଓଃ, ବହୁତ ଭଲ ଲାଗୁଛି । ଯାତ୍ରୀମାନଙ୍କୁ ମୁଁ ଐତିହାସିକ ଜାଗାକୁ ନେଇଯାଏ । ଯଦି ଆମେ ମିନ୍‌ମଙ୍ଗ୍ ସମାଧି ବା ହୋଚେନ ଗାଲେରୀ ଦେଖିବାକୁ ଯାଉ, ଆମକୁ ପରଫ୍ୟୁମ୍ ନଦୀ ଟପି ଯିବାକୁ ପଡ଼େ, ଆଉ କେତେ ଖୁସିଲାଗେ । ବେଳେବେଳେ ଏତେ ବିଦେଶୀ ଟୁରିଷ୍ଟ ଆସନ୍ତି ଯେ ମତେ ସପ୍ତାହସାରା କାମକରିବାକୁ ପଡ଼େ ।"

ନିନ୍ ନିରିଖେଇ ଝିଅଟିକୁ ଲକ୍ଷ୍ୟକଲେ । "ପୋଙ୍ଗ୍ ... ତୁମେ କେବେ ବୋର୍ ହୋଇଛ ?" ମନେ ମନେ ଗତ କେତେ ବର୍ଷରେ ନିଜ ମାନସିକ ଅବସ୍ଥା କଥାଭାବି ସେ ହଠାତ୍ ପଚାରିଦେଲେ ।

"ଓଃ, ବେଳେବେଳେ ମୁଁ କ୍ଳାନ୍ତ ହୋଇଯାଏ । ଅନେକ ସମୟରେ ମତେ ବାହାରକୁ ଯିବାକୁ ପଡ଼େ ଆଉ ଦରକାରୀ ଜୋତା, ଲୁଗାପଟା ଯୋଗାଡ଼ କରିବା ବି କଷ୍ଟକର । ହେଲେ ମୋ ଦେହ କେବଳ କ୍ଳାନ୍ତ ହୋଇଯାଏ, ମନନୁହେଁ ।"

ଝିଅଟି ଫୁଲଟିଏ ତୋଳିଲା । ତାପରେ ତାର ବୋଧେ ମନେପଡ଼ିଗଲା ଯେ ଫୁଲ ଡେମ୍ଫର ଅାଁସୁ ହାତରେ ଲାଗିଲେ ଖୁବ୍ କୁଣ୍ଡେଇ ହେବ, ସେ ଫୁଲଟିକୁ ଫୋପାଡ଼ି ଦେଲା ଆଉ ଯତ୍ନର ସହ ରୁମାଲ କାଢ଼ି ତା' ଗୋଲାପି ଆଙ୍ଗୁଳିଗୁଡ଼ିକୁ ପୋଛିଦେଲା ।

ଏଥର ଝିଅଟି ଅଧିକ ସହଜ ହୋଇ ଆସୁଥିଲା । "ଆପଣ ଜାଣନ୍ତି", ଗୋଟେ ଗୁପ୍ତକଥା କହିଲା ପରି ସେ କହିଲା, "ସ୍କୁଲରେ ପଢ଼ିଲାବେଳେ ମୁଁ ଭାରି ଲାଜକୁଳୀ ଥିଲି । ଡଙ୍ଗ୍ ଖାନ୍ ବାଳିକା ବିଦ୍ୟାଳୟରେ, ଆମେ ଦୁଇତିନିଜଣ କେବଳ ପରସ୍ପର ଘରକୁ ଯାଉଥିଲୁ, ଲୋକଗହଳିକୁ ଆମେ ବର୍ଜନ କରୁଥିଲୁ । ତେଣୁ ଯେତେବେଳେ ମୁଁ କାମ କରିବା ଆରମ୍ଭ କଲି, ପ୍ରତିଥର ଭ୍ରମଣକାରୀ ଦଳଙ୍କ ମୁହାଁମୁହିଁ ହେଲାବେଳକୁ ମୁଁ ଡରରେ କାଠ ହୋଇଯାଉଥିଲି ଆଉ ସେମାନଙ୍କୁ କିଛି କହିଲାବେଳକୁ ମୋ ଆଖି ଲାଖିରହିଥାଏ ମୋ ଜୋତା ଉପରେ ... ।"

ଉଚ୍ଚସ୍ୱରରେ ହସିଦେଇ ନିଜ କଥାକୁ ସେ ବାଧାଦେଲା ।

"ଆଉ ଏବେ ?" ନିନ୍ ପଚାରିଲେ ।

"ମୋ ଭୟକୁ ଅତିକ୍ରମ କରିବାକୁ ମୁଁ ଆପ୍ରାଣ ଉଦ୍ୟମ କଲି", ପୋଙ୍ଗ୍ ଉତ୍ତର ଦେଲା । "ମୁଁ ଦର୍ପଣ ସାମ୍ନାରେ ଠିଆହୋଇ କହିବାକୁ ଅଭ୍ୟାସ କଲି । ଏବେ ମୁଁ ଆଉ ଡରୁନାହିଁ ଯଦିଓ କଥା ଆରମ୍ଭକଲାବେଳକୁ ମତେ ତଥାପି ଟିକିଏ ଅପ୍ରତିଭ ଲାଗେ ।"

"କେତେ ସମୟ ତୁମକୁ କହିବାକୁ ପଡ଼େ ?"

"ମ୍ୟୁଜିୟମ୍ ସଂସ୍ଥାନ ଦ୍ୱାରା ପ୍ରସ୍ତୁତ ବକ୍ତବ୍ୟ କେବଳ ପାଞ୍ଚମିନିଟ୍ ନିଏ, କିନ୍ତୁ ମୁଁ ଐତିହାସିକ ନଥିପତ୍ରରୁ ଆଉ ଲୋକକଥାରୁ ଅଧିକ ବିଷୟ ଯୋଡ଼େ । ତାଛଡ଼ା ମୋ ନିଜ ବାଟରେ କହିବାକୁ ମତେ ଭଲଲାଗେ ।"

ଏଇ ଝିଅଟି କଥା କହିବାର କଳା ଆହରଣ କରିସାରିଥିଲା । ସ୍ମିତହସି ନିନ୍ ଆଶ୍ଚର୍ଯ୍ୟ ହେଉଥିଲେ ସେ ପ୍ରକୃତରେ କ'ଣ ଥିଲା ? ଲଜ୍ଜାଶୀଳା ନା ସାହସୀ ? ଏଇ ହ୍ୟୁ ଝିଅଟି ଭିତରେ କେତେଗୁଡ଼ିଏ ବିରୋଧାଭାସର ସମନ୍ୱୟ ବି ସେ ଦେଖିଲେ । ତାର ନିଜ ପ୍ରକୃତି ଆଉ ଜୀବନର ଆବଶ୍ୟକତା, ଆପାତତଃ ବିରୋଧୀ ଲାଗୁଥିବା ଦୁଇଟି ଉପାଦାନ ପରସ୍ପର ସହ ମିଶିଯାଇଥିଲା ... ସେ ସେଇଠି ବସି ଙ୍ଗେମନ ଗେଟ୍‌ର ମୁଖ୍ୟଦ୍ୱାରକୁ ଦେଖୁଥିଲା । ସ୍ୱର୍ଗୀୟ ଗୋଧୂଳିର ଆଲୋକବିଭା ପ୍ରତିଫଳିତ ହେଉଥିଲା ତା' ଆଖିରେ । ତା' ଅନେଇବା ଆଉ ବସିବାର ଢଙ୍ଗ, ମଥା ଉପରେ ତା' କେଶଗୁଚ୍ଛର ଗଣ୍ଠି, କାଠଟିଆରି ପଦ୍ମାକୃତି ତା' ବାଳପିନ୍ ସବୁମିଶି ଗୋଟେ ସମ୍ପୂର୍ଣ୍ଣ ସମ୍ମିଳିତ, ସୁସଙ୍ଗତ ଭାବ ଉପୁଜାଉଥିଲା ।

ଘରକୁ ଫେରିବା ବାଟରେ, ସେମାନଙ୍କ କାର୍ ପୁଣିଥରେ ଫୁଜୁଆନ୍ ସେତୁ ଟପିଲା । ତଳେ ଥିଲା ପରଫ୍ୟୁମ୍ ନଦୀର ନୀଳ ତରଙ୍ଗ । କାର ଝର୍କା ଦେଇ ଝଲକାଏ ଶୀତଳ ପବନ ବୋହି ଆସିଲା ।

"ପ୍ରଫେସର, ମୁଁ ଆପଣଙ୍କୁ କହିଦେବା ଉଚିତ ଯେ ଆପଣ ଆଜି ଅପରାହ୍ନରେ ଯେତେବେଳେ ଧୁଆଧୋଇ ହେଉଥିଲେ, ଆପଣଙ୍କ ଡେସ୍କ ଉପରେ ଥିବା କାଗଜପତ୍ର ଉପରେ ଆଖି ବୁଲାଉଥିଲି । ମୋର ଧାରଣା ଆପଣ ଯାହା ଲେଖିଛନ୍ତି ସେସବୁ ଆଉଥରେ ଭଲକରି ଦେଖିନେବା ଉଚିତ ।"

"ଆଚ୍ଛା, ତୁମେ କେମିତି ଏହା ଜାଣିଲ ?" ନିନ୍ ଗମ୍ଭୀର ହୋଇ ପଚାରିଲେ ।

"ଉଦାହରଣସ୍ୱରୂପ, ଆପଣ କହିଛନ୍ତି, ଦଶହଜାର ବର୍ଷର ସମାଧିସ୍ତମ୍ଭ (ରାଜା ତୁ ଡକ୍‌ଙ୍କ ସମାଧି)ର ନିର୍ମାଣ ପାଇଁ ଦୈନିକ ତିନିହଜାର ଶ୍ରମିକ ଶ୍ରମ କରୁଥିଲେ । ଏହା ତିନିହଜାର ନୁହେଁ ପ୍ରାୟ ତିରିଶ ହଜାର ।"

"ଏ ତଥ୍ୟ ତୁମେ କେଉଁଠାରୁ ପାଇଲ ?"

"ଗୋଟିଏ ଲୋକଗୀତରୁ, ଯେଉଁଥିରେ ଅଛି, 'ତିରିଶହଜାର ଭୋକିଲା ଜନତା ଛିନ୍ନବସ୍ତ୍ର ପିନ୍ଧି ଦିନସାରା ପଥର ବୋହୁଥିଲେ ଆଉ ପିଚିପିଚି ଚୂନପଥର ଗୁଣ୍ଡ କରୁଥିଲେ ।' ଠିକ୍ କେତେ ଲୋକ ଲାଗିଥିଲେ ତାର ସଂଖ୍ୟା ବାହାର କରିବାକୁ ମୁଁ ଚେଷ୍ଟା କରୁଛି । ସେ ଯାହାହେଉ ଏକଥା ସ୍ପଷ୍ଟ ଯେ କେବଳ ତିନିହଜାର ଶ୍ରମଶକ୍ତିକୁ ନେଇ, 'ସେ ଭଯ' ବିଦ୍ରୋହ (୧୮୬୬ରେ ହ୍ୟୁଠାରେ ଭାନ୍‌ନିଙ୍ଗେ ସମାଧିସ୍ତମ୍ଭ ନିର୍ମାଣବେଳେ ଶ୍ରମିକ ବିଦ୍ରୋହ ହୋଇଥିଲା) ଘଟିବା ସମ୍ଭବ ହୋଇନଥାନ୍ତା । ଭୋକିଲା, କ୍ଳାନ୍ତ ଲୋକେ ହାତରେ

ପିଟଣା ହାତୁଡ଼ି ଧରି ରାଜପ୍ରାସାଦକୁ ଦୌଡ଼ିଯିବାକୁ ସାହସ କରିନଥାନ୍ତେ ଯଦି ସେମାନଙ୍କୁ ଗଭୀର ଆତ୍ମବିଶ୍ୱାସରେ ଉତ୍ସାହିତ କରିବାକୁ ସେମାନଙ୍କ ସାଂଖ୍ୟିକ ଉତ୍କର୍ଷ ନଥାନ୍ତା ।"

"ସମ୍ଭବ, ଏହା ସମ୍ଭବ", ଝିଅଟିର ଯୁକ୍ତିରେ ପ୍ରଭାବିତ ହୋଇ ନିନ୍ ସନ୍ତୋଷ ପ୍ରକାଶ କଲେ । ସେ ପର୍ଯ୍ୟନ୍ତ ଏ ଗାଇଡ଼ଟିକୁ ଦର୍ଶନୀୟ ସ୍ଥାନମାନଙ୍କ ବିଷୟରେ ପୂର୍ବ ପ୍ରସ୍ତୁତ ବକ୍ତବ୍ୟ ଓ ହାତରେ ମାନଚିତ୍ର ସହିତ ଉତ୍ତମ ପୋଷାକପରିହିତ ବ୍ୟକ୍ତିଟିଏ ବୋଲି ସେ ଭାବିଥିଲେ । ହେଲେ ଏ ଝିଅଟି ପିନ୍ଧିଥିଲା ଅତି ସାଧାରଣ ପୋଷାକ ଆଉ ତାର ଥିଲା ଏକ ବିଚାରଶୀଳ ମନ ।

"ଏଇ ସଂଖ୍ୟା ମୋତେ ଗତକାଲି ମିଳିଥିଲା । ଏହାର ଭୁଲ୍‌ଠିକ୍ ଦେଖିବାକୁ ମୁଁ ସମୟ ପାଇନାହିଁ । ଏଇ ମୁହୂର୍ତ୍ତରୁ, ମୋର ସମସ୍ତ କାଗଜପତ୍ର ଦୟାକରି ପଢ଼ । ଲୋକଙ୍କ ଭାବିବାଠାରୁ ବହୁତ ବେଶୀ କାମ ତୁମେ ମୋ ପାଇଁ କରିପାରିବ ।"

"ସତରେ ପ୍ରଫେସର !" ପୋଙ୍ଗ୍ ବିସ୍ମିତ ହୋଇ ଚିତ୍କାରକଲା । "ଏ କାମ କରିପାରିଲେ ମୁଁ ବହୁତ ଖୁସି ହେବି ।" ତା'ର ପାନପତ୍ରପରି ମୁହଁଟି ଅକପଟ ଗର୍ବରେ ଆଲୋକିତ ହୋଇଉଠିଲା ।

କାର୍‌ଟି ଆଗ ପୋଙ୍ଗ୍‌କୁ ଲି ଥୋଙ୍ଗକିଏତ ରୋଡ଼ରେ ଥିବା ତା' ଘରକୁ ନେଇଗଲା, ତାପରେ ଫେରିଆସିଲା ରାଜ୍ୟ ଅତିଥିଭବନକୁ ।

ସେହି ସଂଧ୍ୟାରେ ନିନ୍ ତାଙ୍କ ପାଖରେ ଥିବା ମୂଳତଥ୍ୟଗୁଡ଼ିକୁ ତନ୍ନ ତନ୍ନ କରି ଦେଖିଲେ ଆଉ ଜାଣିପାରିଲେ ଯେ କେତେଗୁଡ଼େ ବିଷୟରେ ଅଧିକ ଅନୁଧ୍ୟାନ ଆବଶ୍ୟକ । ଟା'କପ୍‌ରେ ଚୁମକ୍ ଦେଲେ, ଆସ୍ତେ ଟା' ପିଉ ପିଉ, ତାଙ୍କ ଭ୍ରୂଦ୍ୱୟ କୁଞ୍ଚିତ ହୋଇଆସିଲା । ନିଜ ଉପରେ ନିଜର ଏ ଅସନ୍ତୋଷ ଥିଲା, ତାଙ୍କ ପାଖକୁ ପଠାହୋଇଥିବା ଉପାଦାନଗୁଡ଼ିକୁ ଭଲକରି ଯାଞ୍ଚ ନକରିଥିବା ଯୋଗୁଁ । ଏହାର ଅର୍ଥ ଗଲା କେତେ ବର୍ଷ ଭିତରେ ତାଙ୍କ ମନ ନିଷ୍କ୍ରିୟ ହୋଇଯାଇଥିଲା । ଏହା କ'ଣ ବାର୍ଦ୍ଧକ୍ୟର ସୂଚନା ? ନା, ଜଣେ ବିଜ୍ଞାନକର୍ମୀକୁ ତାର ପଚାଶ ବର୍ଷରେ ଅତି ବୃଦ୍ଧ ବୋଲି ତ କୁହାଯାଇପାରିବ ନାହିଁ ।

ପୋଙ୍ଗ୍ ହୋଇଗଲା ନିନ୍‌ଙ୍କର ନିକଟତମ ସହଯୋଗୀ । ଜ୍ଞାନର ଅବଦାନ ତା'ର ବିଶେଷ କିଛି ନଥିଲା, କିନ୍ତୁ ତା'ର ଉତ୍ସାହ ଗୋଟେ ନୂତନ ବାତାବରଣ ସୃଷ୍ଟିକରିଥିଲା, ଯେଉଁଥିପାଇଁ ନିଜକାମ ମି. ନିନ୍‌ଙ୍କୁ ପ୍ରୀତିପଦ ହେବା ଆରମ୍ଭ କରିଥିଲା ।

"ଆପଣ ଜାଣନ୍ତି କାହିଁକି ମୁଁ ସେଦିନ ଭାନ୍‌ନିଯେଁ ସମାଧି ନିର୍ମାଣ କରିଥିବା ଲୋକଙ୍କ ବିଷୟରେ କହୁଥିଲି ?" ପୋଙ୍ଗ୍ କହିଲା । କାରଣ ମୁଁ ନିଜେ 'ସେଭୟ' ବିଦ୍ରୋହ ବିଷୟରେ ଜାଣିବାକୁ ଆଗ୍ରହୀ । 'ତୁ ବୋକ୍' ସମାଧି ବିଷୟରେ ଯେତେବେଳେ କହୁଥିଲି ପ୍ରଥମେ ଏଠି ସେଠି ଗୋଟା କେତେ ପାଇନ୍ ଗଛ ସହିତ ଗୋଟେ ନିକାଞ୍ଚନ ପାହାଡ଼ର

ବର୍ଣ୍ଣନା କରି ସ୍ଥାନଟିକୁ ଜୀବନ୍ତ କରାଉଥିଲି । ତାପରେ ଜଣେ ରାଜା ଏହି ସ୍ଥାନଟିକୁ ନିଜର କବରସ୍ଥଳୀ ରୂପେ ବାଛିଲେ, ଆଉ ହଜାର ହଜାର କ୍ଷୁଧାର୍ତ୍ତଙ୍କୁ ବାଧ୍ୟକରା ହେଲା ସମତଳ ଜାଗାରୁ ପଥର ବୋହି ପର୍ବତ ମଝିରେ ଥିବା ନିର୍ମାଣ ସ୍ଥାନକୁ ବୋହି ନେବାକୁ । ନିର୍ମମ ଭାବରେ ଶୋଷିତ ହୋଇ, ଶେଷରେ ସେମାନେ ଜାଗ୍ରତ ହେଲେ ... ରକ୍ତନଦୀ ବୋହିଗଲା ... ଆଉ ସେସବୁ ଏବେ ବିସ୍ମୃତ, ଜଣେ ଏଠି ଦେଖେ କେବଳ ହଜାର ହଜାର ଲୋକଙ୍କ ଯନ୍ତ୍ରଣାକାତର ଭଗ୍ନବୁକୁର ସ୍ତୁପ । ମୁଁ ଭାବେ ଏହି ଜଡ଼ପାଷାଣର କାହାଣୀ ହିଁ ସେଇ ଲୋକମାନଙ୍କର ପ୍ରତୀକ ଯେଉଁମାନେ ଏଗୁଡ଼ିକୁ ରୂପ ଦେଇଥିଲେ ।

"ହଁ, ଏହା ବି ଗୋଟେ କଳ୍ପନା", ନିନ୍ ମୁଣ୍ଡ ହଲେଇ କହିଲେ । ସେ ଝିଅଟିର ମତକୁ ସମର୍ଥନ କରୁଥିଲେ ବି ନିଜର ସ୍ୱାଭାବିକ ସଂଯମ ସହିତ ଅଧିକ ସ୍ପଷ୍ଟ କରି କିଛି କହିବାକୁ ପସନ୍ଦ କଲେ ନାହିଁ ।

ପୋଙ୍ଗ୍ ଅଳ୍ପ ହସି, କୋମଳ ଭାବରେ କପାଳ ଉପର କେଶରାଶିକୁ ପୁଣିଥରେ ସଜାଡ଼ି ଦେଲା । ବହୁକାଳୁ ପ୍ରଚଳିତ ହ୍ୟୁ ନାରୀଙ୍କର ଏହି ଶୈଳୀ ନିନ୍‌ଙ୍କୁ ବିଚଳିତ କଲା । ସେ ହଠାତ ଦେଖିଲେ ଯେ ଝିଅଟି ପୂରାପୂରି ତିରିଶ ବର୍ଷ ପୂର୍ବର ବୋଇହୋନ୍ ପରି ଦେଖାଯାଉଛି ।

ହଁ, ସେଇ ଏକା ଚେହେରା, ଏକା ହସ, ସେଇ ଏକା କେଶ–ପୁନର୍ବିନ୍ୟାସ ଷ୍ଟାଇଲ । ନିନ୍ ଅସୁସ୍ଥ ଅନୁଭବ କଲେ, ଆଉ ତରତର ହୋଇ ଝରକା ଆଡ଼କୁ ଦୌଡ଼ିଗଲେ ।

ଝିଅଟି ବୋଇହୋନ୍ ସହିତ ଏତେ ମେଳ ରଖୁଚି କେମିତି ! ତଳେ ବହିଯାଉଥିବା ଆଁକୁ ନଦୀର ସବୁଜ ଜଳରାଶିକୁ ଅନାଇ ମି. ନିନ୍ ଆଶ୍ଚର୍ଯ୍ୟ ହେଉଥିଲେ । ଗୋଟେ ଅଦ୍ଭୁତ ସାମଞ୍ଜସ୍ୟ । କିନ୍ତୁ ବୋଇହୋନ୍ ଯେତେବେଳେ ଗୋଟେ ନମନୀୟ ଓ୍ୱିଲୋ ବୃକ୍ଷ ଶାଖାର ଛବି ମନରେ ଜାଗ୍ରତ କରାଉଥିଲା, ପୋଙ୍ଗ୍ ମନରେ ଆଣୁଥିଲା ସତେଜ ପାଇନ୍ ଗଛର ଗୋଟେ ଅଙ୍କୁରର ଧାରଣା । ବୋଇହୋନ୍ ଦୁଇବର୍ଷ ଆଗରୁ ଫ୍ରାନ୍ସ ଚାଲିଯାଇଥିଲା । ସେ ଏବେ କେବଳ ଗୋଟେ ଅସ୍ପଷ୍ଟ ଛବି, ଗୋଟେ ଚହଲା ଛାଇ କହିପାର, ଯାହାକୁ ଜଣେ ବାସ୍ତବ ଜୀବନ ଅପେକ୍ଷା ଅଧିକବାର ଭେଟେ ସ୍ୱପ୍ନରେ । ଏବେ, ଏ ଝିଅଟି ଏପରି ପ୍ରତୀୟମାନ ହେଉଥିଲା ଯାହା ପୂରା ନୂଆ ଲାଗୁଥିଲା । ସମୟ କେବଳ କ୍ଷୟ ଆଉ ମୃତ୍ୟୁ ଆଣେ ନାହିଁ, ଏହା ମଧ୍ୟ ଆଣେ ଜୀବନ ଆଉ ବିକାଶ ... ।

ନାଃ, କେବଳ ସମୟ ଯୋଗୁଁ ସବୁ ନିଷ୍ପତ୍ତି ହୋଇଯାଏ ନାହିଁ । ମଣିଷର ଇଚ୍ଛାଶକ୍ତି ବି ଥାଏ ସେଠି : ପରିସ୍ଥିତିକୁ ଦେଖିବାକୁ, ମୃତ୍ୟୁ ଦୃଷ୍ଟିକୋଣରୁ ନା ଜୀବନ ଦୃଷ୍ଟିକୋଣରୁ ? ଆକାଶଆଡ଼କୁ ବଳିଷ୍ଠ ଡାଳ ବଢ଼େଇ ଲମ୍ୱିଯାଇଥିବା ନଦୀକୂଳର ସୀମାହୀନ ଧାଡ଼ି ଧାଡ଼ି ଗଛକୁ ଅନେଇ ନିନ୍ ଚିନ୍ତା କରୁଥିଲେ ।

ପଛରେ ହାଲୁକା ପାଦଶବ୍ଦ । "ପ୍ରଫେସର ... ମୁଁ ଯାଉଛି । ଲାଗୁଛି ଆପଣଙ୍କ

ଦେହ ବିଶେଷ ଭଲନାହିଁ ।'' ନିନ୍ ବୁଲିପଡ଼ି ଦେଖିଲେ ଦୁଆର ପାଖରେ ଠିଆ ହୋଇଛି ପୋଙ୍ଗ୍ । ହାତରେ ତା' ବ୍ୟାଗ୍ । ତା' ଆଖିରେ ବରଂ ଗୋଟେ ଉଦାସ ଚାହାଣି ।

''ନା, ନା'', ତରତର ହୋଇ ଝିଅଟିକୁ ଆଶ୍ୱସ୍ତ କରାଇବାକୁ ନିନ୍ କହିଲେ, ''ମୁଁ ଠିକ୍ ଅଛି । ତୁମେ ବିରକ୍ତ ହୋଇନାହଁ ତ ପୋଙ୍ଗ୍ ?'' ତାପରେ ଅତି ଉଦାର ହୃଦୟ ବନ୍ଧାପରି କହିଲେ, ''ବେଳେବେଳେ ମୁଁ ଭାରି ଅଦ୍ଭୁତ ଦିଶେ ନା ?''

''ନା, ପ୍ରଫେସର । ମୋର ଏକମାତ୍ର ଭୟ, କାଳେ ଆପଣ କ୍ଳାନ୍ତ ହୋଇଯାଇଥିବେ । ଆପଣ ବହୁତ କଠିନ ପରିଶ୍ରମ କରିଚାଲିଛନ୍ତି ।''

''ମତେ ବହୁତ ଭଲ ଲାଗୁଛି, ପୂର୍ବଠାରୁ ଭଲ ।'' କହିଲେ ନିନ୍ । ଝିଅଟି ରହିଯାଉ ବୋଲି ସେ ଚାହୁଁଥିଲେ, ହେଲେ ନିଜ ଅଭ୍ୟାସମୁତାବକ କହିଲେ, ''ଏବେ ତୁମେ ଘରକୁ ଯାଇପାର, ଆଜି ଦିନସାରା ଆମେ ଖୁବ୍ କାମ କରିଛେ ।''

ହ୍ୟୁରେ ଆଜି ନିନ୍‌ଙ୍କ କାମର ଶେଷଦିନ । ହାନୋଇରେ ଜରୁରୀ କାମ ଅଛି, ତିନିଦିନ ଭିତରେ ସେ ପହଞ୍ଚିଯିବେ ସେଠାରେ । ମାସକ ଭିତରେ ସେ ତିରିଶରୁ ଅଧିକ ଐତିହାସିକ ସ୍ଥାନ ହ୍ୟୁରେ ବୁଲିସାରିଲେଣି, ଆଉ ଚାରିଶହରୁ ଅଧିକ ପୃଷ୍ଠାର ଉପାଦାନ ଏକାଠି କରିପାରିଛନ୍ତି । କାମ ଏତେ ସହଜରେ ହୋଇପାରିଥିଲା ପୋଙ୍ଗ୍‌ର ସାହାଯ୍ୟ ଯୋଗୁଁ । ଆଜି ଅପରାହ୍‌ଣରେ 'ତୁ ଦୋକ୍' ସମାଧି ପରିସରରେ ଲାଲ ମାଳତୀ ଫୁଲ କେତେ ଉଜ୍ଜ୍ୱଳ ରଙ୍ଗ ଧରି ହସୁଥିଲେ ବରଫ ପରି ଧଳା ସଗୁଡାଳମାନଙ୍କରେ । ଗୋଟେ ନରମ ସୁବାସ ଫୁଲପାଖୁଡ଼ା ନୀରବରେ ଖସିପଡୁଥିଲା ହାତରେ ସଜା ହୋଇଥିବା ପଥରମାନଙ୍କ ଉପରେ ।

ନିନ୍ ଆଉ ପୋଙ୍ଗ୍ ଜାଗାଟିର ଚାରିପଟେ ବୁଲୁଥିଲେ । ଦୁଇଦଳ ବିଦେଶୀ ଭ୍ରମଣକାରୀ ଆଉ ଗୋଟିଏ ଭିଏତନାମୀ ଦଳ ମନ୍ଦିର ଦର୍ଶନ କରୁଥିଲେ । ଗହଳିଠାରୁ ଦୂରରେ ରହିବା ପାଇଁ ସେମାନେ ଖିଏମ ହ୍ରଦର ଶିଉଳିଭରା ରେଲିଂ ବାଡ଼ା କଡ଼େ କଡ଼େ ବୁଲିବାକୁ ଯାଇଥିଲେ ।

ପୋଙ୍ଗ୍ ଗୋଟିଏ ରୂପେଲି-ପାଉଁଶିଆ ରଙ୍ଗର ଆଓଦାଇ ପିନ୍ଧିଥିଲା । ନରମ ସୂର୍ଯ୍ୟକିରଣରେ ତା' ତାଳପତ୍ର ଟୋପିର ଚିତ୍ରଗୁଡ଼ିକ ଚକ୍‌ଚକ୍ କରୁଥିଲା ।

ଚାଲୁଥିଲାବେଳେ, ନିନ୍ ଚଟକା ପଥରଗୁଡ଼ିକର ବିରାଟ ଆକୃତି ଦେଖି ଭାବୁଥିଲେ ସେଇ ଲୋକମାନଙ୍କ କଥା ଯେଉଁମାନେ ବହୁଦୂରରୁ ସେସବୁ ଏଠାକୁ ଆଣିଥିଲେ । ... ତାଙ୍କର ମନେପଡ଼ିଲା ଝିଅଟି କ'ଣ କହିଥିଲା ବିଦ୍ରୋହ ବିଷୟରେ ଯାହା ଶହେବର୍ଷ ତଳେ ସଂଘଟିତ ହୋଇଥିଲା ।

ବୁଲିପଡ଼ି ସେ କହିଲେ, ''ଅଳ୍ପଦିନରେ ମୁଁ ହାନୋଇ ଫେରିଯିବି । ଡୋନ୍ ତ୍ରଙ୍ଗଙ୍କ ଲିଖିତ 'ତ୍ରଙ୍ଗନିଆକା' (ଦେଶଭକ୍ତି ଗୀତ)ର ଗୋଟିଏ କପି ତୁମକୁ ଦେବି ।''

"ଧନ୍ୟବାଦ । ଆଉ ଆପଣଙ୍କ ବହି ପ୍ରକାଶିତ ହୋଇଗଲା ପରେ ମୋତେ ଗୋଟିଏ ଦେବେ ।"

"ତୁମ ନାମ ମୋ ବହିର ଉପର ଖୋଳରେ ରହିବ । ତୁମ ବିନା ଏହା ଏତେ ଶୀଘ୍ର ସରିପାରିନଥାନ୍ତା । ଏକଥା ସତ ।"

ପୋଙ୍ଗ୍ ବ୍ୟସ୍ତହୋଇ କହିଲା, "ନା, ନା, ଆପଣ କ'ଣ ଲେଖୁଛନ୍ତି ମୁଁ କେବଳ ପଢ଼ିବାକୁ ଚାହେଁ । ମୁଁ ତ ନୁହେଁ କେଉଁ ଗବେଷକ ବା ପନ୍ନତତ୍ତ୍ୱ ବିଶାରଦ ।"

"ତୁମର ଏହି ଯେଉଁ ଅନୁଭବମାନ ରହିଛି, ତାହାହିଁ ପ୍ରତ୍ନତତ୍ତ୍ୱ ଅଧ୍ୟୟନ ପାଇଁ ବାଟ ଦେଖାଏ । ତୁମେ ଯଦି ଚାହିଁବ, ମୁଁ ତୁମକୁ ବିଜ୍ଞାନର ଏଇ ବିଭାଗରେ ପ୍ରବେଶ କରାଇଦେବି । ଆଉ ଦେଖିବ, ଦିନେ ତୁମେ ଆମ ସଂସ୍ଥାନରେ କାମ କରୁଥିବ । ଏହା ଆଦୌ କଷ୍ଟକର ନୁହେଁ ।"

ପୋଙ୍ଗ୍ ତା' ମୁଣ୍ଡ ହଲାଇଲା । ଏଇ ଅପରାହ୍ଣରେ ସେ ତାର ଲମ୍ବାବାଳକୁ କାନ୍ଧ ଉପରେ ଖୋଲା ଛାଡ଼ିଦେଇଥିଲା । ତା' ଆଓଦାଇ ଆଉ କେଶସଜ୍ଜା ମିଶି ଅତି ଆକର୍ଷଣୀୟ ଦେଖାଯାଉଥିଲା । ହେଲେ ତାର ଉତ୍କର୍ଷ ଚାଲି, ଢଙ୍ଗରଙ୍ଗ ସତ୍ତ୍ୱେ, ଏପରି କିଛି ତା' ଭିତରେ ଥିଲା ଯାହା ଇଣକୁ ପାଇନ୍ ଅଙ୍କୁର କଥା ଭାବିବାକୁ ବାଧ କରୁଥିଲା ।

"ମୁଁ ପ୍ରତ୍ନତତ୍ତ୍ୱକୁ ଭଲପାଏ", କହିଲା ପୋଙ୍ଗ୍, "ହେଲେ ଭ୍ରମଣକାରୀମାନଙ୍କ ପାଇଁ ମୁଁ କେବଳ ଭଲକାମ କରିବାକୁ ଚାହେଁ । ଯଦି ମୁଁ କେବେ ପ୍ରତ୍ନତତ୍ତ୍ୱ ପଢ଼େ, ମୋର ଏକମାତ୍ର ଲକ୍ଷ୍ୟ ହେବ ଗୋଟିଏ ଭଲ ଗାଇଡ୍ ହେବା ।" ଟିକିଏ ରହିଯାଇ ସେ ପୁଣି କହିଲା, "ଲୋକଙ୍କୁ ମୁଁ କହିବାକୁ ଚାହେଁ ସୁନ୍ଦରତା କ'ଣ, ମୁଁ ବିଶ୍ୱାସ କରେ ଯେ ସୁନ୍ଦର ଜିନିଷମାନ ତୁମକୁ ଅଧିକ ବୁଦ୍ଧିମାନ ଆଉ ଅଧିକ ଭଲ କରାଏ ।"

ନିନ୍ ଆଉ ପୋଙ୍ଗ୍ ଠିଆହେଲେ । ଏଥର ସେମାନେ ମନ୍ଦିର ଦର୍ଶନ କରିବାକୁ ଯାଇପାରିବେ ; ଭ୍ରମଣକାରୀ ଦଳ ଚାଲିଯାଇଥିଲେ । ପୋଙ୍ଗ୍ ଉପର ପତ୍ରଗହଳିକୁ ଅନାଇ, କିଞ୍ଚିତ୍ ଅବସାଦ ସ୍ୱରରେ କହିଲା : "ପ୍ରଫେସର, ଆପଣଙ୍କ ଭଳି କାହାକୁ ମୁଁ କେବେ ଦେଖିନାହିଁ, ଆପଣଙ୍କ ସାଥିରେ ଆଉ କେତେଦିନ ମୁଁ କାମ କରିପାରିଥାଆନ୍ତି କି !"

ନିନ୍ ମଥା ହଲାଇଲେ । ତାଙ୍କ ଛାତି କାଟିଲା ।

ସଂଧ୍ୟା ପାଞ୍ଚଟା । ଦୁଇଧାଡ଼ି ପାଇନ୍ ବୃକ୍ଷ ମଝିରେ, ଧଳା ଜିପ୍‌ଟି ଦ୍ରୁତଗତିରେ ତଳକୁ ଗଡ଼ିଯାଉଥାଏ । ଖୁବ୍ ଶୀଘ୍ର, ନାମ ଜିଓ ସେତୁ ଆସିଗଲା । ତାପରେ ଲେଲୋଇ ରୋଡ୍ ଆଉ ତେନ୍ତୁଳି ଗଛ । ଝିଅଟିର କାନ୍ଧ ଉପର ଦେଇ ନିନ୍ ଦେଖିଲେ ହାତଧରାଧରି ହୋଇ, ଲାଲ ସ୍କାର୍ଫ ପିନ୍ଧିଥିବା ଦଳେ ପୁଅ-ଝିଅ ପେଲାଙ୍ଗ ରାଜପ୍ରାସାଦ ଭିତରକୁ ପ୍ରବେଶ କରୁଥିଲେ । ସେମାନଙ୍କ ଉଚ୍ଚ ହର୍ଷରୋଳରେ ଥିଲା ଏକ ଶେଷହୀନ ଆନନ୍ଦ ଓ ଉତ୍ସାହବର୍ଦ୍ଧକ ଧ୍ୱନି ।

ବହୁଦିନତଳେ ପଢ଼ିଥିବା ଏକ ଭାରତୀୟ କିମ୍ବଦନ୍ତୀ ହଠାତ୍ ନିନ୍‌ଙ୍କର ମନେପଡ଼ିଗଲା । କିମ୍ବଦନ୍ତୀଟି ଥିଲା ସେଇ ପ୍ରାଚୀନ ଏବଂ ମରୁଥିବା ଫିନିକ୍ସ ବିଷୟରେ । ଏଇ ଫିନିକ୍ସ ଚଢ଼େଇଟି ଉଡ଼ିଯାଏ ଗୋଟେ ପାହାଡ଼ ଶୃଙ୍ଗ ଉପରକୁ ଯେଉଁଠି ଯେ କାଠି-କୁଟା ଆଉ ପାନମହୁରୀ ଗଛର ଅଠାରେ ଗୋଟିଏ ବସାବାନ୍ଧେ । ସୂର୍ଯ୍ୟାସ୍ତ ବେଳକୁ, ପକ୍ଷୀଟି ମୃତ୍ୟୁମୁଖୀ ହୁଏ ଆଉ ମୁଠାଏ ପାଉଁଶରେ ପରିଣତ ହୋଇଯାଏ । ସେଇ ପାଉଁଶ ମୁଠାକରୁ, ବାହାରେ ଗୋଟିଏ ରୂପାରଙ୍ଗର ପୋକ । ଯେତେବେଳେ ବସନ୍ତଋତୁ ଆସେ, ପୋକଟି ପରିବର୍ତ୍ତିତ ହୁଏ ଏକ ଯୁବ ଫିନିକ୍ସରେ, ତାର ପୂର୍ବପୁରୁଷଠାରୁ ଅଧିକ ଉଜ୍ଜ୍ୱଳ, ଚିତ୍ତାକର୍ଷକ ଆଉ ଅଧିକ ଶକ୍ତିଶାଳୀ ହୋଇ ।

କିମ୍ବଦନ୍ତୀଟି ମନେପକାଇପାରିଥିବାର ଖୁସିରେ ଆହ୍ଲାଦିତ ହୋଇ ନିନ୍ ହସିଲେ । ସେ ଏହାକୁ ସ୍ଥାନଦେବେ ନିଜ ବହିରେ, ଗୋଟେ ବହି ଯାହା ଅନେକ ଆଗରୁ ସରିପାରିଥାନ୍ତା । ପ୍ରଥମଥର ଯେତେବେଳେ ସେ ଏହି ହ୍ୟୁକୁ ଫେରିଥିଲେ, ବୋଇହୋନ୍‌କୁ ଆଉ ଥରେ ଦେଖିବା ଭିତରେ ନିଜ ପ୍ରିୟ ସହରକୁ ଖୋଜିବା ଉଚିତ ନଥିଲା । ଦୁଇଟି ଏକଶିଙ୍ଗୀ ଜୀବଙ୍କ ଦ୍ୱାରା ସଜ୍ଜିତ ଗେଟ୍ ପାଖକୁ ତାଙ୍କର ଫେରିବା ଦରକାର ନଥିଲା । ହ୍ୟୁ ଲୋକଙ୍କ ବିପୁଳ ଉତ୍ସାହ ଭିତରେ, ଏପ୍ରିଲର ସୂର୍ଯ୍ୟ ଦ୍ୟୁତି ମଧ୍ୟରେ ସେ ପ୍ରକୃତ ହ୍ୟୁକୁ ଖୋଜିବା ଠିକ୍ ହୋଇଥାନ୍ତା ।

ନିନ୍ ପୁଣିଥରେ ହ୍ୟୁକୁ ଯାଇଥିଲେ । ତାଙ୍କ ଭଲପାଉଥିବା ସହର ତଥାପି ସେଇଠି ଥିଲା, ଯଦିଓ ଅଦାବାସ୍ନାବାଲା କେକ୍ ଆଉ ବାଇଗିଣୀ ଆଓଦାଇ ଅନ୍ତର୍ହିତ ହୋଇଯାଇଥିଲା ।

## ଲେଖକ ପରିଚିତି

**ଗୁୟେଁ ମାନ୍ ତୁଆଁ,** ଜନ୍ମ ୧୯୪୫, ହାନୋଇ । 'ୟଙ୍ଗ ଭଲ୍ୟୁଣ୍ଟିଅର ଫୋର୍ସ ପର୍ ନ୍ୟାସନାଲ ସାଲଭେସନ'ରେ କିଛି ବର୍ଷ କାର୍ଯ୍ୟକରି ପରେ ସେ ଜଙ୍ଗଲ ବିଭାଗରେ ନିଯୋଜିତ ହେଲେ । ଭିଏତନାମ ପୁନର୍ମିଳିତ ହୋଇଯିବା ପରଠାରୁ ସେ ଏଡ଼ିଟର ଭାବରେ ହୋଚିମିନ୍ ସିଟିର ପ୍ରକାଶନ ସଂସ୍ଥାରେ କାର୍ଯ୍ୟରତ ।

ତାଙ୍କ ପ୍ରକାଶିତ ଛଅଟି ଉପନ୍ୟାସ – ରିମେନିଙ୍ଗ୍ ଡିଷ୍ଟାନ୍ସ, ଫେସିଙ୍ଗ୍ ଦି ସି, ଶାମ ଆଇଲାଣ୍ଡ, ଆନ୍ ଏକ୍ସଟ୍ରା ମ୍ୟାରିଟାଲ ଆଫେୟାର, ଫାଉଣ୍ଡେସନ୍, ଫୋର ଡାର୍ଟି ହାଣ୍ଡସ୍ । କ୍ଷୁଦ୍ରଗଳ୍ପ ସଂକଳନ : ମାଇଁଡିଅଁର ଫ୍ରେଣ୍ଡ୍, ଦି ଫାଷ୍ଟ ଇୟର୍ ଇନ୍ ପିସ୍, ଦି ଟ୍ରାଫିକ୍ ପୁଲିସ୍‌ମ୍ୟାନ୍ ଆଟ ଏ କ୍ରସରୋଡ଼ସ୍ । ଗୁୟେଁ ମାନତୁଆଁ ତାଙ୍କ 'ଫେସିଙ୍ଗ୍ ଦି ସି' ଉପନ୍ୟାସ ପାଇଁ ଭିଏତନାମିଜ୍ ଲେଖକ ସଂଘ ଦ୍ୱାରା ଶ୍ରେଷ୍ଠ ଉପନ୍ୟାସ ପୁରସ୍କାର ଲାଭ କରିଛନ୍ତି ।

**ଭୁ ଥି ଥୋଙ୍ଗ୍,** ଜନ୍ମ ୧୯୩୦, ହା–ତେ ପ୍ରଦେଶ । ଲେଖିକାଙ୍କ ରଚନାର ମୂଳଭିତ୍ତି ଭିଏତନାମର ଗ୍ରାମାଞ୍ଚଳ ଓ ପ୍ରକୃତି । କଥାକାର ଥୋଙ୍ଗ୍ ସାହିତ୍ୟ ଓ ଆର୍ଟ ସମ୍ବାଦପତ୍ରର ଏଡ଼ିଟର ଭାବରେ ଦୀର୍ଘକାଳ କାର୍ଯ୍ୟ କରିଛନ୍ତି । ସାହିତ୍ୟ ପତ୍ରିକାର କ୍ଷୁଦ୍ରଗଳ୍ପ ପ୍ରତିଯୋଗିତାରେ ସେ ପ୍ରଥମ ପୁରସ୍କାର ଲାଭ କରିଥିଲେ । ଅଧୁନା ଲେଖିକା ହୋଚିମିନ୍ ସିଟିରେ ଅବସ୍ଥାପିତା ।

ତାଙ୍କ ପ୍ରକାଶିତ କ୍ଷୁଦ୍ରଗଳ୍ପ ସଂକଳନ : ଦି ଫିସ୍‌କ୍ରିଲ, ସୋଲ୍‌ଡରିଙ୍ଗ, ଟୁ ସିଷ୍ଟରସ୍, ଦି ୱାଟରଲିଲି, ଦି ଓଲ୍ଡ଼ ଡକ୍ ରିଅରର୍ ଓ ପତ୍ନୀ, ଦି ଷ୍ଟୋରୀ ବିଗାନ ଫ୍ରମ୍ ଦି ଚିଲଡ୍ରେନ୍, ଦି ଡକ୍ ସିଷ୍ଟରସ୍ ଇତ୍ୟାଦି ।

**ଭୁ ବାଓ,** ଜନ୍ମ ୧୯୩୧, ସ୍ଥାନ – ଥାଇବିନ୍ ପ୍ରଦେଶ । ୟଙ୍ଗ୍ ଭଲ୍ୟୁଣ୍ଟିଅର୍ ଫୋର୍ସ ଜରିଆରେ ସୈନ୍ୟବାହିନୀରେ କାର୍ଯ୍ୟରତ ଥିଲାବେଳେ ୧୯୫୩ରୁ ସେ ଆରମ୍ଭ କରିଥିଲେ ଲେଖାଲେଖି । ଭିଏତନାମ ସିନେମା ମାଗାଜିନ୍‌ର ସେ ଥିଲେ ଡେପୁଟୀ ଚିଫ୍ ଏଡ଼ିଟର୍, ଅଧୁନା ହାନୋଇ ରାଇଟର୍ସ ଆସୋସିଏସନ୍‌ର ସେ ଚେୟାରମ୍ୟାନ୍ ।

ତାଙ୍କର କୋଡ଼ିଏଟି ପ୍ରକାଶିତ ପୁସ୍ତକ ମଧ୍ୟରେ ଉପନ୍ୟାସମାନ ହେଲା : ଟୁ ବି ଦି ଗଡ଼, ଉଇଆର୍ ଗୋଇଙ୍ଗ୍ ଟୁ ଗେଟ୍ ମ୍ୟାରେଡ଼, ଦି ଡିଷ୍ଟର୍ବାନ୍ସ, ଦି ଡେଷ୍ଟିନେସନ୍ ଓ ଟାଇମ୍ ଡଜ୍‌ନଟ୍ ୱେଟ୍ । ଆଉ ଗଳ୍ପ ସଂକଳନଗୁଡ଼ିକ ହେଉଛି : ଦି ବାମ୍ବୁ ଭ୍ୟାଲି, ଦି ଲାଟେଷ୍ଟ ନ୍ୟୁଜ୍, ଆୱାର ବ୍ୟାଟଲ୍ ଟ୍ୟାଙ୍କ୍‌ସ୍, ଦି ଏଲ୍‌ଡ଼େଷ୍ଟ ଆଣ୍ଡ ଦି ୟଙ୍ଗେଷ୍ଟ ଇତ୍ୟାଦି । କ୍ଷୁଦ୍ରଗଳ୍ପ ପାଇଁ ସେ ବହୁ ପୁରସ୍କାରରେ ସମ୍ମାନିତ ।

**ହୋ ଆନ୍ ଥାଇ,** ଜନ୍ମ ୧୯୬୦, ହାନୋଇ । ସେ ହାନୋଇର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଟରନ୍ୟାସନାଲ ରିଲେସନ୍ସରୁ ଓ ନୂଆଦିଲ୍ଲୀର ସେଣ୍ଟ୍ରାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହିନ୍ଦୀରୁ ସ୍ନାତକ ଶିକ୍ଷା ସମାପ୍ତ କରି ୧୯୯୧ରୁ ୧୯୯୪ ତିନିବର୍ଷ ଭାରତରେ ଅବସ୍ଥିତ ଭିଏତନାମ ଏମ୍ବାସିରେ ଏକ କୂଟନୀତିଜ୍ଞ ଭାବରେ କାର୍ଯ୍ୟ କରିଛନ୍ତି । ଅଧୁନା ସେ ହାନୋଇସ୍ଥିତ ବୈଦେଶିକ ବ୍ୟାପାର ମନ୍ତ୍ରଣାଳୟରେ କାର୍ଯ୍ୟରତ ।

୧୯୭୭ରୁ ସୃଜନକର୍ମ ଆରମ୍ଭ କରିଥିବା ହୋ ଆନ୍ ଥାଇଙ୍କର ବର୍ତ୍ତମାନ ସୁଦ୍ଧା ଛଅଟି ଉପନ୍ୟାସ ପ୍ରକାଶିତ ହୋଇଛି । ତାଙ୍କ ଉପନ୍ୟାସ : ବିହାଇଣ୍ଡ ଦି ସ୍କାଇ, ୱିଣ୍ଟର ଷ୍ଟିଲ ହାଜ୍ ନଟ୍ କମ୍, ମେନ୍ ଆଣ୍ଡ ଭେହିକ୍ଲ ରନ୍ ଇନ୍ ଦି ମୁନ୍‌ଲାଇଟ୍, ଦି ୱିମେନ୍ ଇନ୍ ଆନ୍ ଆଇଲାଣ୍ଡ, ଦି ଆମ୍ୟୁସ୍ ଇନ ସମର୍, ଆପିଅର୍ଡ଼ ଫ୍ରମ୍ ଦି ପିଙ୍କ୍ ମିଷ୍ଟ । ଚାରୋଟି ଗଳ୍ପ ସଂକଳନ : ଦି ବୟ ହୁ ୱେଟସ୍ ଆଟ ଦି ବସ୍‌ଷ୍ଟପ୍, ଦି ର୍‌ୟାଟଲ୍ ଫ୍ରମ୍ ଦି ୱିଣ୍ଡୋ, ଦି ସର୍ଚ୍ଚ, ଦି ଫ୍ରାଗ୍‌ମେଣ୍ଟ ଅଫ୍ ଦି ମ୍ୟାନ୍ ଲେଖକ ସମ୍ମାନିତ ହୋଇଛନ୍ତି ଆର୍ଟ ନ୍ୟୁଜ୍ ପେପର୍ ଦ୍ୱାରା ଆୟୋଜିତ ଗଳ୍ପ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ପାଇ । ଭିଏତନାମ ଟ୍ରେଡ଼ ୟୁନିୟନର ଶ୍ରେଷ୍ଠ ଉପନ୍ୟାସ ପୁରସ୍କାର ସେ ଲଭିଛନ୍ତି ।

**ଗୁୟେଁ ଫାନ୍ ହାକ୍,** ଜନ୍ମ ୧୯୪୨, ସ୍ଥାନ – ହାବାକ୍ ପ୍ରଦେଶ । ସେକେଣ୍ଡାରୀ ସ୍କୁଲର ଏହି ଶିକ୍ଷକ ସେତେବେଳେ ସାହିତ୍ୟ ଓ କଳା ସମ୍ବାଦପତ୍ରର ଅନ୍ୟତମ ସଂପାଦକ ଥିଲେ । ଅଧୁନା ସେ ହାନୋଇସ୍ଥ ଭିଏତନାମ ଲେଖକ ମହାସଂଘର ଇତିହାସ ପ୍ରକାଶନ ବିଭାଗର ସଂପାଦକ । ତାହାଙ୍କ ପ୍ରକାଶିତ ପୁସ୍ତକ : ସ୍ପାରୋ ନେଷ୍ଟ, ଦି କ୍ଲାଉଡ଼ସ୍ ମେଲ୍ଟେଡ଼ ଆୱେ, ଆଫ୍‌ଟର ଦି ସେପାରେସନ୍‌ସ୍, ଦି ବ୍ଲାକ୍ ହର୍ସେସ୍ ହୁଭ୍‌ସ୍ ଗିଫ୍ଟ ଅଫ୍ ଦି ନେଚର, ଦି ଲିବରିଛ ଲଭ ।

**ଡୋଙ୍ଗ୍ ଥୁ ହୋଙ୍ଗ୍,** ଜନ୍ମ ୧୯୪୭, ସ୍ଥାନ – ଥାଇବିନ୍ ପ୍ରଦେଶ । ଲେଖିକା ଯୁଦ୍ଧ ସମୟରେ ବୋମାବିଧ୍ୱସ୍ତ କ୍ୱାଙ୍ଗ ବୀନ୍ ପ୍ରଦେଶରେ ଜଣେ ଲୋକସଂସ୍କୃତି ବିଶେଷଜ୍ଞ ରୂପେ କାର୍ଯ୍ୟ କରିଛନ୍ତି । ୧୯୭୭ରୁ ଫିଚର୍ ଫିଲ୍ମ ନାସନାଲ କମ୍ପାନୀର ସ୍କ୍ରିପ୍ଟ ଲେଖିକା ଭାବେ କାର୍ଯ୍ୟରତ ।

ତାଙ୍କର ପ୍ରକାଶିତ ପୁସ୍ତକ : ଦି ବେନ୍‌ଲି ଫ୍ଲାଓ୍ବାର୍ସ, ଦି ଲଭ୍‌ଷ୍ଟୋରୀ ଟୋଲ୍‌ଡ଼ ଆଟ ଡନ୍, ପୋଟ୍ରେଟ ଅଫ୍ ଏ ନେବର, ବିୟଣ୍ଡ୍ ଦି ସୋର୍ ଅଫ୍ ମିରେଜ, ଏ ପିସ୍‌ଫୁଲ ମର୍ଣ୍ଣିଂ, ଦି ଟ୍ରିପ୍ ଅଫ୍ ମାଇଁ ଚାଇଲଡ଼୍‌ହୁଡ୍, ପାରାଡାଇଜ୍ ଅଫ୍ ଦି ବ୍ଲାଇଣ୍ଡ, ନଭେଲ୍ ୱିଦାଉଟ ଏ ନେମ୍ ଇତ୍ୟାଦି ।

ଗୋଁ ତୁ ଲାପ୍, ଜନ୍ମ ୧୯୪୨, ହାନୋଇ । ଏକ ନୌସେନା ପୋତରେ କ୍ୟାପ୍‌ଟେନ୍ ରୂପେ ସେ ସେନାସେବାରେ ଯୋଗ ଦେଇଥିଲେ । ଅଧୁନା ସେ ପିପୁଲସ୍ ଆର୍ମି ପବ୍ଲିଶିଂ ସଂସ୍ଥାନର ଜଣେ ଏଡ଼ିଟର ।

ଲେଖକଙ୍କ ପ୍ରକାଶିତ ଗଳ୍ପ ସଂକଳନ : ଫେଆରୱେଲ ଟୁ ଦି ଡେଜଟେଡ଼ ଆଇଲାଣ୍ଡ ଓ ଦି ଫିଫ୍ଟିନ୍ ଡେ ମଙ୍କ୍ । କ୍ଷୁଦ୍ରଗଳ୍ପ ପାଇଁ ସେ ମୁଖ୍ୟ ସମ୍ବାଦପତ୍ର ଓ ହାନୋଇ ପ୍ରକାଶନ ସଂସ୍ଥା ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

ଗୁୟେଁ ହୁୟେ ଥିଏପ୍, ଜନ୍ମ ୧୯୫୦, ହାନୋଇ । ଉତ୍ତର ପଶ୍ଚିମ ପାହାଡ଼ି ଇଲାକାର ଏକ ସେକେଣ୍ଡାରୀ ସ୍କୁଲରେ ଦଶବର୍ଷ ଶିକ୍ଷକତା କରିବା ପରେ, ହାନୋଇର ଶିକ୍ଷାବିଭାଗ ପ୍ରକାଶନ ସଂସ୍ଥାରେ ସଂପାଦକ ରୂପେ କାର୍ଯ୍ୟ କରୁଥିଲେ ।

ଗୁୟେଁ ହୁଏ ଥିଏପଙ୍କର ପ୍ରକାଶିତ ତିନୋଟି କ୍ଷୁଦ୍ରଗଳ୍ପ ସଂକଳନ : ଦି ଜେନେରାଲ ରିଟାୟାର୍ସ, ଦି ହୁଆତତ୍ ୱିଣ୍ଡସ୍, ଡଟର ଅଫ୍ ଦି ୱାଟର ସ୍ପ୍ରାଇଟ୍ ।

ଗୁୟେଁ ଖାଇ, ଜନ୍ମ ୧୯୩୦, ହାନୋଇ । ଲଗାତାର ଦୁଇଟି ଯୁଦ୍ଧରେ ସାମ୍ବାଦିକ ଭାବରେ କାର୍ଯ୍ୟ କରିବାର ଅଭିଜ୍ଞତା ତାଙ୍କର ଅଛି । ଏକଦା ଭିଏତନାମ ରାଇଟର୍ସ ଆସୋସିଏସନ୍‌ର ଭାଇସ୍ ପ୍ରେସିଡ଼େଣ୍ଟ ଭାବରେ ସେ କାର୍ଯ୍ୟ କରିଥିଲେ । ବର୍ତ୍ତମାନ ହାନୋଇରେ ରହୁଛନ୍ତି ।

ତାଙ୍କ ଉପନ୍ୟାସ : କନ୍‌ଷ୍ଟ୍ରକ୍ସନ୍, ଦି କନଫ୍ଲିକ୍ଟ, ଏ ଷ୍ଟେଜ୍ ଅଫ୍ ଦି ରୁଟ୍, ପ୍ରୋସିଡ଼ ଫର୍ଦର, ଦି ସୋଲ୍‌ଜର, ଫାଦର ଆଣ୍ଡ ସନ୍ ମିଟିଂ ଅନ୍ ଦି ନ୍ୟୁଇୟର୍ସ ଇଭ୍, ଟାଇମ୍ ଫର୍ ହ୍ୟୁମାନ୍‌ବିଙ୍ଗ୍, ଇନ୍ ଏ ଲିଟିଲ୍ ୱାର୍ଲ୍ଡ । ନାଟକ : ରିଭଲ୍ୟୁସନ୍ । କ୍ଷୁଦ୍ରଗଳ୍ପ ସଂକଳନ : ଦି ପିନଟ୍ ହାର୍ଭେଷ୍ଟ, ଦି ଓଲ୍ଡ ମଙ୍କ ଅଫ୍ ଥାମ୍ ପାଗୋଡ଼ା ।

ଗୁୟେଁ ଥାନ୍ ଲଙ୍ଗ୍ (୧୯୨୫-୧୯୯୧), ଭିଏତନାମୀ କ୍ଷୁଦ୍ରଗଳ୍ପ ଜଗତର ଜଣେ ବହୁ ସମ୍ମାନିତ ଲେଖକ । ଜନ୍ମ ତାଙ୍କର ଦାନାଙ୍ଗ୍ ପ୍ରଦେଶର କ୍ୱାଙ୍ଗନାମ୍‌ରେ, ପରେ ୧୯୫୪ର ଜେନେଭା ଚୁକ୍ତି ଅନୁଯାୟୀ ସେ ହାନୋଇକୁ ଚାଲିଆସିଥିଲେ । ୧୯୫୪ର ଏହି ଚୁକ୍ତି ଭିଏତନାମକୁ ଦୁଇଭାଗରେ ବିଭକ୍ତ କରିଥିଲା । ଦୀର୍ଘକାଳ ସେ ପ୍ରକାଶନ ସଂସ୍ଥାର ଏଡ଼ିଟର ରୂପେ କାର୍ଯ୍ୟ

କରିଥିଲେ, ଯାହା ସେତେବେଳେ ସାହିତ୍ୟ ଓ କଳା ସମ୍ବାଦପତ୍ର ନାମରେ ନାମିତ ଥିଲା । ତାଙ୍କ ପ୍ରକାଶିତ ପୁସ୍ତକ : ଷ୍ଟୋରିଜ୍ ଆଟ ହୋମ୍ ଆଣ୍ଡ ଇନ୍ ଦି ଓ୍ୱର୍କସପ୍, ସାଉଣ୍ଡ ଅଫ୍ ଦି ଓ୍ୱିଙ୍ଗସ୍, ଏନସର୍କଲଡ଼ ବାଇ ଦି ଗ୍ରୀନେରୀ, ମିଡ଼ନାଇଟ, ଲି ସଁ ଦି ଗାର୍ଲିକ ହାର୍‌ଭେଷ୍ଟ, ଇନ୍ ଏ ସର୍ଟନ ମର୍ଣ୍ଣିଂ ଓ ଏ ସର୍ଟନ ଇଭିନିଂ ଇତ୍ୟାଦି ।

ଲେ ମିନ୍ ଖୁୟେ, ଜନ୍ମ ୧୯୪୯, ସ୍ଥାନ – ଥାନ୍ ହୋଆ ପ୍ରଦେଶ । ଲେଖିକା ଯୁଦ୍ଧକାଳରେ ୟଙ୍ଗ୍ ଭଲ୍ୟୁଣ୍ଟିଅର୍ ଫୋର୍ସରେ କାମ କରିଥିଲେ । ତାପରେ ଲେଖିକା ପାୟୋନିୟର ସମ୍ବାଦପତ୍ର ଓ ଭିଏତନାମ ଟେଲିଭିଜନରେ ସାମ୍ବାଦିକ ଭାବେ କାର୍ଯ୍ୟ କରିଛନ୍ତି । ଭିଏତନାମୀ ରାଇଟର୍ସ ଆସୋସିଏସନ୍ ପ୍ରକାଶନ ସଂସ୍ଥାର ଏଡ଼ିଟର ଭାବରେ ବର୍ତ୍ତମାନ ସେ କାର୍ଯ୍ୟରତ ।

ଲେଖିକାଙ୍କ ପ୍ରକାଶିତ ପାଞ୍ଚଟି ଗଳ୍ପ ସଂକଳନ : ଷ୍ଟାର୍ସ ଇନ୍ ଦି ଡିଷ୍ଟାନ୍ସ, ଦି ସମର୍ ପିକ୍‌ସ୍, ଦି ଡିନାଉନ୍ସମେଣ୍ଟ, ଆନ୍ ଇଭିନିଙ୍ଗ୍ ଆୱେ ଫ୍ରମ୍ ଦି ସିଟି, ଦି ମାଇନର୍ ଟ୍ରାଜେଡ଼ି । ଦୁଇଟି ଉପନ୍ୟାସ : ଆଇ ହଭ୍ ନଟ୍ ଫରଗର୍ଟନ୍ ମାଇଁ ଲଭ, ଦି ଗାର୍ଲ ଇନ୍ ଦି ବ୍ଲୁ ଲଙ୍ଗ୍ ଡ୍ରେସ୍ । ଭିଏତନାମୀ ରାଇଟର୍ସ ଆସୋସିଏସନ୍ ଓ ସାହିତ୍ୟ ସମ୍ବାଦପତ୍ରର ଅନେକ ପୁରସ୍କାରରେ ସେ ସମ୍ମାନିତ ।

ଟ୍ରାଁ ଥୁଏ ମାଇ, ଜନ୍ମ ୧୯୫୪, ସ୍ଥାନ – ଥୁଆ ଥୁଏଁ ହୁଏ ପ୍ରଦେଶ । ହ୍ୟୁ ପେଡ଼ାଗଗି କଲେଜରେ ସେ ଥିଲେ ଅଧ୍ୟାପକ । ବର୍ତ୍ତମାନ ମଧ୍ୟଭିଏତନାମର ପୂର୍ବତନ ରାଜଧାନୀ ହୁଏ ସହରର ସାହିତ୍ୟ ଓ କଳାକେନ୍ଦ୍ରରେ ଲେଖିକା କାର୍ଯ୍ୟରତ ।

ଲେଖିକାଙ୍କ ପ୍ରକାଶିତ ଦୁଇଟି ଗଳ୍ପ ସଂକଳନ : ଲିଜେଣ୍ଡ ଅଫ୍ ଦି ଫିନିକ୍ସ ଓ ଦି ପୋଏମ୍ ଏବାଉଟ୍ ଦି ସି ।

Laser typeset at Natasha D.T.P. Centre, Jaraka, Jajpur.
Printed at : Compudata Services, New Delhi – 20

ଆଧୁନିକ ଭିଏତନାମର ସ୍ୱପ୍ନ ଓ ସଂଘର୍ଷକୁ ପ୍ରତିଫଳିତ କରୁଥିବା ଭିଏତନାମୀ କାହାଣୀର ଏହି ସଂକଳନ ସୂଚାଇଦିଏ ସାରା ମାନବଜାତିର ମୁକ୍ତି ପାଇଁ ସ୍ୱତଃସ୍ଫୂର୍ତ୍ତ ଏକ ବ୍ୟାକୁଳତାକୁ । ଭିଏତନାମୀ ସଂସ୍କୃତି ଓ ଇତିହାସର ପୃଷ୍ଠଭୂମିରେ ଆଧୁନିକ ଜୀବନ ଓ ସମାଜ ସହ ସମ୍ମୁଖୀନ ହେବାର ଜଟିଳ ଦ୍ୱନ୍ଦ୍ୱ ତଥା ନବନିର୍ମାଣର ସ୍ୱପ୍ନସମ୍ଭାବନା ଓ ମୁକ୍ତଜୀବନର ଶ୍ରୀ ଓ ସୌନ୍ଦର୍ଯ୍ୟ ପ୍ରତି ଅନୁରାଗ ମଧ୍ୟ କାହାଣୀଗୁଡ଼ିକରେ ପ୍ରତିଫଳିତ । ତେରଟି ଚିତ୍ତାକର୍ଷକ କାହାଣୀର ଏହି ସଂକଳନ ସମୁଜ୍ଜ୍ୱଳ ଏସୀୟ ସଂସ୍କୃତିର ପ୍ରସାରିତ ଦିଗ୍‌ବଳୟଟିର ସନ୍ଧାନ ଦିଏ ।

ସଂକଳନଟିର ସଂପାଦକ **ହୋ ଆନ୍ ଥାଇ** ସମକାଳୀନ ଭିଏତନାମୀ ସାହିତ୍ୟରେ ଜଣେ ଔପନ୍ୟାସିକ ଓ କ୍ଷୁଦ୍ରଗଳ୍ପରଚୟିତା ଭାବରେ ସମ୍ମାନିତ । ପ୍ରଥମେ 'ହିନ୍ଦୀ କେନ୍ଦ୍ରୀୟ ସଂସ୍ଥାନ'ରେ ଜଣେ ଛାତ୍ର ଭାବେ ତଥା ପରବର୍ତ୍ତୀ କାଳରେ ଭିଏତନାମ ଦୂତାବାସରେ ଜଣେ ଅଧିକାରୀ ଭାବରେ ସେ ଭାରତରେ ଦୀର୍ଘ ଛଅବର୍ଷ ବିତାଇଛନ୍ତି । **ଡ. ଶକୁନ୍ତଳା ବଳିଆରସିଂହ** ଓଡ଼ିଆ ଭାଷାରେ ଜଣେ ଅନୁବାଦିକା ଭାବେ ସୁପରିଚିତା । ବିଶ୍ୱସାହିତ୍ୟର ବହୁ ବିଶିଷ୍ଟ କୃତିର ତାଙ୍କକୃତ ଓଡ଼ିଆ ରୂପାନ୍ତର ପାଠକୀୟ ଆଦୃତି ଲାଭ କରିଛି । ସେ ଥିଓଦର ଦସ୍ତୋଭସ୍କି, ସାମୁଏଲ୍ ବେକେଟ୍, ଥମାସ୍ ହାର୍ଡି, ଜାଁ ପଲ୍ ସାର୍ତ୍ତ, ଆଲବେୟାର କାମ୍ୟୁ, ସମରସେଟ୍ ମମ୍ ଆଦିଙ୍କ ରଚନାର ଓଡ଼ିଆ ଅନୁବାଦ ପ୍ରସ୍ତୁତ କରିଛନ୍ତି ।




ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ


₹ 120.00
ISBN 8123766947-7
9 788123 766942
12131895